# ଗୁରୁ ଗୋବିନ୍ଦ ସିଂହ

ଲେଖକ
**ହରବଂଶ ସିଂହ**
ରେଜଷ୍ଟ୍ରାର, ପଞ୍ଜାବୀ ବଶ୍ୱବଦ୍ୟାଳୟ,
ପାଟିଆଲା

ଅନୁବାଦକ
ଡକ୍ଟର ମାୟାଧର ମାନସିଂହ

ପ୍ରକାଶକ
ଗୁରୁ ଗୋବନ୍ଦ ସିଂହ ଫାଉଣ୍ଡେସନ୍
ଚଣ୍ଡୀଗଡ଼

**Guru Gobind Singh**

Written by : Harbans Singh

Translated by : Dr. M. Mansinha.

Published by : Guru Gobind Singh Foundation
31, M. L. A. Flats
Chandigarh, Punjab.

Sole Distributor : Grantha Mandir
Cuttack-2 & Berhampur
Orissa

First Edition : 1966

Price : Rs. 4.00

ପ୍ରକାଶକ :

**ଗୁରୁ ଗୋବନ୍ଦ ସିଂହ ଫାଉଣ୍ଡେସନ୍**

୩୧, ଏମ୍. ଏଲ୍. ଏ. ଫ୍ଲାଟ୍ସ, ଚଣ୍ଡୀଗଡ଼, ପଞ୍ଜାବ

ପ୍ରାପ୍ତି ସ୍ଥାନ :

**ଗ୍ରନ୍ଥ ମନ୍ଦିର**

କଟକ-୨ : ବ୍ରହ୍ମପୁର

ମୁଦ୍ରାକର :

ଶ୍ରୀ ଦେବେନ୍ଦ୍ର ମିଶ୍ର,

**ଜନଶକ୍ତି ପ୍ରେସ୍, କଟକ-୩**

ପ୍ରଥମ ସଂସ୍କରଣ : ୧୯୬୬

ମୂଲ୍ୟ : ଟ ୪.୦୦

# ଭୂମିକା

କୌଣସି ଉଚ୍ଚବର୍ତ୍ତ-ପ୍ରେରିତ ଲୋକର ଜୀବନଚରିତ ଲେଖିବାଠାରୁ ଅଧିକ କଷ୍ଟକର ଅଭିଜ୍ଞତା ନ ଥାଇ ପାରେ । କାରଣ ଏମାନଙ୍କର କର୍ମ ବାହାରକୁ ରହସ୍ୟମୟ ଦେଖାଗଲେ ମଧ୍ୟ, ଭିତରେ ଅତ୍ୟନ୍ତ ଉଦ୍ଦେଶ୍ୟ ପୂର୍ଣ୍ଣ, ଅଥଚ, ସାଧାରଣ ଲୋକ ସେ ସବୁ ବୁଝିନପାରି, ନିଜ ନିଜ କଳ୍ପନାନୁସାରେହିଁ ସେ ସବୁର ବ୍ୟାଖ୍ୟାନ କରି ବସିବାର ଆଶଂକା । ଏହି କାରଣରୁହିଁ, ଏହିପରି ଅସାଧାରଣ ଲୋକଙ୍କର ଜୀବନୀ ସାଧାରଣତଃ ହୋଇ ଯାଇଥାଏ ଏକଦୃଷ୍ଟିକ, ଅର୍ଥାତ୍ ଲେଖକର ନିଜର ଦୃଷ୍ଟିଭଙ୍ଗୀ ଦ୍ୱାରା ଜର୍ଜରିତ, ଏବଂ ବେଳେ ବେଳେ ମଧ୍ୟ ଏକାନ୍ତ ଏକପାଖିଆ । ଏପରି ଗୋଟିଏ ଜୀବନୀ ପାଇଁ ସତ୍ୟବିବରଣମୂଳକ ଉପାଦାନମାନଙ୍କର ଅଭାବ ଥିଲେ, ତାହା କେବଳ ଲେଖକର କଳ୍ପନାନୁସାରୀ ଗଢ଼ା ହୋଇ ଉଠିବାର ସ୍ୱାଭାବିକ, ପୁଣି ଯେଉଁଠି ଲେଖକର କୌଣସି ଆନ୍ଦୋଳନ, ଧର୍ମ ଜାତି ବା ଗୋଷ୍ଠୀର ସ୍ୱଭାବ, ଚରିତ୍ର ବା ବିଶ୍ୱରଣୟୀତା ପ୍ରତି ସହାନୁଭୂତି ନ ଥାଏ, ସେଠାରେ ମଧ୍ୟ ସେହି ଧର୍ମ, ଜାତି, ଗୋଷ୍ଠୀ ବା ଆନ୍ଦୋଳନର ନାୟକର ଜୀବନୀ ବିକୃତ ଭାବରେ ଲେଖା ଯିବାର ଆଶଂକା । ଆଉ କୌଣସି କୌଣସି କ୍ଷେତ୍ରରେ ଜୀବନୀ ହୋଇ ଉଠେ କେବଳ କେତେଗୁଡ଼ିଏ ସଂଖ୍ୟା ଓ ବ୍ୟାପାରର ଗୁନ୍ଥନ ବା ଯୋଗାଯୋଗ ମାତ୍ର । ସେଗୁଡ଼ିକୁ କୌଣସିମତେ ସାହିତ୍ୟ ବୋଲି ଧରିଯାଇ ନ ପାରେ । ସଂପୃକ୍ତ ଲେଖକର କଳ୍ପନାରେ ସୁନ୍ଦରର ପ୍ରେରଣାଭାବରୁହିଁ ଏହିପରି ଘଟିଥାଏ । କିନ୍ତୁ ଯେକୌଣସି ଉତ୍ତମ ଜୀବନଚରିତ ହେବ ଇତିହାସ ଓ ସାହିତ୍ୟର ମିଳନଭୂମି ।

ଏ ସବୁ କହିବାର ହେତୁ ଏହି ଯେ, ଉପରେ ଜୀବନଚରିତ ରଚନାରେ ଯେଉଁ ସବୁ ବିକୃତି ସାଧାରଣତଃ ଦେଖା ଦେଇଥାଏ ବୋଲି କୁହାଗଲା, ଗୁରୁଗୋବିନ୍ଦ ସିଂଙ୍କ ଉପରେ ଏ ଯାବତ୍-ପ୍ରକାଶିତ ପ୍ରାୟ ସମସ୍ତ ଜୀବନୀ ସଂପର୍କରେ ସେସବୁ ଆରୋପିତ ହୋଇପାରେ ଏବଂ ସେହି ପ୍ରତ୍ୟେକଟି

ଦେଖ ମଧ୍ୟ ଏପ୍ରକାର ଅଯଥାର୍ଥ ଜୀବନୀ ସମ୍ପର୍କରେ ଆମ ପ୍ରତି ଏକ ଏକ କଷ୍ଟଦାୟକ ସ୍ମରଣିକା । ଗୁରୁଙ୍କର ତ୍ରିଶତ-ଜନ୍ମ-ଜୟନ୍ତୀ ଉତ୍ସବ ଉପଲକ୍ଷେ, ଗୁରୁଗୋବିନ୍ଦ ସିଂ ଫାଉଣ୍ଡେସନ୍‌ର ପ୍ରକାଶନ ବିଭାଗ, ଗୁରୁ ଜୀଙ୍କର ଇଂରାଜୀ ଭାଷାରେ ଏକ ଜନପ୍ରିୟ ଅଥଚ ସତ୍ୟମୂଳକ ଜୀବନୀ ପ୍ରକାଶ କରାଇବାର ସିଦ୍ଧାନ୍ତକୁ, ଠିକ୍ ବେଳେ ଠିକ୍ କାମ ହୋଇଛି ବୋଲି ଧରିବାକୁ ହେବ । କାରଣ ଏପରି ଗୋଟିଏ ଜୀବନୀର ଆବଶ୍ୟକତା ଲୋକେ ବହୁକାଳ ଧରି ଅନୁଭବ କରି ଆସୁଥିଲେ ଏବଂ ଗୁରୁଜୀଙ୍କ ନାମରେ ପ୍ରତିଷ୍ଠିତ ସଂସ୍ଥାର ଏହା ପ୍ରଥମ କର୍ତ୍ତବ୍ୟ ଯେ ହେବ, ଏହା ଜଣା କଥା ।

ଏହି ଆଲୋଚ୍ୟମାନ ଜୀବନୀଟି, ଗୁରୁଙ୍କ କର୍ମ ଓ ଭକ୍ତି ପ୍ରତି ପରିପୂର୍ଣ୍ଣ ନ୍ୟାୟ ବିଚାର ଦେଇ ପାରିଛି । ଶ୍ରଦ୍ଧା ଓ ଧର୍ମପ୍ରାଣତା ଦ୍ୱାରା ଅନୁରଞ୍ଜିତ ହେଲେ ମଧ୍ୟ, ବିବରଣୀ କୌଣସିଠାରେ ଠିକ୍ ତରଳ ହୋଇ ବସିନାହିଁ । ଏ ବିଷୟରେ କୌଣସି ଏକ ବିଶେଷ ଦୃଷ୍ଟିକୋଣକୁ ସୁହାଇବା ପାଇଁ ବା କୌଣସି ତତ୍ତ୍ୱକୁ ପ୍ରତିଷ୍ଠିତ କରିବା ପାଇଁ ଇତିହାସକୁ କୌଣସିଠାରେ ମୋଡ଼ାମୋଡ଼ି କରି ଯାଇନାହିଁ । ଲେଖକ, ଶାସ୍ତ୍ରୀୟ ବା କିମ୍ବଦନ୍ତୀକ ସାକ୍ଷ୍ୟ ସାଥେ ସାଥେ, ଗୁରୁଜୀଙ୍କ ସମ୍ପର୍କରେ ପ୍ରକାଶିତ ଆଧୁନିକତମ ଗବେଷଣାକୁ ମଧ୍ୟ ପୂର୍ଣ୍ଣପ୍ରାଣରେ ସ୍ୱୀକାର କରିଛନ୍ତି । ଏହି ବୈଜ୍ଞାନିକ ଦୃଷ୍ଟିରୁ, ଗୁରୁଙ୍କର ଏହି ଜୀବନୀଟି ଏ କ୍ଷେତ୍ରରେ ପ୍ରଥମ କହିଲେ ଚଳେ ଏବଂ ଯେହେତୁ ଏହି ଜୀବନୀ ସମସ୍ତ ଭାରତୀୟ ଭାଷାମାନଙ୍କରେ ଅନୂଦିତ ହେବାକୁ ଯାଉଛି, ଏହାର ପାଠକ ସଂଖ୍ୟାର ପରିଧି ଯେ ଅନାୟାସରେ ବଢ଼ି ଉଠିବ, ଏହାହିଁ ବିଶ୍ୱାସ ।

ଗୁରୁ ଗୋବିନ୍ଦ ସିଂ ଇତିହାସରେ ସେହି କେତେଜଣ ଧର୍ମ-ଗୁରୁଙ୍କ ଭିତରୁ ଏକତମ, ଯେ ଜଣାଶୁଣା ବଡ଼ ବଡ଼ କଥାଗୁଡ଼ାଏ ଖାଲି ପ୍ରଚାର କରିବାରେ ସନ୍ତୁଷ୍ଟ ନ ରହି ନିଜର ଅନୁଗାମୀମାନଙ୍କୁ ଶ୍ରଦ୍ଧା, ଆତ୍ମମର୍ଯ୍ୟାଦା ଏବଂ ନିର୍ଭୀକତା ସହ ସାଂସାରିକ ଜୀବନଯାପନ କରିବା ପାଇଁ ହିଁ ପ୍ରବର୍ତ୍ତାଇଥିଲେ । ତାଙ୍କୁ କୁହାଯାଏ ଦଶମ ନାନକ ଏବଂ ପ୍ରକୃତରେ ତାଙ୍କର ଓ ପ୍ରଥମନାନକଙ୍କ ପ୍ରକୃତି ତତ୍ତ୍ୱବିଜ ଭିତରେ କୌଣସି ଭେଦ ନାହିଁ । ପ୍ରଥମ ନାନକ କହିଥିଲେ—

"ସଂସାରର ଘୋର ରହିଥିବା
ଅପବିତ୍ରତା ଭିତରେ ହିଁ
ପବିତ୍ର ରହିବାକୁ ଚେଷ୍ଟାକର ।"

ଗୁରୁ ଗୋବିନ୍ଦ ସିଂ ମଧ୍ୟ କେବେହେଲେ ଇଚ୍ଛା କରି ନ ଥିଲେ ଯେ, ତାଙ୍କର ଶିଷ୍ୟମାନେ କେବେ ସମାଜ ପରିତ୍ୟାଗ କରି ଏକା ଏକା ନିଜ ନିଜ ଆତ୍ମାର ମୁକ୍ତି ଖୋଜିବେ । ସେ ବରଂ ଶିକ୍ଷା ଦେଲେ ଯେ, ତାଙ୍କର ଶିଷ୍ୟ (ଶିଖ୍)ମାନେ, ସଂସାରର ଜଞ୍ଜାଳରେ ରହିହିଁ ସାଧୋଚିତ ଆଚରଣ କରିବେ । ସେମାନଙ୍କର ଧର୍ମପ୍ରାଣତା ପ୍ରକାଶିତ ହେବ, ସମାଜ ଛାଡି ପଳାଇବାରେ ନୁହେଁ; ବରଂ ସେଇଠି ଥାଇ ମଧ୍ୟ ପରମ ଈଶ୍ୱର-ବିଶ୍ୱାସରେ, ନିଃସ୍ୱାର୍ଥପର ଜୀବନରେ ଏବଂ ନ୍ୟାୟମାର୍ଗ ପ୍ରତି ଅଟଳ ଶ୍ରଦ୍ଧାରେ । ସେ ଯେଉଁ 'ଖାଲ୍‌ସା' ବା "ଅକାଳଂକର ବିଶୁଦ୍ଧ ଗୋଷ୍ଠୀ" ସୃଷ୍ଟି କରିଗଲେ, ତାହାର ପ୍ରଥମ ନୀତି ହେଲା ଯେ, ସେମାନେ କେବଳ ଏକ ଓ ଅନନ୍ୟ ଈଶ୍ୱରଙ୍କୁହିଁ ବିଶ୍ୱାସ କରିବେ । ଗୋଟିଏ ଶ୍ଳୋକରେ ଗୁରୁ 'ଗୋବିନ୍ଦ ସିଂ' ଖାଲ୍‌ସାର ବିଶ୍ୱାସ ସମ୍ବନ୍ଧରେ ଏହିପରି କହିଛନ୍ତି—

"ଯେ ଏକେଶ୍ୱର ବିଶ୍ୱାସରେ ଅବିଚଳିତ ରହି,
ସତ୍ୟର ଅନିର୍ବାଣ ଦୀପକୁ ଆତ୍ମାରେ ଜାଳି ରଖେ,
ଯେ ଏକେଶ୍ୱରଙ୍କ ପ୍ରତି ସାମଗ୍ରିକ ଶ୍ରଦ୍ଧା ଓ ଭକ୍ତି ରଖି,
ଭୁଲରେ ମଧ୍ୟ ପୀର୍‌ମାନଙ୍କ ସମାଧି ପାଖରେ ଅଧା ପଡ଼େ ନାହିଁ,
ଯେ ତୀର୍ଥଯାତ୍ରା, ଅହିଂସା ବା କୃଚ୍ଛ୍ର ସାଧନାଦିରେ ବିଶ୍ୱାସ ନ କରି
ବିଶ୍ୱାସ ରଖେ, କେବଳ ସେହି ଏକ ଈଶ୍ୱରଙ୍କ ବିଗ୍ରହରେ,
ଏବଂ ଯାହାର ହୃଦୟ ସେହି ପୂର୍ଣ୍ଣଂକର ଜ୍ୟୋତିରେହିଁ ସଦା ଆଲୋକିତ,
କେବଳ ତାକୁହିଁ ଗଣାଯିବ 'ଖାଲ୍‌ସା'ର ପ୍ରକୃତ ସଭ୍ୟ ବୋଲି ।"

ଗୁରୁଗୋବିନ୍ଦଙ୍କର ଧାରଣା ମଧ୍ୟ ଥିଲା ଯେ, ଈଶ୍ୱର-ବିଶ୍ୱାସ ଏବଂ ଭୀରୁତା, ଏକାଠି ରହି ନ ପାରନ୍ତି । ଏ ପ୍ରକାର ଦ୍ୱନ୍ଦ୍ୱ କୌଣସି ଜୀବନ୍ତ ଧର୍ମ-ବିଶ୍ୱାସର ଲକ୍ଷଣ ନୁହେଁ । ସେ ତାଙ୍କର ଅନୁଗାମିମାନଙ୍କୁ ବାରବାର କହି ଚାଲିଥିଲେ ଯେ, ଅତ୍ୟାଚାର ଓ ସ୍ୱେଚ୍ଛାଚାରକୁ ସହିଯିବା କୌଣସିମତେ ଧର୍ମ ହୋଇ ନ ପାରେ । ତାହା ପୂରାପୂରି ଅଧର୍ମ ଏବଂ "ଉପାୟାନ୍ତର ନ ଥିଲେ, ଅତ୍ୟାଚାରୀ ବିରୁଦ୍ଧରେ ଖଡ୍‌ଗୋତ୍ତୋଳନ ସମ୍ପୂର୍ଣ୍ଣ ଧର୍ମ-କର୍ମ ।" ତାଙ୍କ ମତରେ ଭୀରୁତା ଓ ଅବସାଦ ବା ନିଷ୍ପ୍ରହାୟତା ଠାରୁ ଘୋରତର ପାପ ନଥାଇପାରେ ଏବଂ ଏହା ଯେକୌଣସି ଧର୍ମ-ଜୀବନର ସମ୍ପୂର୍ଣ୍ଣ ବିପରୀତାତ୍ମକ । ଏହି ଭାବ-ପ୍ରକାଶକ ତାଙ୍କର ଏକ ଶ୍ଳୋକ ଏହିପରି—

"ଈଶ୍ୱର-ଜ୍ଞାନର ଝୁଂଚୁଣୀ ଧରି,
ଅନ୍ତରର ସମସ୍ତ ଅନ୍ଧ-କନ୍ଦରୁ

ଶୂରତା ଓ କାତରତାରୂପକ ମଇଳା ଯାକ
ଉତ୍ତମରୂପେ ନିକାଇ ଦିଅ ।”

ସାଧାରଣ ଜନର ଚେତନାକୁ ଧକ୍କା ଦେଇଥିଲା ଗୁରୁଙ୍କର ଏହି ପ୍ରକାର ମନ୍ତ୍ରଶିକ୍ଷାହିଁ ସମସାମୟିକ ସମାଜର ଅବହେଳିତ, ଅପାଂକ୍ତେୟ ଲୋକଙ୍କୁ କରି ପକାଇଲା “ସନ୍ଥ-ସୈନିକ”- ଯେଉଁମାନଙ୍କର ଧର୍ମନିଷ୍ଠା ଓ ଗୋଷ୍ଠୀନିଷ୍ଠା ସହିତ ଶୌର୍ଯ୍ୟ, ବୀର୍ଯ୍ୟ ଓ ମାନବିକତା ମଧ୍ୟ ଏଯାବତ୍ କାହାଣୀ ହୋଇ ରହିଛି । ମି: କନିଙ୍ଗହାମ୍ ଯଥାର୍ଥରେ କହିଛନ୍ତି—“ଗୁରୁ-ଗୋବିନ୍ଦ ସିଂ ଏକ ପରାଜିତ ଜାତିର ସୁପ୍ତଶକ୍ତିକୁ ଜାଗ୍ରତ କରାଇ ଦେଇ-ପାରିଥିଲେ ଏବଂ ସେମାନଙ୍କ ଭିତରେ ଭର୍ତ୍ତି କରି ଦେଇ ପାରିଥିଲେ ଜାତୀୟ ଅଭ୍ୟୁଦୟ ଏବଂ ସାମାଜିକ ମୁକ୍ତି ପାଇଁ ତୀବ୍ର (ଯଦିଓ ଅଚିରସ୍ଥାୟୀ) ପିପାସା । ନାନକ ମଧ୍ୟ ପ୍ରଚାର କରିଯାଇଥିଲେ ଯେ ବିଶୁଦ୍ଧ ଈଶ୍ୱର-ନିଷ୍ଠାର ଏହି ସବୁ ହେଲା ଅପରିହାର୍ଯ୍ୟ ଅଙ୍ଗ ।”

ଗୁରୁଗୋବିନ୍ଦ ସିଂଙ୍କ ପ୍ରତିଭା ଐହିକ ଓ ଆଧ୍ୟାତ୍ମିକ, ଉଭୟ ଶ୍ରେଣୀର ସମସ୍ୟାମାନଙ୍କ ମଧ୍ୟରେ ଏକ ସାମଂଜସ୍ୟ ଆଣି ପାରିଥିଲା । ତାଂକର ଚର୍କ-ରାଜ୍ୟରେ ଏହି ଦୁଇ ଶ୍ରେଣୀ ଭିତରେ କୌଣସି ବିଭେଦକ ପ୍ରାଚୀର ଦେଖା ଦେଇ ନ ଥିଲା । ‘ଶକ୍ତି’, କେବଳ କଥାରେ ପର୍ଯ୍ୟବସିତ ନ ହୋଇ କୌଣସି ନା କୌଣସି ଆକାର ଧରି ଆମ ଆଗରେ ପ୍ରକାଶ ଲାଭ କରିବାର କଥା । ସମଗ୍ର ପ୍ରକୃତିରେ ଏହି ତଥ୍ୟହିଁ ପ୍ରକଟିତ ହେଉଛି । ଗୁରୁଗୋବିନ୍ଦ ସିଂଙ୍କ ଦେଘ୍-ତେଘ୍-ଫତେ ରୂପକ ‘ନିରହ’ର ତାତ୍ପର୍ଯ୍ୟ ଉତ୍ତମରୂପେ ହୃଦୟଙ୍ଗମ କରିବାକୁ ହେଲେ, ଆମକୁ ସୃଷ୍ଟିରେ ପରିବ୍ୟାପ୍ତ ଶକ୍ତିର ସେହି ମୂଳ ତତ୍ତ୍ୱକୁ ସ୍ମରଣ କରିବାକୁ ହେବ । ‘ଦେଘ୍’ ଅର୍ଥାତ୍ ସାଧାରଣ ରନ୍ଧନଶାଳାର ତାତ୍ପର୍ଯ୍ୟ, ତେଣୁ, କେବଳ ଆର୍ଥିକ ବିଷୟରେ ଶେଷ ନ ହୋଇ ଚ୍ଛଳିଯିବ, ପ୍ରେମ, କରୁଣା, ସହାନୁଭୂତି ଓ ତ୍ୟାଗ ଆଡ଼କୁ । ସେହିପରି ‘ତେଘ୍’ ବା ଖଣ୍ଡା, ଦୈହିକ ସାମର୍ଥ୍ୟ ବୁଝାଉ ନାହିଁ, କାରଣ ଅତ୍ୟାଚାର ଓ ଅନାଚାରର ସମ୍ମୁଖୀନ ହେଉଥିଲେ, ଖଣ୍ଡା ପଛରେ ଯଦି ନୈତିକ ଓ ଆଧ୍ୟାତ୍ମିକ ବଳ ନାହିଁ, ତେବେ କେବଳ ଶାରୀରିକ ସାମର୍ଥ୍ୟ, ଶେଷ ବିଜୟ ଆଣିଦେଇ ନ ପାରେ । ପୁଣି ‘ଫତେ” ବା ବିଜୟଶ୍ରୀର ତଳେ ଲୁକ୍କାୟିତ ରହିଛି, ପରମ ପିତାଙ୍କ ଶକ୍ତିରେ ହିଁ ପରମ ବିଶ୍ୱାସ, କାରଣ ସବୁଦା ଶେଷ ବିଜୟ ରହିଥାଏ କେବଳ ତାଙ୍କର ହାତରେ । ଆମର ଯେତେ ସବୁ

ସିଛି, ସେ ସବୁରୁ କୌଣସିଟିକୁ ବଧାତାର ସାମଗ୍ରିକ ଶକ୍ତିର ବାହାରେ ବୋଲି କୁହାଯାଇ ନ ପାରେ ।

ଗୁରୁ ଗୋବିନ୍ଦ ସିଂଙ୍କର ଜୀବନ ଓ ଚିନ୍ତାର ଏହି ଦାନ ହିଁ ହୋଇ ଆସିଛି, ଶିଖ୍ ସମ୍ପ୍ରଦାୟର ଶ୍ରେଷ୍ଠ ଉତ୍ତରାଧିକାର । ବସ୍ତୁତଃ, ସମଗ୍ର ଶିଖ୍ ଗୋଷ୍ଠୀର ଅନନ୍ୟତା ଦଣ୍ଡାୟମାନ ରହିଛି କହିଲେ ଚଳେ, ଗୁରୁ ଗୋବିନ୍ଦ ସିଂଙ୍କର ଏହି ତ୍ରିରତ୍ନ,—ଦେଗ, ତେଗ୍, ଓ ଫତେ ଉପରେ । କିନ୍ତୁ ଇତିହାସରେ ଏହା ବାରଂବାର ଦେଖା ଦେଇଛି ଯେ, ପ୍ରତ୍ୟେକ ଜାତି ଓ ଗୋଷ୍ଠୀର ବେଳେ ବେଳେ ସୁପ୍ତାବସ୍ଥା ଆସିଯାଏ, ଯେତେବେଳେ ଜାତି ବା ଗୋଷ୍ଠୀ ବିସ୍ମୃତ ହୋଇପଡ଼େ ତାର ନିଜର ମହାର୍ଘ ଉତ୍ତରାଧିକାର ସମ୍ପର୍କରେ । ଶିଖମାନଙ୍କ ସମ୍ପର୍କରେ ମଧ୍ୟ ତାହା କୁହାଯାଇ ପାରେ । କିନ୍ତୁ ଗୁରୁ ଗୋବିନ୍ଦ ସିଂଙ୍କର "ତ୍ରିରତ୍ନ"ର ତାତ୍ପର୍ଯ୍ୟ ଓ ଉପଯୋଗିତା ସାଂପ୍ରତିକ କାଳ ପାଇଁ ଯେତେ ଲୋଡ଼ା, ସେପରି ବୋଧହୁଏ ଆଉ କେବେ ଘଟି ନ ଥିଲା । ଭାରତୀୟ ଜାତି ଆଜି ଏକ ପକ୍ଷରେ ନୈତିକ ଦୁର୍ବଳତା ହେତୁ ଅନ୍ତରରେ ପଙ୍ଗୁ, ଏଣେ ବାହାରେ ନିର୍ଦ୍ଦୟ ଶତ୍ରୁମାନଙ୍କ ଦ୍ୱାରା ଚାରିପଟେ ଆକ୍ରାନ୍ତ । ଏ ଜାତିର ଆତ୍ମିକ ସ୍ୱାସ୍ଥ୍ୟ ଫେରାଇ ଆଣିବାର ମନ୍ତ୍ର କାହିଁ ? ଆଜି ସାରା ଦେଶରେ, ଶିଳ୍ପାନୁଷ୍ଠାନ ବା ଦୋକାନ ବା ଅଫିସ୍, ବା ଧର୍ମବେଦୀ ବା କୃଷିକ୍ଷେତ୍ର,—ସମସ୍ତେହିଁ ସେମାନଙ୍କର ପ୍ରାଚୀନ ଐତିହ୍ୟ, ଏପରିକି ସେମାନଙ୍କର ସ୍ୱ-ରୂପହିଁ ହରାଇ ବସିଛନ୍ତି । ଜୀବନର ପ୍ରତି କ୍ଷେତ୍ରରେ ସଦ୍ୟ ସ୍ୱାଧୀନତା ପଦଦଳିତ କରୁଛି ଚିରନ୍ତନ ସତ୍ୟକୁ । ଏ ପ୍ରକାର ଅବସାଦ ଓ ଅନ୍ଧକାରମୟ ପରିସ୍ଥିତିରେ, ଦେଗ୍-ତେଗ୍-ଫତେର ତ୍ରିରତ୍ନ ହୁଏତ ଏକ ବିମୁଢ଼ବିଚଳିତ ଜାତି ପ୍ରତି ଦୀପ-ସ୍ତମ୍ଭର କାର୍ଯ୍ୟ କରିପାରେ ।

ଗୁରୁ ଗୋବିନ୍ଦ ସିଂ ରାମାୟଣ ଓ ମହାଭାରତର ଅଂଶାବଳୀକୁ ନେଇ ରଚିତ ତାଙ୍କର "ଚୌବିଶ ଅବତାର" ଗ୍ରନ୍ଥରେ ମଧ୍ୟ ପ୍ରମାଣ କରେଇ ପାରିଛନ୍ତି ଯେ, ଅନ୍ୟାୟ, ଅତ୍ୟାଚାରର ବିରୁଦ୍ଧରେ ଲଢ଼ିବା ପାଇଁ, ଅନ୍ୟ ସବୁ ଉପାୟ ବିଫଳ ହେଲେ, ଅସ୍ତ୍ରଧାରଣ, କରିବା ଆମର ନିଜର ପ୍ରାଚୀନ ଶାସ୍ତ୍ର ଓ ଐତିହ୍ୟାନୁମୋଦିତ । ଶତ୍ରୁ, ଉଭୟ ବାହ୍ୟ ବା ଆଭ୍ୟନ୍ତରୀ ହୋଇପାରେ । ଅନ୍ୟାୟ ରୂପକ ଶତ୍ରୁ, ଯେଉଁଠୁ ଆସୁ ନା କାହିଁକି ତା ସହିତ ଲଢ଼ିବା କଥା ଏବଂ ଅସ୍ତ୍ରଧାରଣ ଶେଷ-ପନ୍ଥା ରୂପେ ଯେ ଏକାନ୍ତ ଉଚିତ, ଏହା ଗୁରୁଜୀ ଭାରତୀୟ ସତ୍ୟ ବୋଲିହିଁ ପ୍ରମାଣିତ କରି ଯାଇଛନ୍ତି ।

ଗୁରୁ ଗୋବିନ୍ଦ ସିଂଙ୍କର ଏହି ଜୀବନୀ ପଢ଼ିଲେ, ପ୍ରତ୍ୟେକ ପାଠକ ଦେଖି ପାରିବେ ଯେ ସେ କିପରି ତାଙ୍କର ଅନୁଗାମିମାନଙ୍କ ଦୈନନ୍ଦିନ ପାରିବାରିକ ଓ ସାଂସାରିକ ଜୀବନ ଭିତରେ ହିଁ ଧର୍ମକୁ ଜୀବନ୍ତ ଭାବରେ ଅବସ୍ଥାପିତ କରାଇ ପାରିଥିଲେ ଏବଂ ସେପରି କରାଇବା ଫଳରେ ଲୋକେ ଯାହା "ଅସମ୍ଭବ" ଭାବନ୍ତି ସେ ପ୍ରକାର ସିଦ୍ଧି ସବୁ ସହଜରେ ସମ୍ପନ୍ନ ହୋଇ ପାରିଥିଲା। ମିː 'ହୁଷ୍ଟନ୍ ସ୍ମିଥ୍' ତାଙ୍କର "ମାନବୀୟ ଧର୍ମ ସକଳ" ଗ୍ରନ୍ଥରେ ଧର୍ମ, ଜୀବନ ଭିତରେ ଓତଃପ୍ରୋତ ପ୍ରକାଶିତ ହୋଇଗଲା ପରେ ଯାହା ଯେପରି ଘଟିବାର କହିଛନ୍ତି। ପାଠକ, ଗୁରୁଗୋବିନ୍ଦ ସିଂଙ୍କ ଏହି ଜୀବନୀରେ ତାହା ଅକ୍ଷରେ ଅକ୍ଷରେ ଚରିତ ଥିବାର ଦେଖିବେ। ସେ କହିଛନ୍ତିː—

"ଯେତେବେଳେ ଧର୍ମ କୌଣସି ଜୀବନ ଭିତରକୁ ପ୍ରବେଶ କରେ ସେତେବେଳେ ଆମେ ଏକ ବିସ୍ମୟକର ନୂତନ ଗୁଣ ସେହି ଜୀବନରେ ପ୍ରକଟିତ ହେବାର ଦେଖିବାକୁ ପାଇବା। ଧର୍ମ ତେଣିକି ସେହି ଜୀବନର ପୂରା ଦାୟିତ୍ୱଭାର ନେଇନିଏ। ସେହି ଜୀବନର ସବୁ ପ୍ରସଙ୍ଗ ପୂର୍ବପରି ଚାଲିଥିବ, କୌଣସି କଥା ନଷ୍ଟ ହିଁ ବା ନୀରବ ହୋଇଯିବ ନାହିଁ; ଅଥଚ ବିନା ବିରୋଧରେ, ପୂର୍ବର ସବୁ ମୁଖ୍ୟ ପ୍ରବଣତା ଯାକ ଏଣିକି ନିଜକୁ ଆପେ ଆପେ ଗୌଣ କରି ନେଇ, ଧର୍ମକୁହିଁ ସହାୟ କରି ଚାଲିବେ।

ଜୀବନ୍ତଧର୍ମ, ମନୁଷ୍ୟକୁ ଇହଜୀବନରେ କଠିନତମ ଓ ଶ୍ରେଷ୍ଠତମ ନିର୍ବାଚନର ସମ୍ମୁଖୀନ କରାଇଥାଏ। ଏହା ବ୍ୟକ୍ତିର ଆତ୍ମାକୁ ଆହ୍ୱାନ କରେ ସବୁଠାରୁ ଦୁଃସାହସିକ ଯାତ୍ରା ଆରମ୍ଭ କରିବାକୁ, ବନ, ଗିରି, ମରୁଭୂମି ଦେଇ ମାନବାତ୍ମାର ଯାତ୍ରା। ଏ ଆହ୍ୱାନ ଆସେ, ବାସ୍ତବତାର ସମ୍ମୁଖୀନ ହୋଇ ତାକୁ ଜୟ କରିବା ପାଇଁ। ଯେଉଁମାନେ ଏହି ରହସ୍ୟମୟ ଆହ୍ୱାନ ପାଇ, ଏହାର ଅନୁଗମନ କରନ୍ତି, ସେମାନେ ଶୀଘ୍ର ଭେଟିଥାନ୍ତି ଏହି ଦୀର୍ଘ ଓ ସଙ୍ଗହୀନ ଯାତ୍ରାର ବାଧା ଏବଂ କଷ୍ଟାଦି।

"କ୍ଷୁରସ୍ୟଧାରା ନିଶିତା ଦୁରତ୍ୟୟା
ଦୁର୍ଗଂ ପଥସ୍ତତ୍ କବୟୋ ବଦନ୍ତି।"

ଲବ୍ଧ-ପ୍ରତିଷ୍ଠ ନର୍ମଳ-ପଣ୍ଡିତ ସାଧୁ ଗୋବିନ୍ଦ ସିଂ ତାଙ୍କର ବିରାଟ ପ୍ରାମାଣିକ ଗ୍ରନ୍ଥ "ଇତିହାସ,—ଗୁରୁ ଖାଲ୍‌ସା" [ହିନ୍ଦି]ରେ, ଇତିହାସରେ

ଗୁରୁ ଗୋବିନ୍ଦ ସିଂଙ୍କର ସ୍ଥାନ ଏହିପରି ସୁନ୍ଦର ଓ ସମ୍ପୂର୍ଣ୍ଣ ଭାବରେ ବର୍ଣ୍ଣନା କରି ଯାଇଛନ୍ତି:—

"ଇତିହାସରେ ସହସ୍ର ସହସ୍ର ଧର୍ମ ପ୍ରଚାରକ ଓ ଲକ୍ଷ ଲକ୍ଷ ଜାତି-ପ୍ରେମୀ ରାଜା ଓ ଶାସକ ଦେଖା ଦେଇଛନ୍ତି । କିନ୍ତୁ କେହି ଜଣେ ହେଲେ ଗୁରୁ ଗୋବିନ୍ଦ ସିଂଙ୍କ ପରି ନିଜ ଧର୍ମରକ୍ଷା ପାଇଁ ନିଜର ସବୁ ସମର୍ପି ଦେଇ ଶେଷରେ ନିଜକୁ ମଧ୍ୟ ଯଜ୍ଞାହୁତି ରୂପେ ଢ଼ାଳି ଦେଇନାହାନ୍ତି ।

ଯଦି କେହି ହିନ୍ଦୁ ଧର୍ମକୁ ବାରମ୍ବାର ଘଟି ଆସୁଥିବା ବିପଦରୁ ରକ୍ଷା କରି, ଜୀବନ୍ମୃତ ଆର୍ଯ୍ୟଜାତିକୁ ନବ ଜୀବନ ଦେଇ ଥିବାର କୁହାଯାଇ ପାରେ; ତେବେ ସେ ନାମଟି ହେଉଛି ଗୁରୁଗୋବିନ୍ଦ ସିଂ;—ଶିଖ୍ ସମ୍ପ୍ରଦାୟର ପ୍ରତିଷ୍ଠାତା, ଶିଖ୍ ଧର୍ମର ଶାସକ ଓ ନିୟାମକ ।

କେବଳ ଗୁରୁ ଗୋବିନ୍ଦଙ୍କ ଶିକ୍ଷା ଓ ଆଦର୍ଶ ଯୋଗୁହିଁ, ଆଜି ଭାରତରେ ଶିଖ୍ ସମ୍ପ୍ରଦାୟ ଶ୍ରେଷ୍ଠ ସାମରିକ ଜାତି ଭାବରେ ସମ୍ମାନିତ, ଏବଂ କେବଳ ତାଙ୍କରି ଯୋଗୁହିଁ ହିନ୍ଦୁ ସମାଜର ବୃହତ୍‌ବର୍ଗ ଭିତରେ ମଧ୍ୟ ଦେଖା ଦେଇଛି ଅଶ୍ରୁତପୂର୍ବ ଭ୍ରାତୃଭାବ ।

ଯେପର୍ଯ୍ୟନ୍ତ ଆର୍ଯ୍ୟଜାତି ଭୂପୃଷ୍ଠରେ ବଞ୍ଚି ରହିଥିବ, ସେ ପର୍ଯ୍ୟନ୍ତ ଲୋକେ ସସମ୍ମାନ ସ୍ମରଣ କରୁଥିବେ ଗୁରୁଗୋବିନ୍ଦ ସିଂଙ୍କର ଅବର୍ଣ୍ଣନୀୟ କୀର୍ତ୍ତିକଳାପ ।

ଯେଉଁ ବରେଣ୍ୟ ମାତା ଗୁରୁ ଗୋବିନ୍ଦ ସିଂଙ୍କୁ ଜନ୍ମ ଦେଇଥିଲେ, ଯେଉଁ ଗୃହ, ଯେଉଁ ଗ୍ରାମ, ଯେଉଁ ନଗର, ଯେଉଁ ଦେଶ, ଯେଉଁ କାଳ ଏବଂ ଯେଉଁ ଜାତିରେ ସେ ଜାତ ହୋଇଥିଲେ, ସେ ସମସ୍ତ ଓ ପ୍ରତ୍ୟେକେ ଧନ୍ୟ ଏବଂ ପରମେଶ୍ୱରଙ୍କ ପରମାଶୀଷପ୍ରାପ୍ତ ବୋଲି କହିବାକୁ ହେବ ।"

ପାତିଆଲା

**କୀର୍ପାଲ୍ ସିଂ**

ଚେୟାର୍‌ମାନ୍

ଅକ୍ଟୋବର ୩।୧୯୬୭

ପବ୍‌ଲିକେଶନ ସବ୍-କମିଟି
ଗୁରୁ ଗୋବିନ୍ଦ ସିଂ ଫାଉଣ୍ଡେସନ୍

"ହିନ୍ଦୁ ବା ମୁସଲମାନ ବୋଲି ନ କହି
ନିଖିଳ ମନୁଷ୍ୟ ଜାତିକୁ ଏକ୍ ବୋଲି ଧର,
ସେହି ଏକ ଈଶ୍ୱର ଆମ ସମସ୍ତଙ୍କର ସ୍ରଷ୍ଟା ଓ ପାଳନକର୍ତ୍ତା ।
ମନୁଷ୍ୟ ମନୁଷ୍ୟ ଭିତରେ କୌଣସି ହେଲେ ବିଭେଦ ନାହିଁ ।
ମଠ ଓ ମସ୍‌ଜିଦ୍ ଏକ ଅନୁଷ୍ଠାନ
ସେହିପରି ମଧ୍ୟ ହିନ୍ଦୁର ପୂଜା ଓ ମୁସଲମାନର ନିମାଜ୍,
ସବୁ ମନୁଷ୍ୟ ସମାନ ।"

—ଗୁରୁ ଗୋବିନ୍ଦ ସିଂ—

# ସ୍ୱୀକୃତି

ଗୁରୁ ଗୋବିନ୍ଦ ସିଂ ଫାଉଣ୍ଡେସନ୍, ଗୁରୁଜୀଙ୍କର ତ୍ରିଶତଜନ୍ମ-ଜୟନ୍ତୀ ଉପଲକ୍ଷେ ଏହି ଜୀବନୀର ପ୍ରକାଶନ ଦାୟିତ୍ୱ ନେଇଥିବାରୁ, ଲେଖକର ଆଦ୍ୟ କୃତଜ୍ଞତା-ଜ୍ଞାପନ ତାଙ୍କର ପ୍ରତି । ଫାଉଣ୍ଡେସନର ପ୍ରକାଶନ-ସବ୍-କମିଟିର ସଭାପତି, ସର୍ଦ୍ଦାର କର୍ତ୍ତାର ସିଂ ନାରଙ୍ଗ ଇଚ୍ଛା ପ୍ରକାଶ କଲେ, ଯେ, ଏ ଦାୟିତ୍ୱ ମୁହିଁ ହାତକୁ ନିଏ । ମୋ ଉପରେ ତାଙ୍କର ଏ ପ୍ରକାର ଔଖାର ବ୍ୟକ୍ତିଗତ ବିଶ୍ୱାସ ପାଇଁ ମୁଁ ତାଙ୍କୁ କେବେହେଲେ ଯଥେଷ୍ଟ ଧନ୍ୟବାଦ ଦେଇ ନ ପାରେ । ଗୁରୁ ଗୋବିନ୍ଦ ସିଂଙ୍କର ବିସ୍ମୟକର ଜୀବନୀ ଲେଖିବା ଚିରକାଳ ଏକ କଷ୍ଟକର ବ୍ୟାପାର ହୋଇ ରହିବ । ବିଷୟଟି ଯେପରି ବିରାଟ, ତା'ତୁଳନାରେ ଆମର ଶକ୍ତି ଏକାନ୍ତ ସୀମାବଦ୍ଧ । ଗୁରୁଜୀଙ୍କର ପାର୍ଥିବ ଜୀବନର ଏତେ ବିଭବ ରହିଛି ଏବଂ ତାଙ୍କର ଆଧ୍ୟାତ୍ମିକ ଜୀବନ ଥିଲା ଏପରି ସର୍ବଦା ଗତିଶୀଳ ଅଥଚ ଉନ୍ନତସ୍ତରର ଯେ, ଆମେ ସେଥିର କେବଳ ସୀମା ସ୍ପର୍ଶ କରିବା ଛଡ଼ା ଅଧିକା କ'ଣ କରି ପାରିବା ? ପୁଣି, ସେ ପ୍ରକାର ମହତ୍‌ଜୀବନୀ ଗଢି ଠିଆ କରେଇବା ପାଇଁ ଉପାଦାନର ପ୍ରାଚୁର୍ଯ୍ୟ ଆଦୌ ନାହିଁ । ଗୁରୁ ଗୋବିନ୍ଦ ସିଂଙ୍କ ନିଜର ଆତ୍ମ-ଚରିତମୂଳକ ରଚନା "ବିଚିତ୍ର ନାଟକ" ଏବଂ ସେନାପତି (ଶ୍ରୀଗୁରୁଶୋଭା ନାଥ ମଲ୍ଲି (ଅମର ନାମ) ଏବଂ ଆନ ରାଇ (ଜଙ୍ଗନାମା ଗୁରୁ-ଗୋବିନ୍ଦସିଂଜୀ କା) ପ୍ରଭୃତି କେତେକ ସମସାମୟିକ ପଞ୍ଜାବୀ କବିଙ୍କ କାବ୍ୟକବିତା ଛଡ଼ା, ସେହି କାଳର ପ୍ରକୃତ ଐତିହାସିକ ଉପାଦାନ ବିଶେଷ କିଛି ନାହିଁ । ଏହି ପୁସ୍ତକ ରଚନା କରିବାରେ ଏହି ସବୁ ଏବଂ ପରେ-ଲିଖିତ ଏହି ସମ୍ପୃକ୍ତ ଯାହା କିଛି କିତାବ ପ୍ରକାଶିତ ହୋଇଛି, ସେ ସବୁହିଁ ବ୍ୟବହାର କରାଯାଇଛି । ସେହି ଅନ୍ୟ ଗ୍ରନ୍ଥମାନଙ୍କର ତାଲିକା ଏହି :—

**ସାଖୀବୁକ୍** ଓ **"ଗୁରୁ ତେଗ୍ ବାହାଦୁର ଓ ଗୁରୁ-ଗୋବିନ୍ଦ ସିଂଙ୍କ ଭ୍ରମଣ କାହାଣୀ"** (ସର୍ଦ୍ଦାର ସର ଅତ୍ତରସିଂକ ଦ୍ୱାରା ଇଂରାଜୀରେ ଅନୂଦିତ ) ସୁଖା ସିଂକୃତ **ଗୁରୁବିଲାସ,** ଭାଇ ସନ୍ତୋଷ ସିଂ କୃତ, **ସୂରଜ ପ୍ରକାଶ,** ଜ୍ଞାନୀ ଜ୍ଞାନସିଂକୃତ **ପନ୍ଥପ୍ରକାଶ**

ମିଃ ଜନ୍ ମାଲ୍‌କମ୍ ରଚିତ **'ଏ ସ୍କେଚ୍ ଅଫ୍ ଦ' ଶିଖ୍‌ଜ୍'**

ମିଃ ଜୋସେଫ୍, ଡ଼, କନିଂହାମ ଲିଖିତ **'ଏ ହିଷ୍ଟ୍ରି ଅଫ୍ ଦ' ଶିଖ୍‌ଜ'**

| | |
|---|---|
| ସୟେଦ୍ ମହମ୍ମଦ ଲତିଫ୍-ଲିଖିତ | '**ହିଷ୍ଟ୍ରି ଅବ୍ ଦ' ପଂଜାବ** |
| ଏମ୍.ଏ: ମାକଲିଫେ-ଲିଖିତ | '**ଶିଖ୍ ରିଲିଜନ୍**' |
| ଇନ୍ଦୁଭୂଷଣ ବାନର୍ଜି ଲିଖିତ | '**ଇଭୋଲ୍ୟୁଶନ ଅବ୍ ଦ' ଖାଲ୍ସା**' |
| ଯଦୁନାଥ ସର୍କାର ଲିଖିତ | '**ଏ ଶର୍ଟ ହିଷ୍ଟ୍ରି ଅବ୍ ଆଉରଙ୍ଗଜେବ୍**' |
| ପ୍ରିତମ ସିଂ ଲିଖିତ | "**ଟେନ୍ ମାଷ୍ଟରସ୍**" |
| ସୁନ୍ଦର ସିଂ ଲିଖିତ | '**ବାଟଲ୍ସ୍ ଅବ୍ ଗୁରୁ ଗୋବିନ୍ଦ ସିଂ**' |
| ଧରମପାଳ ଅଷ୍ଟା ଲିଖିତ | "**ଦ' ପୋଏଟ୍ରି ଅବ୍ ଦଶମ ଗ୍ରନ୍ଥ**" |
| ତେଜା ସିଂ ଓ ଗଣ୍ଡା ସିଂ ଲିଖିତ | "**ଏ ଶର୍ଟ ହିଷ୍ଟ୍ରି ଅବ୍ ଦ' ଶିଖସ୍**" |
| ଖୁସ୍ବନ୍ତ ସିଂ ଲିଖିତ | "**ଏ ଶର୍ଟ ହିଷ୍ଟ୍ରି ଅବ୍ଦ' ଶିଖସ୍**" |

ଏହି ଜୀବନୀଟିରେ କିମ୍ବଦନ୍ତୀରୁ ମିଳୁଥିବା ଉପାଦାନ ସବୁକୁ ମଧ୍ୟ ଏପରି ଭାବରେ ବ୍ୟବହାର କରାଯାଇଛି, ଯେପରିକି ଐତିହାସିକର ଦୃଷ୍ଟିରୁ ମଧ୍ୟ ତାହା ଗ୍ରହଣୀୟ ହୋଇପାରେ । ଗୁରୁ ଗୋବିନ୍ଦସିଂଙ୍କ ରଚନା ବା ଶିଖ୍ ଧର୍ମଗ୍ରନ୍ଥମାନଙ୍କରୁ ଉଦ୍ଧୃତ ପଦାବଳୀର ଇଂରେଜି ଅନୁବାଦ (ଇଂରାଜି ସଂସ୍କରଣରେ) ପାଇଁ ମୁଁ ବିଶେଷ ଭାବରେ, ଏଠି ସେଠି ସାମାନ୍ୟ ପରିବର୍ତ୍ତନ ସହିତ ମାକଲିଫେଙ୍କ ଉପରେହିଁ ନିର୍ଭର କରିଛି । ଯେହେତୁ ଏହି ଜୀବନୀ ସାଧାରଣ ପାଠକଙ୍କ ପାଇଁ ଉଦ୍ଦିଷ୍ଟ, କେବଳ ଏହି ସ୍ୱୀକୃତି ଛଡ଼ା, ଅନ୍ୟତ୍ର କୌଣସି ପାଦଟୀକାର ବ୍ୟବହାର ଜାଣି ଜାଣି କରାଯାଇ ନାହିଁ ।

ମୁଁ ବିଶେଷ ଭାବରେ କୃତଜ୍ଞ, ପଞ୍ଜାବୀ ଐତିହାସିକ ଡକ୍ଟର ଗଣ୍ଡାସିଂଙ୍କ ପ୍ରତି ଯେହେତୁ ସେ ମତେ ତାଙ୍କ ନିଜ ପୁସ୍ତକାଗାରରୁ ବହି ସବୁ ଏଥିପାଇଁ ଧାର ଦେଇଛନ୍ତି କେବଳ ନୁହେଁ, ପୁସ୍ତକଟିର ପାଣ୍ଡୁଲିପିଟିକୁ ଆମୂଳଚୂଳ ପଢ଼ିଦେଇ, ମୂଲ୍ୟବାନ ସଙ୍କେତ ସବୁ ଦାନ ଏହି ଗ୍ରନ୍ଥକୁ ଶ୍ରୀମଣ୍ଡିତ କରାଇବାରେ ସାହାଯ୍ୟ କରିଛନ୍ତି । ମୋର ପି:ଏ; ସର୍ଦାର ଚରଣସିଂ ଏହି ଗ୍ରନ୍ଥର ଟାଇପ୍-ଲିପି ପ୍ରସ୍ତୁତ କରିଦେଇ ମତେ ମଧ୍ୟ ଅନୁଗୃହୀତ କରିଛନ୍ତି ।

**ହରବଂଶ ସିଂ**

୨୦—କର୍ଜନ ରୋଡ଼
ଡେରାଡୁନ୍
ଜୁଲାଇ, ୧୨,-୧୯୬୬

# ପ୍ରଥମ ଅଧ୍ୟାୟ

## ଦୈବ-ନିର୍ଦ୍ଦେଶ

ଜଗତର ଅନ୍ୟ ସମସ୍ତ ଧର୍ମ-ପ୍ରଚାରକ ଓ ପଥପ୍ରଦର୍ଶକମାନଙ୍କ ଅପେକ୍ଷା ଗୁରୁ ଗୋବିନ୍ଦ ସିଂ ଆମ୍ଭମାନଙ୍କର ସମସାମୟିକ କାଳକୁ ସବୁଠାରୁ ନିକଟତମ । ଆମ କାଳ ଓ ତାଙ୍କ କାଳକୁ ବ୍ୟବଧାନ କରୁଛି ମାତ୍ର ତିନିଶତ ବର୍ଷ ଏବଂ ଯା ଭିତରେ ଗୁରୁଜୀଙ୍କ ଜୀବନପଟେ ଗାଳଗଳ୍ପ ସବୁ ସେପରି ଜମା ହୋଇପାରି ନାହିଁ, ଯେପରି ହୋଇ ଆସିଛି, ଅନ୍ୟ ସବୁ ଧର୍ମପ୍ରଚାରକମାନଙ୍କ ସମ୍ପର୍କରେ । ଫଳରେ ତାଙ୍କର ଐତିହାସିକ ସତ୍ତା, ସେହି ଶ୍ରେଣୀର ଅନ୍ୟମାନଙ୍କଠାରୁ ଢେର ସ୍ପଷ୍ଟତର । ସ୍ଥାନ ଓ କାଳର ପରିପ୍ରେକ୍ଷିତରେ ଏହି କାରଣରୁ ତାଙ୍କୁ ବୁଝିବା ଆମ ପକ୍ଷରେ ସହଜ ହୋଇ ଉଠିନାହିଁ, ଠିକ୍ ସେହି କାରଣରୁ ମଧ୍ୟ, ତାଙ୍କର ଦେବ-ପ୍ରେରିତ ଭୂମିକା ଅନେକେ ବେଳେ-ବେଳେ ଠିକ୍ ଭାବରେ ଧରି ପାରନ୍ତି ନାହିଁ । ଗୁରୁ ଗୋବିନ୍ଦ ସିଂଙ୍କର ବ୍ୟକ୍ତିତ୍ୱ-କଳ୍ପନା ବରାବର ଅପୂର୍ଣ୍ଣ ରହିବ, ଯେ ପର୍ଯ୍ୟନ୍ତ ତାଙ୍କର ଐତିହାସିକତା ସହିତ ଆମେ ତାଙ୍କପ୍ରତି ଘଟିଥିବା ଦୈବାଦେଶର ତାତ୍ପର୍ଯ୍ୟକୁ ମଧ୍ୟ ଗ୍ରହଣ ନ କରିଛୁ ।

ଧରାପୃଷ୍ଠରେ ଜନ୍ମନେବା ପୂର୍ବେ ଗୁରୁ ଗୋବିନ୍ଦ ସିଂଙ୍କ ଆତ୍ମା ସ୍ୱର୍ଗୀୟ ଆନନ୍ଦରେ ବିଭୋର ହୋଇ ରହିଥିଲା । ତାଙ୍କର ନିଜ ବଚନ ହିଁ ଏଥିପାଇଁ ପ୍ରମାଣ । ଆତ୍ମ-ଚରିତ-ମୂଳକ "ବିଚିତ୍ର-ନାଟକ"ରେ ସେ କହିଛନ୍ତି ଯେ, ଏକ ପୂର୍ବଜନ୍ମରେ ହିମାଚ୍ଛାଦିତ ସପ୍ତ-ଶୃଙ୍ଗ-ବିଶିଷ୍ଟ ହେମ-କୁଣ୍ଡ ପର୍ବତରେ କରିଥିବା ପ୍ରେମମୟ ଆରାଧନା ଫଳରେ ସେ ନିଃଶେଷ ଭାବରେ ସମସ୍ତ ଦ୍ୱୈତ-ଚିନ୍ତା ହରାଇ ଅଦ୍ୱୈତ ବ୍ରହ୍ମ ସହିତ ମିଳିତ ହୋଇ ଯାଇଥିଲେ ଏବଂ ତାଙ୍କର ଆଉ ଧରାଧାମରେ ଜନ୍ମ ହେବାର କୌଣସି କାରଣ ନ'ଥିଲା । କିନ୍ତୁ ସେହି ପରମବ୍ରହ୍ମହିଁ ଧରାରେ ପୁଣି ଥରେ

ଅବତରଣ ପାଇଁ ତାଙ୍କୁ ନିର୍ଦ୍ଦେଶ ଦେଲେ, ଯଦିଓ ବ୍ରହ୍ମାନନ୍ଦରୁ ବିଚ୍ୟୁତ ହେବାପାଇଁ ତାଙ୍କର ଆଦୌ ଅଭିଳାଷ ନଥିଲା । ଗୁରୁଜୀଙ୍କ ନିଜ ଭାଷାରେ—

ମୋ ଚିତ୍ତ ବିଲ୍କୁ ନ ଥାଏ ଆଦୌ ଆସିବାକୁ,
ଯେ ହେତୁ ମୋର ସମଗ୍ର ଚେତନା ପରମ ବିଧାତାଙ୍କ ଚରଣରେ
ଜଡ଼ିତ ହୋଇ ରହିଥାଏ,
କିନ୍ତୁ ସେହି ପ୍ରଭୁହିଁ, ତାଙ୍କ ଇଚ୍ଛା ଜଣାଇ କହିଲେ,
"ମୁଁ ମୋର ପୁତ୍ର ବୋଲି ତତେ ଆଶୀର୍ବାଦ କରୁଛି;
ଏବଂ ତତେ ନିର୍ବାଚିତ କରୁଛି ଧର୍ମର ପ୍ରସାର ପାଇଁ
ଏବଂ ମନ୍ଦ ପଥରୁ ଜଗତକୁ ରକ୍ଷା କରିବା ପାଇଁ ।"

ଧର୍ମର ଇତିହାସରେ ଜଗତ୍‌ସ୍ରଷ୍ଟା କାହାକୁ ଏ ପ୍ରକାର ଲୋକ-ଗୁରୁତ୍ୱ ପାଇଁ ପ୍ରତ୍ୟକ୍ଷ ଆଦେଶ ଦେବାର ଦ୍ୱିତୀୟ ଦୃଷ୍ଟାନ୍ତ ନାହିଁ । ଏହା ଦ୍ୱାରା ଈଶ୍ୱରଙ୍କର ବ୍ୟକ୍ତିସଂପନ୍ନ ଅସ୍ତିତ୍ୱ ମଧ୍ୟ ପ୍ରମାଣିତ ହୋଇ ଯାଉଛି । ସେ ଯେ ପ୍ରେମରେ ପ୍ରାପ୍ତବ୍ୟ ଏବଂ ଭକ୍ତର ପରିପୂର୍ଣ୍ଣ ଆତ୍ମ-ସମର୍ପଣ ଓ ଭଗବାନଙ୍କର କୃପା, ଏହି ଉଭୟର ମିଶ୍ରଣ ଫଳରେହିଁ ଜୀବାତ୍ମା ଯେ ପରମାତ୍ମା ସହିତ ଏକୀଭୂତ ହୋଇ ଉଠେ, ତାହା ମଧ୍ୟ ଏହାଦ୍ୱାରା ପ୍ରମାଣିତ ହେଉଛି । 'ବିଚିତ୍ର ନାଟକ'ରୁ ଏହା ମଧ୍ୟ ଆମେ ନିଶ୍ଚିତ ଭାବରେ ଜାଣୁଛୁ ଯେ, କାଳର ପ୍ରୟୋଜନ ଅନୁସାରେ, ଧରାରେ ଦେବାବତରଣ ଘଟିଥାଏ । ପୃଥିବୀକୁ ପ୍ରମାଦ-ମୁକ୍ତ କରିବା ପାଇଁ ଓ ଧରାରେ ଈଶ୍ୱର-ବିଶ୍ୱାସ ପ୍ରତିଷ୍ଠା ପାଇଁ ସେହି ଈଶ୍ୱର-ପୁତ୍ର ଏହି ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ ।

କିନ୍ତୁ ପୁରୁଷୋତ୍ତମଙ୍କର ଏ ପ୍ରକାର ସାନ୍ନିଧ୍ୟ ଓ ଏ ପ୍ରକାର ମହତ୍ ନିର୍ଦ୍ଦେଶ ପାଇ ଆସିଥିଲେ ମଧ୍ୟ, ଗୁରୁ ଗୋବିନ୍ଦ ସିଂ ତାଙ୍କର ସମଗ୍ର ଜୀବନ-କାଳରେ କେବେହେଲେ, ନିଜ ସମ୍ପର୍କରେ କୌଣସି ପ୍ରକାର ଦେବତ୍ୱ ଦାବୀ କରି ନାହାନ୍ତି । ସେ ଏପରି ବିନୟପୂର୍ଣ୍ଣ ଥିଲେ ଏବଂ ପରମ ପ୍ରଭୁଙ୍କ ପ୍ରତି ତାଙ୍କର ସମଗ୍ର ଚେତନା ଏପରି ଭକ୍ତିପୂର୍ଣ୍ଣ ଥିଲା ଯେ, ସେ ପ୍ରକାର ଦାମ୍ଭିକତା ତାଙ୍କ ସମ୍ପର୍କରେ କଳ୍ପନାତୀତ ବୋଲିବାକୁ ହେବ । 'ବିଚିତ୍ର-ନାଟକ'ରେ ଅଛି—

"ଯେ କେହି ମତେ ପରମେଶ୍ୱର ପ୍ରଭୁ କହିବ,
ସେ ନରକର ଗଭୀରତମ କୂପରେ ନିପତିତ ହେବ,
ମତେ ଜାଣି ରଖ କେବଳ ଈଶ୍ୱରଙ୍କ ଦାସ ବୋଲି,
ଏଥିରେ ଆଦୌ ସଂଦେହର ଅବକାଶ ନାହିଁ ।"

ଯେଉଁମାନେ ତାଙ୍କୁ ଦେବତା କରି ପୂଜା କରିବେ, ଗୁରୁ ଗୋବିନ୍ଦ ସିଂ ସେମାନଙ୍କ ଉଦ୍ଦେଶ୍ୟରେ ଏକ ଅଭିଶାପ ମଧ୍ୟ ଘୋଷଣା କରି ଯାଇଛନ୍ତି । ତାଙ୍କର ସର୍ବାଧିକ ଆନନ୍ଦ ଥିଲା ଭଗବାନଙ୍କର ଦାସ ହିସାବରେ ତାଙ୍କର ଆଜ୍ଞାପାଳନର ଏକ ଯନ୍ତ୍ର ମାତ୍ର ବୋଲି ନିଜକୁ ଭାବିବାରେ । ସେ ଘୋଷଣା କରୁଥିଲେ ଯେ, ସେ (ଗୋବିନ୍ଦସିଂ) ଲୋକମାନଙ୍କୁ ସେହିପରି ବାଣୀ ଶୁଣାଇବେ, ଯେପରି ପରମପିତା ତାଙ୍କୁ ଶୁଣାଇଥିଲେ । ସେଥିପାଇଁ କୌଣସି ମନୁଷ୍ୟକୁ ଭୟ କରି ସେ ତୁଷ୍ଟି ଦେଖିପିବେ ନାହିଁ । ଅଥଚ, ଗୋଷ୍ଠୀ, ଗୋଷ୍ଠୀର ଭିନ୍ନତା ଯୋଗୁଁ ସେ ମଧ୍ୟ ଧର୍ମ ଧର୍ମ ଭିତରେ କୌଣସି ଭିନ୍ନତା ପୂଜା କରାଇପିବେ ନାହିଁ । ମନୁଷ୍ୟର ଗୁଣ ସମ୍ବନ୍ଧରେ ସେ ଯାହା ସର୍ବଦା ସ୍ପଷ୍ଟବାଣୀରେ କହୁଥିଲେ, ତାଙ୍କର 'ଅକାଲ୍ ଉସ୍ତତ୍' ନାମକ ଗ୍ରନ୍ଥର ନିମ୍ନ ଶ୍ଳୋକରେ ତାହା ଉତ୍ତମ ପ୍ରକଟିତ ହୋଇଛି —

"ହିନ୍ଦୁ ବା ମୁସଲମାନ ବୋଲି ନକହି,
ନିଖିଳ-ମନୁଷ୍ୟ-ଜାତିକୁ ଏକ୍ ବୋଲି ଧର,
ସେହି ଏକ ଈଶ୍ୱର ସମସ୍ତଙ୍କର ସ୍ରଷ୍ଟା ଓ ପାଳନକର୍ତ୍ତା,
ସେମାନଙ୍କ ଭିତରେ କୌଣସି ହେଲେ ଭିନ୍ନତା ନାହିଁ ।
ମଠ ଓ ମସ୍‌ଜିଦ୍ ଏକ କଥା,
ସେହିପରି ମଧ୍ୟ ହିନ୍ଦୁ ପୂଜା ଓ ମସଲମ୍ ନମାଜ୍ ।
ସବୁ ମନୁଷ୍ୟ ସମାନ ।"

ଗୁରୁ ଗୋବିନ୍ଦସିଂଙ୍କର ଦୁଇଶ ବର୍ଷ ପୂର୍ବରୁ ଶିଖ୍ ଧର୍ମର ପ୍ରତିଷ୍ଠାତା ଗୁରୁ ନାନକ (୧୪୬୯-୧୫୩୯) ପ୍ରେମ ଓ ବିଶ୍ୱାସର ଏହି ପ୍ରକାର ବାଣୀ ପ୍ରଥମେ ପ୍ରଚାର କରି ଯାଇଥିଲେ । ସେତେବେଳକୁ ଭାରତବର୍ଷର ଧର୍ମ କହିଲେ କେବଳ କେତେଗୁଡ଼ିଏ ଆଚାରକୁ ବୁଝାଉଥିଲା । ଦେଶ ଶାସିତ ହେଉଥିଲା ବିଜୟୀ ବିଦେଶୀଙ୍କ ଦ୍ୱାରା । ଏହିପରି ଦେଶ ଓ କାଳରେ ନାନକଜୀ ଏକ ସରଳ, ଏକେଶ୍ୱରବାଦୀ ଧର୍ମ ପ୍ରଚାର କଲେ, ଯାହା ଦଣ୍ଡାୟମାନ ଥିଲା, କେବଳ କେତେଗୁଡ଼ିଏ ମାନବିକ-ବିଚାର-ପ୍ରତିଷ୍ଠା ସାମାଜିକ ଓ ବ୍ୟକ୍ତିଗତ ବ୍ୟବହାର ଉପରେ । ଫଳରେ ଏ ଧର୍ମ ସମସାମୟିକ ଭାରତବର୍ଷରେ ଗଭୀର ରେଖାପାତ କରି ପାରିଲା । ତାଙ୍କ ଜୀବନ

କାଳରେ ଗୁରୁ ନାନକ ଏହି କାରଣରୁ ନିଜ ଧର୍ମ ପାଇଁ ବହୁ ଶିଷ୍ୟ ଲାଭ କରି ପାରିଥିଲେ । ଏହି ନୂତନ ଶିଷ୍ୟ ସଂପ୍ରଦାୟ କ୍ରମେ ଏକ ସ୍ୱତନ୍ତ୍ର ଓ ସୁନିର୍ଦ୍ଦିଷ୍ଟ ଧର୍ମ-ମଣ୍ଡଳୀରେ ପରିଣତ ହୋଇ ଉଠିଲେ । 'ବିଚିତ୍ର ନାଟକ'ରେ ଗୁରୁଗୋବିନ୍ଦ ସିଂ କହିଛନ୍ତି— "ଗୁରୁ ନାନକ କଳିଯୁଗରେ ନବଧର୍ମ ସ୍ଥାପନା କରି ପୁଣ୍ୟାତ୍ମାମାନଙ୍କୁ ନୂତନ ପଥ ଦେଖାଇଗଲେ । ନାନକ-ପ୍ରଦର୍ଶିତ ପଥରେ ଯାତ୍ରା କଲେ ଯାତ୍ରୀମାନଙ୍କୁ ପାପ ଆଉ ଜଞ୍ଜାଳ କରି ପାରେ ନାହିଁ ।"

ଏହି ମଣ୍ଡଳୀର ଧାରକରୂ, ଗୁରୁ-ପରମ୍ପରାକ୍ରମେ, ନାନକଙ୍କଠାରୁ ଆସି ଶେଷରେ ଗୁରୁ ଗୋବିନ୍ଦସିଂଙ୍କ ଉପରେ ପଡ଼ିଲା । ଶିଖ୍ ଧର୍ମର ଏହି ଗୁରୁ ପରଂପରାର ତାତ୍ପର୍ଯ୍ୟ କଣ ?

ଗୁରୁ ନାନକ ପ୍ରଚାରିତ ବାଣୀହିଁ ଏହାର କେନ୍ଦ୍ର ମାତ୍ର । ନାନକଙ୍କ ପୂର୍ବରୁ ଗତ ପାଞ୍ଚଶ ବର୍ଷ ଧରି, ଇସଲାମ ଓ ହିନ୍ଦୁଧର୍ମ ଭାରତ ଅଧିକାର କରିବା ପାଇଁ ପରସ୍ପର ଲଢ଼ି ଆସୁଥିଲେ । ନାନକ ପ୍ରଚାରିତ ନୂତନ ଧର୍ମରେ ସେମାନେ ଏକ ଆପୋଷ ମୀମାଂସା ଯେପରି ପାଇଗଲେ । କିନ୍ତୁ ନାନକଙ୍କ ନବ-ଧର୍ମ ଉଭୟ ହିନ୍ଦୁଧର୍ମ ଓ ଇସଲାମରୁ ଉପାଦାନ ସଂଗ୍ରହ କରିଥିଲେହେଁ, ଅନେକାଂଶରେ ଏହି ଉଭୟ ଧର୍ମଠାରୁ ଅଧିକ ଉର୍ଦ୍ଧ୍ୱଗାମୀ ଓ କ୍ଷିପ୍ରଗାମୀ ହୋଇ ପାରିଥିଲା । ତାଙ୍କ ଉପଦେଶର ସାରକଥା ହେଲା ; ଈଶ୍ୱରଙ୍କ ଏକତ୍ୱ ଓ ମନୁଷ୍ୟର ଭ୍ରାତୃତ୍ୱକୁ ସ୍ୱୀକାର ଏବଂ ଜାତି ପ୍ରଥା ଓ ମୂର୍ତ୍ତି ପୂଜାକୁ ଅସ୍ୱୀକାର । ନାନକଜୀ ନିଜର ଏହି ବାଣୀ ପ୍ରଚାର ପାଇଁ ମର୍ଦ୍ଦାନା ନାମକ ଏକ ମୁସଲମାନ ସହଚରଙ୍କୁ ସାଥିରେ ନେଇ ଉତ୍ତରର ଉଚ୍ଚ ହିମାଳୟରୁ ଦକ୍ଷିଣରେ ସିଂହଳର ସବୁଜ ପ୍ରାନ୍ତର ପର୍ଯ୍ୟନ୍ତ ଏବଂ ପୂର୍ବର ଆସାମରୁ ପଶ୍ଚିମରେ ମକ୍କା ଓ ବାଗଦାଦ୍ ପର୍ଯ୍ୟନ୍ତ ବହୁ ଦେଶଦେଶାନ୍ତର ଭ୍ରମଣ କରିଥିଲେ ଏବଂ ସେ ଯେଉଁଆଡ଼େ ଯାଉଥିଲେ, ତାଙ୍କ ବାଣୀର ବିଶ୍ୱ-ଜନୀନତା ସହିତ ତାଙ୍କର ବ୍ୟକ୍ତିଗତ ସାରଲ୍ୟ ସମସ୍ତଙ୍କୁ ସ୍ପର୍ଶ କରୁଥିଲା । ତାଙ୍କୁ ଯେଉଁମାନେ ଗୁରୁ ରୂପେ ଗ୍ରହଣ କରୁଥିଲେ, ସେମାନଙ୍କ ପାଇଁ ଏକ ନୂତନ ଜୀବନ ଆରମ୍ଭ ହୋଇ ଯାଉଥିଲା । ତାଙ୍କର ଶିଷ୍ୟ ସଂପ୍ରଦାୟ ଭିତରେ ଜାତି-ତ୍ୟାଗ ଓ ଆତ୍ମ-ସର୍ବସ୍ୱତାର ତ୍ୟାଗହିଁ ସେମାନଙ୍କୁ ଆଣି ଦେଉଥିଲା ଅନ୍ୟମାନଙ୍କ ଠାରୁ ପ୍ରଥମ ବୈଶିଷ୍ଟ୍ୟ । ସେମାନଙ୍କ ଭିତରେ

ଯେଉଁ ଅନ୍ତର୍ନିହିତ ଧର୍ମଭାବ ଜାତି ଓ ଆତ୍ମାର ଅପୌରୁଷିକ ଅତ୍ୟାଚାରରେ ତଳେ ସେପର୍ଯ୍ୟନ୍ତ ଚାପି ହୋଇ ପଡ଼ିଥିଲା, ବର୍ତ୍ତମାନ ସେ ସବୁ ଏକ ଜୀବନ୍ତ ଧର୍ମର ସ୍ପର୍ଶରେ ଆସି ଜାଗ୍ରତ ହୋଇ, ବିଗ୍ରହ ଧାରଣ କଲା। ସେମାନେ ଜୀବନକୁ ନବବଳ ଓ ଉତ୍ସାହର ସହିତ ଦେଖିବାକୁ ଲାଗିଲେ। ଦୂରଦ୍ରଷ୍ଟା ଗୁରୁ ନାନକ ନିଜ ଜୀବନ-କାଳରେ ମଧ୍ୟ ପରେ ଶିଖ୍‌ଧର୍ମ କି ପ୍ରକାର ବ୍ୟକ୍ତିତ୍ୱ ଗ୍ରହଣ କରିବ, ତାହା ଅନୁମାନ କରି ପାରିଥିଲେ। ଏହି ଦୂର-ଦୃଷ୍ଟିର ଜ୍ୱଳନ୍ତ ଦୃଷ୍ଟାନ୍ତ ହେଉଛି, ବାବରଙ୍କ ଭାରତ ଆକ୍ରମଣ ବିରୁଦ୍ଧରେ ତାଙ୍କର ପ୍ରତିକ୍ରିୟା। ସମସାମୟିକ ଭାରତୀୟ ସାହିତ୍ୟରେ ଏହି ବୈଦେଶିକ ଆକ୍ରମଣ ବିରୁଦ୍ଧରେ ଅଧିକ ଶକ୍ତିଶାଳୀ ପ୍ରତିବାଦ କାହିଁ ନାହିଁ, ଯେପରି ବାହାରି ପଡ଼ିଥିଲା ନାନକଙ୍କ ଲେଖନୀରୁ ଏବଂ ଯାହା ଏ ପର୍ଯ୍ୟନ୍ତ ସଞ୍ଚିତ ରହିଛି ଶିଖ୍ ଧର୍ମଗ୍ରନ୍ଥ, ଗ୍ରନ୍ଥସାହେବରେ। ନାନକଙ୍କ ସେହି ପ୍ରତିବାଦ ନିଜର ଏବଂ ଉଭୟ ହିନ୍ଦୁ ଓ ମୁସଲମାନର ଅନ୍ତରାତ୍ମାର ଘୋର ବେଦନାକୁ ସ୍ପଷ୍ଟ ପ୍ରକାଶ କରିଛି :—

"କାବୁଲରୁ ବାବର ଆସୁଛି ପାପର ଅଭିଯାନ କରି,—
ବଳ ପ୍ରୟୋଗରେ ହରିନେଇ ଧନଦ୍ରବ୍ୟ ଲୋକଙ୍କଠାରୁ,
ଲଜ୍ଜା ଓ ଧର୍ମ ଧୋଇ ହୋଇ ଯାଇଛି;
କୁତ୍ସାହିଁ ହୋଇ ଉଠିଛି ଦେଶରେ ମୁଖ୍ୟ ବ୍ୟବହାର।
କାଜୀ ଓ ବ୍ରାହ୍ମଣମାନଙ୍କର ବ୍ୟବସାୟ ଗଲା,
ଏବଂ ବିବାହ-ମନ୍ତ୍ର ପଢ଼ୁଛନ୍ତି ସଇତାନ ସବୁ।
ଦୁଃଖର ଆର୍ତ୍ତନାଦରେ ମୁସଲମାନ ସ୍ତ୍ରୀମାନେ ମଧ୍ୟ କୋରାଣ ପଢ଼ି
ତାଙ୍କର ଈଶ୍ୱରଙ୍କୁ ଡକା ଛାଡ଼ୁଛନ୍ତି,
ସେହିପରି ମଧ୍ୟ ସଢ଼ୁଛନ୍ତି ଉଚ୍ଚ ଓ ନୀଚ ହିନ୍ଦୁ ସ୍ତ୍ରୀମାନେ"

ପୁନଶ୍ଚ— "ଈଶ୍ୱର ଖୋରାସାନକୁ ନିଜ ହାତକୁ ନେଇସାରି ଭାରତବର୍ଷକୁ ବାବର-ଅଭିଯାନ ପାଇଁ ଯେପରିକି ଦ୍ୱାର ଖୋଲିଦେଲେ, କିନ୍ତୁ ଏ ଦୋଷ କିଣ ଈଶ୍ୱର ନିଜ ମୁଣ୍ଡକୁ ନେବେ ?
ସ୍ୱୟଂ ମୃତ୍ୟୁ ହିଁ ଯେପରିକି ଆମ ବିରୁଦ୍ଧରେ ଆଜି ଦଣ୍ଡାୟମାନ।
ଯେତେବେଳେ ଏତେ ହତ୍ୟା ଏବଂ ମନୁଷ୍ୟାତ୍ମାର ଏତେ
ଆର୍ତ୍ତନାଦ ଘଟିଗଲା,
ହେ ଈଶ୍ୱର, ତମ ପ୍ରାଣରେ କିଛିହେଲେ ବ୍ୟଥା ଲାଗିଲା ନାହିଁ କି ?
ତମେ ପରା ସମସ୍ତଙ୍କର ଈଶ୍ୱର ?"

# ଗୁରୁ ପରମ୍ପରା

ମୃତ୍ୟୁ ପୂର୍ବରୁ ଗୁରୁ ନାନକ ତାଙ୍କର ଶିଷ୍ୟ 'ଲେହ୍ନା'ଙ୍କୁ ମୁଖ୍ୟ ଶିଷ୍ୟଭୁ ଦେଇଗଲେ । ନିଜର ଯେକୌଣସି ପୁତ୍ରକୁ ଏ ମହତ୍ ଭାର ସେ ଦେଇ-ଯାଇ ପାରିଥାନ୍ତେ ଏବଂ ହୁଏତ ସେଥିରେ ଶିଷ୍ୟମଣ୍ଡଳୀ ଆଦୌ ପ୍ରତିବାଦ କରିନଥାନ୍ତେ । କିନ୍ତୁ ଲେହ୍ନା, ନାନକଙ୍କ ବାଣୀକୁ ନିଜ ଜୀବନରେ ଏପରି ମହିମାନ୍ୱିତ କରି ପାରିଥିଲେ, ନିଜେ ଏପରି ଧର୍ମପ୍ରାଣ ଓ ମହାପ୍ରାଣ ଥିଲେ ଯେ, ନାନକ ଦିନେ ଲେହ୍ନାଙ୍କୁ ସର୍ବସମକ୍ଷରେ ଆଲିଙ୍ଗନ କରି ତାଙ୍କୁ 'ଅଙ୍ଗଦ', ଅର୍ଥାତ୍ ନିଜ ଅଙ୍ଗର ଅଂଶ ବୋଲି ଘୋଷଣା କଲେ ଏବଂ ତାଙ୍କୁହିଁ ମଣ୍ଡଳୀର ଦାୟିତ୍ୱ ଦେଇଗଲେ ।

ଗୁରୁ ଅଙ୍ଗଦ ନାନକଙ୍କ ପ୍ରଚେଷ୍ଟାକୁ ଆଗେଇନେଇ ଚାଲିଲେ ଏବଂ ନାନକଙ୍କର ଜୀବନୀ ଓ ପଦାବଳୀକୁ ଗୁରୁମୁଖୀ ଲିପିରେ ପ୍ରଥମ ଲିପିବଦ୍ଧ କରାଇ ନେଲେ । ଏହାହିଁ ଶିଖ୍ ଧର୍ମସାହିତ୍ୟର ଆରମ୍ଭ । ଗୁରୁ ଅଙ୍ଗଦ, 'ଗୁରୁ କା-ଲଙ୍ଗର୍' ନାମକ ଶିଖ୍‌ମାନଙ୍କର ବିଶିଷ୍ଟ ଅନୁଷ୍ଠାନଟିକୁ ମଧ୍ୟ ସୁପ୍ରତିଷ୍ଠା କରି ଦେଇଗଲେ । ଏହା ହେଉଛି ମିଳିତ-ରୋଷାଇ, ଯେଉଁଠି ଜାତି-ବର୍ଣ୍ଣ-ନିର୍ବିଶେଷରେ ସମସ୍ତେ ଏକତ୍ର ଭୋଜନ କରନ୍ତି । ଏହି ସାମାନ୍ୟ ପ୍ରଥାଟିହିଁ ପରେ କ୍ରମେ ବିରାଟ ସାମାଜିକ ବିପ୍ଳବ ଆଣି ପାରିଲା ।

ତୃତୀୟ ଗୁରୁ ଅମର ଦାସ ସାରା ଭାରତବର୍ଷରେ ଶିଖଧର୍ମ ଶାସନ ପାଇଁ ବାଇଶିଟି 'ମନ୍‌ଜି' ବା ବିଭାଗ ସ୍ଥାପନା କରି ଏକ ପ୍ରତିଷ୍ଠାନ ଭାବରେ ଶିଖଧର୍ମର ମୂଳପତ୍ତନ ପକାଇ ଦେଇଗଲେ । ପର୍ଦ୍ଦା ଓ ସତୀ-ପ୍ରଥାକୁ ନାପସନ୍ଦ କରି, ସେ ସ୍ତ୍ରୀ ଜାତିର ମଧ୍ୟ ପ୍ରଭୂତ ଉନ୍ନତି ବିଧାନ କଲେ ।

ଚତୁର୍ଥ ଗୁରୁ ରାମଦାସ ଅମୃତସର୍ ସ୍ଥାପନ କରି ଶିଖ୍‌ଧର୍ମ ଓ ଗୋଷ୍ଠୀକୁ ଏକ ପ୍ରାଣ-କେନ୍ଦ୍ର ଦେଇ ଗଲେ ।

ପଞ୍ଚମ ଗୁରୁ, ଅର୍ଜୁନଦେବ, ନିଜର ଧର୍ମ ବିଶ୍ୱାସ ପାଇଁ ମୋଗଲ ସମ୍ରାଟ ଜାହାଙ୍ଗିରଙ୍କ ହାତ ନିଷ୍ଠୁର ଭାବରେ ନିହତ ହୋଇ ଶିଖ ଧର୍ମ-ମଣ୍ଡଳୀର ପ୍ରଥମ ଶହୀଦ୍ ରୂପେ ଗଣିତ । ଧର୍ମ ପାଇଁ ଗୁରୁ ଅର୍ଜ୍ଜୁନଙ୍କର ଜୀବନାହୁତି ସମଗ୍ର ଶିଖ୍ ଗୋଷ୍ଠୀରେ ଏକ ନୂତନ ଉତ୍ସାହ ଆଣିଦେଲା ଏବଂ ସେହି ଦୃଢ଼, ମହତ୍ତ୍ୱ ତ୍ୟାଗର ମହିମାହିଁ ଶିଖ୍ ଇତିହାସର ବହୁ ପୃଷ୍ଠାକୁ ଏପର୍ଯ୍ୟନ୍ତ ଜୀବନ୍ତ ଓ ଗୌରବାନ୍ୱିତ କରି ଆସିଛି । ଗୁରୁ ଅର୍ଜ୍ଜୁନଦେବ ହିଁ, ଶିଖ୍ ଧର୍ମ-ଗ୍ରନ୍ଥ, ଗ୍ରନ୍ଥ-ସାହେବ ଏବଂ ଶିଖ୍-ଉପାସନାର କେନ୍ଦ୍ରପୀଠ, ହରି ମନ୍ଦିରକୁ, ଶିଖ୍‌ମାନଙ୍କୁ ଦେଇଗଲେ ।

ଗୁରୁ ଅର୍ଜ୍ଜୁନଙ୍କ ପୁଅ, ଷଷ୍ଠ ଗୁରୁ, ହରି ଗୋବିନ୍ଦ ଆତ୍ମରକ୍ଷା ପାଇଁ ଶିଖ୍‌ମାନଙ୍କୁ ପ୍ରଥମେ ଅସ୍ତ୍ରଶିକ୍ଷା ଦେଲେ । କେବଳ ଶାନ୍ତିପୂର୍ଣ୍ଣ ପ୍ରତିରୋଧ ଶତ୍ରୁ-ଅତ୍ୟାଚାରର ବିରୁଦ୍ଧରେ କିପରି ବୃଥା ଓ ବିଫଳ, ଏହା ବାରମ୍ବାର ଦେଖି ଦେଖି ହିଁ, ଗୁରୁ ହରିଗୋବିନ୍ଦ ଏଥିଲାଗି ଅସ୍ତ୍ରଧାରଣକୁ ଅନ୍ୟତମ ଯୁକ୍ତିଯୁକ୍ତ ପନ୍ଥା ବୋଲି ଘୋଷଣା କଲେ । କିନ୍ତୁ ତାଙ୍କ ଜୀବନକାଳରେ ଶତ୍ରୁ ସହିତ କୌଣସି ସାମରିକ ମୁହାଁମୁହିଁ ଘଟି ନ ଥିଲା ।

ସପ୍ତମ ଗୁରୁ ହରି ରାୟଙ୍କ ଜୀବନକାଳରେ ମଧ୍ୟ ସାମରିକ ଶକ୍ତି ପ୍ରୟୋଗର କୌଣସି ସୁଯୋଗ ଘଟି ନ ଥିଲା । ତଥାପି ହରି ରାୟ, ଦୁଇ ହଜାର ଦୁଇ ଶତ ଅଶ୍ୱାରୋହୀ ସୈନ୍ୟ ନିଜ ଦରବାର ପାଖେ ସର୍ବଦା ସଜ୍ଜିତ ରଖିଥିଲେ ଏବଂ ଶିଖ-ସମାଜକୁ କଠୋରତର ଶୃଙ୍ଖଳା ଭିତରେ ଗଢ଼ିବାକୁ ଚେଷ୍ଟା କରିଥିଲେ । ହରି ରାୟଙ୍କର ସାମରିକ ପ୍ରସ୍ତୁତି ଓ କାଇଦା, ନାନକ ଗୁଡ଼ଉପାଇ ଥିବା ଗୁରୁ-ଗାଦିର ଆଧ୍ୟାତ୍ମିକତା ସହିତ କୌଣସି ବିରୋଧ ସୃଷ୍ଟି କରି ନ ଥିଲା । କାରଣ ସେତେବେଳକୁ ଶତ୍ରୁର ସମ୍ମୁଖୀନ ହେବାନିମନ୍ତେ ବଳ ସଂଗ୍ରହ, ସମଗ୍ର ଶିଖ୍ ସମାଜରେ ଏକ ନ୍ୟାଯ୍ୟ ପନ୍ଥା ବୋଲି ଗୃହୀତ ହୋଇସାରିଥିଲା । ଶିଖ୍-ସମାଜର ବିବର୍ତ୍ତନରେ ଏହି ଆଭ୍ୟନ୍ତରୀଣ ବିଶ୍ୱାସ, ବାହାରର, ଘଟଣାବଳୀର ଉପରେହିଁ ବରାବର କାର୍ଯ୍ୟ କରି ଆସିଛି ।

ଅଷ୍ଟମ ଗୁରୁ ହରିକିଶନ୍, ଗୁରୁ ଗାଦିରେ ବସିଲାବେଳକୁ ଶ୍ରେଷ୍ଠ ବାଳକ ମାତ୍ର ଥିଲେ ଏବଂ ମାତ୍ର ତିନି ବର୍ଷ ସେ ଦାୟିତ୍ୱରେ ଥିଲେ । କିନ୍ତୁ ପିଲା ହେଲେ ମଧ୍ୟ ସେ ବୟସ୍କଙ୍କର ବିଚାରବୁଦ୍ଧି ସହିତ ନିଜର ଦାୟିତ୍ୱ ପାଳନ କରିଥିଲେ । ଏହି ବାଳକ-ନେତାଙ୍କର ଶତ୍ରୁ ସମଗ୍ର ଗୋଷ୍ଠୀର

କଲ୍ୟାଣରେ ହିଁ କପରି ସର୍ବଦା ପୂର୍ଣ୍ଣ ଥିଲା, ତାହା, ନିଜର ବହୁ ନିକଟ କୁଟୁମ୍ବଙ୍କୁ ପରିତ୍ୟାଗ କରି, ମୃତ୍ୟୁ-ଶଯ୍ୟାରେ ସେ ତେଗ୍‌ବାହାଦୁରଙ୍କୁ ଯେପରି ତାଙ୍କର ଶିଷ୍ୟରୂପେ ନିର୍ବାଚନ କଲେ, ସେଇଥିରୁ ହିଁ ସ୍ପଷ୍ଟ ପ୍ରମାଣିତ । ତେଗ୍ ବାହାଦୁର ଯେ ଏ ଗୁରୁ ଦାୟିତ୍ୱ ପାଇଁ ସର୍ବୋତ୍ତମ ଥିଲେ, ଏଥିରେ ସନ୍ଦେହ ନାହିଁ ।

ଏହି ସମୟରେ, ଗୁରୁ-ପରଂପରା ଚାଲି ଆସିଲା ଗୁରୁ ଗୋବିନ୍ଦ ସିଂହଙ୍କ ପିତା ନବମ ଗୁରୁ ତେଗ୍ ବାହାଦୁରଙ୍କ ପର୍ଯ୍ୟନ୍ତ ଏବଂ ଏହିପରି ମଧ୍ୟ ପ୍ରତି ଗୁରୁଙ୍କ ବ୍ୟକ୍ତିଗତ ଆଦର୍ଶ ବା ବିଶେଷ ବିଶେଷ ଅବସ୍ଥାକୁ ଚାହିଁ ବିଶେଷ ବିଶେଷ ନିର୍ଦ୍ଦେଶରେ ଶିଖ ସମାଜ ଏକ ଏକ ନୂତନ ନୂତନ ଗୁଣ ଗ୍ରହଣ କରି କ୍ରମେ ଏକ ପରିପୂର୍ଣ୍ଣ ଅଭ୍ୟୁଦୟ ଆଡକୁ ଗତିକଲା ।

ଏହିପରି ଭାବରେ ଗୁରୁ ଗୋବିନ୍ଦ ସିଂ ଦଶମ ଗୁରୁ ଭାବରେ ଯେତେବେଳେ ନାନକଙ୍କ ସିଂହାସନ ଆରୋହଣ କଲେ, ସେତେବେଳେ ସେ ପୂର୍ବର ନବମ ଗୁରୁ ଛାଡ଼ି ଯାଇଥିବା କ୍ରମବର୍ଦ୍ଧିଷ୍ଣୁ ଏକ ମହାନ୍ ଐତିହ୍ୟ ଉତ୍ତରାଧିକାର ସୂତ୍ରରେ ପାଇଲେ ।

ଶିଖ୍‌ମାନେ ବରାବର ବିଶ୍ୱାସ କରି ଆସିଛନ୍ତି ଯେ, ପ୍ରତ୍ୟେକ ଗୁରୁ ଈଶ୍ୱରଙ୍କର ଅଂଶ, ଈଶ୍ୱରଂକଦ୍ୱାରା ଅଭିଷିକ୍ତ ଏବଂ ପ୍ରତ୍ୟେକେ ନିଜର ଉତ୍ତରାଧିକାରୀଙ୍କୁ ସେହି ଏକ ଦିବ୍ୟଜ୍ଞାନ ଓ ଦିବ୍ୟ ନିର୍ଦ୍ଦେଶ ଦେଇ ଯାଇଛନ୍ତି । ଏ ବିଷୟରେ ମଧ୍ୟ ଗୁରୁ ଗୋବିନ୍ଦ ସିଂକର "ବିଚିତ୍ର ନାଟକ" ହିଁ ଶ୍ରେଷ୍ଠ ପ୍ରମାଣ । ଗୁରୁ ଗୋବିନ୍ଦ ସିଂ କହିଛନ୍ତି— "ନାନକ ଅଙ୍ଗଦଂକ ବିଗ୍ରହ ଧାରଣ କଲେ, ଠିକ୍ ଯେପରି ଗୋଟିଏ ପ୍ରଦୀପ ଆଉ ଗୋଟିଏ ପ୍ରଦୀପକୁ ଜାଳି ଦିଏ । ସେହିପରି ନାନକହିଁ ପୁଣି ଅମର ଦାସ ବୋଲି କଥିତ ହେଲେ ।............ ପବିତ୍ରାତ୍ମା ନାନକହିଁ ଅଂଗଦ ନାମରେ ପରିଚିତ ହୁଅନ୍ତେ, ଅମର ଦାସ ଭିତରେ ସେହି ଅଙ୍ଗଦ ମଧ୍ୟ ଆବିର୍ଭାବ ହେଲେ । ଅମର ଦାସ ପୁଣି ହେଲେ ରାମ ଦାସ । ରାମଦାସ ଈଶ୍ୱରଂକ ସହିତ ମିଳିତ ହେବା ପୂର୍ବରୁ ଗୁରୁ ଦେଇଗଲେ ଅର୍ଜ୍ଜୁନଙ୍କୁ ।ଅର୍ଜ୍ଜୁନ ନିଯୁକ୍ତ କଲେ ହରି-ଗୋବିନ୍ଦଙ୍କୁ ଏବଂ ହରି ଗୋବିନ୍ଦ ସିଂହାସନ ଦେଇଗଲେ ହରି ରାୟଂକୁ ତାଂକ ଅନ୍ତେ ତାଂକ ପୁଅ ହରି କିଶନ୍ ଗୁରୁ ହେଲେ । ତାଂଙ୍କ ପରେ ଆସିଲେ ତେଗ୍‌ବାହାଦୁର ।"

---

# ଦ୍ୱିତୀୟ ଅଧ୍ୟାୟ

## ପାଟନାରେ ଶିଶୁ-ଯାଜକ

ନବମ ନାନକ ଗୁରୁ ତେଗ୍‌ବାହାଦୂର (୧୬୨୧—୭୫) ଶିଖ-ମଣ୍ଡଳୀର ନେତୃତ୍ୱ ନେଲାବେଳକୁ ଦେଶର ଶାସନ ଆସି ଯାଇଥିଲା ଆଉରଙ୍ଗଜେବ୍‌ଙ୍କ ହାତକୁ। ନିଜ ପିତା ସାହାଜାହାନଙ୍କୁ ସିଂହାସନରୁ ବିତାଡ଼ିତ ଓ ଆଗ୍ରାଦୁର୍ଗରେ ବନ୍ଦୀ କରି ସେ ସାମ୍ରାଜ୍ୟ ଅଧିକାର କରି ବସିଥିଲେ। ତାଂକ ରାଜତ୍ୱର ପ୍ରଥମ କେତେବର୍ଷ ନିଜର ବିରୋଧୀମାନଙ୍କୁ ନିପାତ କରିବାରେ ଓ ଭାଇମାନଙ୍କୁ ଗୋଟି ଗୋଟି କରି ନିଜ ପଥରୁ ନିକାଳି, ନିଜ ଆସ୍ଥାନ ଦୃଢ କରିବାରେହିଁ କଟିଯାଇଥିଲା। କିନ୍ତୁ ସେ ଅବସ୍ଥାରେ ମଧ୍ୟ, ଗୁରୁ ତେଗ୍ ସିଂଙ୍କର ଧର୍ମ-କର୍ମ ପାଇଁ ଅବିରତ ଭ୍ରମଣ, ଆଉରଙ୍ଗ-ଜେବଙ୍କର ଦୃଷ୍ଟିକି ଛପି ଯାଇ ନ ଥିଲା। ଥରେ ଗୁରୁପ୍ରାଣ କେତେକ ଶିଖ୍ ଭକ୍ତ ଓ ପରିବାରକୁ ନେଇ ତେଗ୍ ସିଂ ପଂଜାବରୁ ଭିନ୍ନ ଭିନ୍ନ ଶିଖ୍-ଗୋଷ୍ଠୀ-ରହିଥିବା ସ୍ଥାନମାନଙ୍କରେ ଧର୍ମପ୍ରଚାର ପାଇଁ ବାହାରିଥିଲେ। ଦିଲ୍ଲୀ ନିକଟ ଦେଇ ଯାଉଥିଲାବେଳେ, ଏ ଯାତ୍ରାର କଥା ଅଉରଙ୍ଗଜେବଙ୍କ କାନକୁ ଗଲା। ସନ୍ଦେହୀ ଆଉରଙ୍ଗଜେବ୍ କୌଣସି ଠାରେ ଲୋକବାକ ଜମାହେବା ଆଦୌ ଚାହୁଁ ନ ଥିଲେ। ସଦଳବଳ ତେଗ୍‌ସିଂଙ୍କର ଯାତ୍ରାର କଥା ଶୁଣିଲା ମାତ୍ରେ ଆଉରଙ୍ଗଜେବ ତାଂକୁ ଗିରଫ କରିବା ପାଇଁ ଆଦେଶ ଦେଲେ। ତେଗ୍ ବାହାଦୂରଙ୍କୁ ନଜରବନ୍ଦୀରେ ରଖାଗଲା, କିନ୍ତୁ ଭାଗ୍ୟେ ଆଉରଙ୍ଗଜେବ୍‌ଙ୍କ ଦରବାରରେ ଥିଲେ ଜୟପୁରର ରାଜା ରାମ ସିଂ, ଯାହାଂଙ୍କର ସମଗ୍ର ପରିବାର ଗୁରୁ ହରଗୋବିନ୍ଦଂକ ସମୟରୁ ନାନକ-ଧର୍ମ ଓ ଗୁରୁ ପରଂପରାକୁ ଭକ୍ତି କରି ଆସୁଥିଲେ। ତାଂକର କୁହାବୋଲାରେହିଁ ତେଗ୍ ସିଂକୁ ସେଥର ମୁକ୍ତ ଦିଆଗଲା।

ମୁକ୍ତ ପାଇ, ତେଗ୍‌ବାହାଦୂର, ପୂର୍ବ ଆଡ଼କୁ ଯାତ୍ରା କରି, ଆଲାହାବାଦ୍, ବନାରସ, ଗୟା ପ୍ରଭୃତି ସହର ଦେଇ ଶେଷରେ ଆସି ପାଟନାରେ ପହଂଚିଲେ। ତାଂକର ପରିବାର ପାଟନାରୁ ଫେରିବାକୁ ଇଚ୍ଛା କଲେ ନାହିଁ। ତେଣୁ ତେଗ୍‌ବାହାଦୁର, ନିଜ ପତ୍ନୀଙ୍କୁ ନିଜର ମାତା

ଓ ଶାଳକ କୀର୍ପାଲ ଗୃନ୍ଦଂକ ଜମ୍ମାରେ ପାଟନାରେ ରଖାଇଦେଇ ନିଜେ ଆସାମ ଆଡ଼କୁ ଗଲେ; ନାନକ-ପଦ-ରଜରେ ପବିତ୍ର ସ୍ଥାନମାନ ଓ ସେହି ସେହି ସ୍ଥାନରେ ଥିବା ଶିଖ ଶିଷ୍ୟମାନଙ୍କୁ ଦେଖି ଆସିବା ପାଇଁ ।

ପ୍ରାଚୀନ ପାଟଳିପୁତ୍ର ନାମରେ ଏହିର ପାଟନା ସହର ପ୍ରାୟ ବହୁ-ଶତ ବର୍ଷ ଧରି ଭାରତବର୍ଷରେ ପ୍ରଧାନ ନଗରୀ ଥିଲା । ଦୁଇ ହଜାର ପୃବଶତ ବର୍ଷ ପୂର୍ବେ ନଗରୀର ପ୍ରତିଷ୍ଠାତା ରାଜା ଅଜାତଶତ୍ରୁଙ୍କୁ ସ୍ୱୀକୃତ କୌଣସି ପାପ ପାଇଁ ଭର୍ତ୍ସନା କରିବା ଉଦ୍ଦେଶ୍ୟରେ ମହାମାନବ ବୁଦ୍ଧ ଏହି ନଗରୀକୁ ଆସି, ତାହାକୁ ନିଜର ପବିତ୍ର ଚରଣ-ସ୍ପର୍ଶରେ ଧନ୍ୟ କରି ଯାଇଥିବାର ମଧ୍ୟ କୁହାଯାଏ । ତଥାପି ଏହି ମହାନଗରୀ ତାର ଶ୍ରେଷ୍ଠ ଗୌରବ ପାଇଁ ଯେପରି ଅପେକ୍ଷା କରି ରହିଥିଲା ।

୧୬୬୬ ଖ୍ରୀଷ୍ଟାବ୍ଦର ଡ଼ିସେମ୍ବର ମାସ ୨୬ ତାରିଖ ରବିବାରେ ଐତି-ହାସିକ ପାଟନା ସହରର ଏକ କ୍ଷୁଦ୍ର ଘରେ ଗୋଟିଏ ଦୀପ ଜଳି ଉଠିଲା, ଯାହାର ଲକ୍ଷ୍ୟ ହେଲା ସମଗ୍ର ଜଗତର ଅନ୍ଧକାର ବିନାଶ କରିବା । ପରମ-ପିତାଂକ ଇଚ୍ଛାନୁଯାୟୀ ତାଂକର ପୁତ୍ର ଧରାରେ ଅବତୀର୍ଣ୍ଣ ହେଲେ । ସେହି ପବିତ୍ର ଦିବସରେ ତେଗ୍ ବାହାଦୂରଂକ ପତ୍ନୀ, ମାତା ଗୁଜ୍ରୀ ଜନ୍ମଦାନ କଲେ ଗୁରୁ ଗୋବିନ୍ଦ ସିଂଙ୍କୁ ।

ଗୁରୁ ଗୋବିନ୍ଦ ସିଂ ନିଜେ, 'ବିଚିତ୍ର ନାଟକ'ରେ ଏହି ଘଟଣାକୁ ଏହିପରି ବର୍ଣ୍ଣନା କରିଛନ୍ତି—

"ପିତାମୋର ଗଲେ ପୂର୍ବକୁ,
ବହୁତୀର୍ଥ ଭ୍ରମଣ କଲେ,
× × ×
ତାରି ପୁଣ୍ୟାଲୋକ ମନୁଷ୍ୟ ରୂପ ଧାରଣ କଲା;
ମୁଁ ପାଟଣାରେ ଜନ୍ମ ଗ୍ରହଣ କଲି ।"

ତେଗ୍ ବାହାଦୁର ସେତେବେଳେ ଆସାମର ଧୁବ୍ରି ସହରରେ ଗୁରୁ ଗୋବିନ୍ଦ ସିଂଙ୍କ ଜନ୍ମର ସୁଖବରରେ ପାଟନାରେ ଓ ଧୁବ୍ରିଠାରେ ଆନନ୍ଦର ତେଉ ଖେଳିଗଲା କହିଲେ ଚଳେ । ସମଗ୍ର ଭାରତର ବିଭିନ୍ନ ଅଂଚଳରୁ ଦଳ ଦଳ ଶିଖ ପାଟନାକୁ ତୀର୍ଥଯାତ୍ରା କରି ଆସିଲେ ।

ସେମାନଙ୍କ ଭିତରେ ଥିଲେ ଜଣେ ମୁସଲମାନ ଫକୀର, ଯେ ନବଜାତ ଗୁରୁ ଗୋବିନ୍ଦଙ୍କୁ ଦେଖି ଘୋଷଣା କଲେ ଯେ ସେ ଏକ ଦେବ-ପୁରୁଷ ।

ତେଣେ ପଂଜାବରେ ଘୁରମ ନାମକ ଗ୍ରାମରେ, ଗୁରୁ ଗୋବିନ୍ଦଙ୍କ ଜନ୍ମଦିବସରେ ଜନୈକ ପ୍ରସିଦ୍ଧ ମୁସଲମାନ ପୀର ପୂର୍ବକୁ ମୁଖ କରି ପ୍ରାର୍ଥନା କରିବାର ଦେଖାଗଲା । ମକ୍କାର କା'ବା ମନ୍ଦିରକୁ ଲକ୍ଷ୍ୟ କରି, ଭାରତୀୟ ମୁସଲମାନମାନେ ପଶ୍ଚିମମୁଖୀ ହୋଇ ପ୍ରାର୍ଥନା କରିବାର କଥା । ଏହି ପୀର ପୂର୍ବଦିଗକୁ ମୁଖ କରି ପ୍ରାର୍ଥନା କରନ୍ତେ, ତାଙ୍କର ଶିଷ୍ୟମାନେ ବିସ୍ମିତ ହୋଇ କାରଣ ପଚାରିଲେ । ପୀର କହିଲେ, ସେ ଜାଣି ପାରିଛନ୍ତି ଯେ, ପୂର୍ବଦିଗର କୌଣସି ନଗରରେ ପରମ ମଙ୍ଗଳମୟ ଭଗବାନ ଏକ ନବଜାତ ଶିଶୁ ହୋଇ ନିଜକୁ ପ୍ରକଟିତ କରିଛନ୍ତି । ସେ ସେହି ପରମକାରୁଣିକ ଈଶ୍ୱରଂକୁହିଁ ପ୍ରଣାମ କରିଛନ୍ତି, କୌଣସି ସାଧାରଣ ମର୍ତ୍ତ୍ୟଜନକୁ ନୁହେଁ ।

ନବଜାତ ଶିଶୁର ନାମ ରଖାଗଲା ଗୋବିନ୍ଦ ଦାସ, ଅର୍ଥାତ୍ ପ୍ରଭୁଙ୍କର ସେବାକାରୀ ଏବଂ ପାଟନାର ବହୁ ନାଗରିକମାନଙ୍କ ପାଇଁ ସେହି ଶିଶୁଟି ଶ୍ରଦ୍ଧା ଓ ବିସ୍ମୟର ଏକ କେନ୍ଦ୍ର ହୋଇ ଉଠିଲା । ନିଗୂଢ଼ତାର ଉଜ୍ଜ୍ୱଳଚକ୍ରବେଷ୍ଟିତ ସେହି ମନୋହର ଶିଶୁମୁଖରେ ଲୋକେ ଦେଖିବାକୁ ପାଇଲେ, ଶାଶ୍ୱତର ରହସ୍ୟ ଏବଂ ଏପରିକି ପ୍ରାଚୀନ ନଗର ପାଟନା ମଧ୍ୟ ଯେପରି ଏକ ନବଜନ୍ମ ପାଇଲା । ଏପରି ଏକ ପବିତ୍ରାତ୍ମାର ଉପସ୍ଥିତି ଯୋଗୁଁ ଏହାର ବାୟୁମଣ୍ଡଳରେ ଯେପରି କି ଏକ ନୂତନ ଉନ୍ମାଦନା ଦେଖା ଦେଲା । ଶିଶୁ ଗୋବିନ୍ଦଙ୍କ କ୍ରୀଡ଼ା ଓ ଦିବ୍ୟୋକ୍ତି ବଚନରେ ଏହାର ପଥସବୁ ମୁଖରିତ ହେବାକୁ ଲାଗିଲା ଏବଂ ଟିକିଏ ବଡ଼ ହୋଇଗଲା ପରେ ଦଳେ ସାଙ୍ଗଙ୍କୁ ଧରି ସେହି ଶିଶୁ ସାରା ସହର ଆବିଷ୍କାର କରିବାରେ ଲାଗିବାର ଦେଖାଗଲା । ଶିଶୁ ଗୋବିନ୍ଦଙ୍କର ପ୍ରିୟତମ କ୍ରୀଡ଼ା ଥିଲା, ସାଙ୍ଗମାନଙ୍କୁ ଦୁଇ ଦଳରେ ବିଭକ୍ତ କରାଇ, ସେମାନଙ୍କ ଭିତରେ କୃତ୍ରିମ-ଯୁଦ୍ଧ ଠିଆ କରାଇବା । ସବୁଥିରେ ଏବଂ ସବୁବେଳେ ଦଳର ପ୍ରଧାନ ନେତୃତ୍ୱ ତାଙ୍କଠିହିଁ ନ୍ୟସ୍ତ ରହୁଥିଲା । ଧନୁଶର ହସ୍ତରେ ସାଙ୍ଗମାନଙ୍କୁ ନେଇ ଆକ୍ରମଣ-ପ୍ରତିଆକ୍ରମଣର ଅଭିନୟ କରିବାକୁ ସେ ଭାରି ସୁଖ ପାଉଥିଲେ ଏବଂ ଆନ୍ତରିକ ସୁଖ ପାଉଥିଲେ, ଦିବସର କ୍ରୀଡ଼ା ଶେଷରେ ସାଙ୍ଗମାନଙ୍କୁ

ନିଜ ଘରକୁ ଡାକି ଆଣି, ସେମାନଙ୍କୁ ଉତ୍ତମ ଭୋଜନରେ ପରିତୃପ୍ତ କରାଇବାରେ । ଗୋବିନ୍ଦଙ୍କ କ୍ରୀଡ଼ାସାଥୀମାନଙ୍କୁ ଖିଆଇ ଖୁସୀ କରିବାରେ ତାଙ୍କର ମା’ ଓ ଗୋସେଇଁ ମା’, ଉଭୟେ, ଆନନ୍ଦ ଉପଭୋଗ କରୁଥିଲେ ଏବଂ ଗୋବିନ୍ଦଙ୍କୁ ସାହଚର୍ଯ୍ୟ ଦେଉଥିବାରୁ, ମିଷ୍ଟାନ୍ନ ସହିତ ପ୍ରଚୁର ଆଶୀର୍ବାଦ ମଧ୍ୟ ସେମାନଙ୍କୁ ଦେଉଥିଲେ । ମା’ ଓ ଗୋସେଇଁ ମା’ ବର୍ଦ୍ଧିଷ୍ଣୁ ଗୋବିନ୍ଦଙ୍କର ସ୍ୱାସ୍ଥ୍ୟ ଓ ନିରାପତ୍ତା ପାଇଁ ଅନ୍ତରରେ ସର୍ବଦା ଅକାଳଙ୍କୁ ପ୍ରାର୍ଥନା କରିବା ସ୍ୱାଭାବିକ । କିନ୍ତୁ ଶିଶୁ ଗୋବିନ୍ଦ ଏତେ କ୍ରୀଡ଼ାପ୍ରିୟ ଥିଲେ ଯେ, ସେ ଶିଖ୍ ସନ୍ଧ୍ୟା ପ୍ରାର୍ଥନା ‘ରହିରାସ’ ବେଳକୁ ଠିକ ସମୟରେ ପ୍ରାୟ ଘରକୁ ଫେରି ପାରୁ ନ ଥିଲେ । ଫଳରେ ତାଙ୍କ ପାଇଁ ସନ୍ଧ୍ୟା-ପ୍ରାର୍ଥନାର ମୁହୂର୍ତ୍ତ ଘୁଞ୍ଚାଇ ନେବାକୁ ପଡୁଥିଲା । ସେହି କାରଣରୁ ଏବେ ବି ପାଟନା ଗୁରୁଦ୍ୱାରରେ ସାନ୍ଧ୍ୟ-ପ୍ରାର୍ଥନାର ସମୟ ଅନ୍ୟ ଗୁରୁଦ୍ୱାରମାନଙ୍କରେ ଯାହା ଧର୍ମ-ସମ୍ମତ କାଳ, ତାଠାରୁ ବିଳମ୍ବରେ ରହିଛି ।

ଶିଶୁ ଗୋବିନ୍ଦଙ୍କର ଆଉ ଏକ ପ୍ରିୟ ବିନୋଦନ ଥିଲା; ବାଟୁଳି-ଝଡ଼ାରେ ପାଣି-ମାଠିଆ ଭାଙ୍ଗି ଦେଇ, ପାଟନାର ପୁରବାଳାମାନଙ୍କୁ କୌତୁକରେ ହଇରାଣ କରେଇବା । ଏପରି ଭାବରେ ଅତ୍ୟାଚରିତା ପୌରସୀମନ୍ତିନୀଗଣ ଶିଶୁ ଗୋବିନ୍ଦଙ୍କର ଏହି ସାମାନ୍ୟ-ଦୂର ପରିହାସକୁ ଯେ ନିଜେ ଉପଭୋଗ କରୁ ନଥିଲେ, ଏପରି ନୁହେଁ, ତେବେ ବାହ୍ୟତଃ ବିରକ୍ତି ପ୍ରକାଶ କରି ସେମାନେ ଆସି ମାତା ଗୁଜରୀ ଦେବୀଙ୍କ ଆଗରେ ଅଭିଯୋଗ କରୁଥିଲେ ଏବଂ ଫଳରେ, ନୂତନ ମଠିଆ ଘେନି ଫେରୁଥିଲେ । ମା ଓ ଗୋସେଇଁ ମା’ ବରାବର ଏପରି କହିବାକୁ ଦେବାରେ ଯେ ବିରକ୍ତ ନ ହେଉଥିବେ କିଏ କହିବ ?

କିନ୍ତୁ ଏହି ସ୍ୱାଭାବିକ ବାଳଲୀଳା ଭିତରେ ମଧ୍ୟ ଶିଶୁ ଗୋବିନ୍ଦଙ୍କର ଈଶ୍ୱର ନିର୍ଦ୍ଦିଷ୍ଟ କର୍ମ କିପରି ଆପେ ଆପେ ସମ୍ପନ୍ନ ହୋଇ ଚାଲିଥିଲା, ତାହା ଭାବିଲେ ବିସ୍ମିତ ହେବାକୁ ହୁଏ ।

ସେତେବେଳେ ପାଟନା ସହରରେ ଶିବଦତ୍ତ ନାମରେ ଜଣେ ବୃଦ୍ଧ, ଜନ-ସମ୍ମାନିତ, ଧର୍ମନିଷ୍ଠ ବ୍ରାହ୍ମଣ ବାସ କରୁଥିଲେ । ସତ୍ୟର ଅନୁସନ୍ଧାନରେ ସେ ଧନୀ ଓ ଅଭିଜାତ ପରିବାରରେ ଜାତ ହୋଇ ମଧ୍ୟ, ଯୌବନରୁ ସଂସାର ତ୍ୟାଗ କରିଥିଲେ । କିନ୍ତୁ ସେ ପର୍ଯ୍ୟନ୍ତ ତାଙ୍କର ଅନୁସନ୍ଧାନ ଶେଷ ହୋଇ-

ନ ଥିଲା । ତାଙ୍କର ହୃଦୟ ସେ ପର୍ଯ୍ୟନ୍ତ ଶୂନ୍ୟବୋଧ ହେଉଥିଲା ଏବଂ ସେ ସେ ପର୍ଯ୍ୟନ୍ତ ତାଙ୍କର ଅନ୍ତରର ଇଷ୍ଟ ଦେବତାଙ୍କୁ ଖୋଜି ବୁଲୁଥିଲେ । ଏହି ଅବସ୍ଥାରେ ବୃଦ୍ଧ ଶିବଦତ୍ତ ଦିନେ ହଠାତ୍ ବାଳକ ଗୋବିନ୍ଦଙ୍କୁ ପାଟନାର ଏକ ରାସ୍ତାରେ ସାଙ୍ଗ ମେଳରେ ଦେଖିଲେ । ସେହି ସାରଲ୍ୟ-ନିଗ୍ଧହତାପୂର୍ଣ୍ଣ ସୁନ୍ଦର ମୁଖମଣ୍ଡଳ ଉପରେ ଶିବଦତ୍ତଙ୍କର ଦୃଷ୍ଟି ନିପତିତ ହୁଅନ୍ତେ, ତାଙ୍କର ହଠାତ୍ ହୃଦ୍‌ବୋଧ ହେଲା, ଯେପରିକି ସେହି ମୁହୂର୍ତ୍ତରେହିଁ ତାଙ୍କର ଦୀର୍ଘ ଆଧ୍ୟାତ୍ମିକ ସାଧନା ଶେଷ ହୋଇଗଲା । ସେ ବର୍ତ୍ତମାନ ଏହି ଦର୍ଶନ-ଜନିତ ଅପୂର୍ବ ଆନନ୍ଦକୁ ଅନ୍ତରରେ ଚିରସ୍ଥାୟୀ କରିବାକୁ ଚେଷ୍ଟା କଲେ ଏବଂ ସେହି ଲାବଣ୍ୟମୟ ମୁଖର ଧ୍ୟାନ ଭିତରେ ହିଁ ସେ ନିଜର ଇପ୍ସିତ ଦେବ-ଦେବୀଙ୍କି ଦେଖିବାକୁ ପାଇଲେ ।

ରାଜା ଫତେଚନ୍ଦ୍ର ମତିନ ସେ ସମୟରେ ପାଟନା ସହରରେ ଜଣେ ବିଖ୍ୟାତ ଲୋକ ଥିଲେ । ଧନ, ମାନ, ପ୍ରତିପତ୍ତି ଆଦି ମନୁଷ୍ୟ, ପାର୍ଥିବ ଜୀବନରେ ଯାହା ଚାହେଁ, ରାଜା ଫତେଚନ୍ଦ୍ରଙ୍କର ସେ ସମସ୍ତହିଁ ଥିଲା; କିନ୍ତୁ ତଥାପି ରାଜା ଓ ରାଣୀଙ୍କର ଦୁଃଖର ସୀମା ନ ଥିଲା । କାରଣ, ସେମାନେ ଅପୁତ୍ରିକ ଥିଲେ । ସେମାନେ ଧର୍ମନିଷ୍ଠ ବ୍ରାହ୍ମଣ ଶିବଦତ୍ତଙ୍କୁ ବହୁ ଦିନରୁ ଜାଣିଥିଲେ ଏବଂ ତାଙ୍କୁ ଅତିଶୟ ସମ୍ମାନ କରୁଥିଲେ । ଦିନେ ବୃଦ୍ଧ ଶିବଦତ୍ତ ଗଙ୍ଗାକୂଳରେ ବସି ଗୋବିନ୍ଦ-ବଦନ-ଧ୍ୟାନ-ଜନିତ ଆନନ୍ଦକୁ ଅନ୍ତରରେ ପୁନରାବୃତ୍ତି କରୁଥିବାବେଳେ ରାଜା ଫତେ ସିଂ ଓ ରାଣୀ ଆସି ପୁତ୍ର କାମନାରେ ତାଙ୍କର ଶରଣାଗତ ହେଲେ । କିନ୍ତୁ ଶିବଦତ୍ତ ସେମାନଙ୍କୁ ଉପଦେଶ ଦେଲେ ଯେ ସେମାନେ ଯାହା ଚାହୁଁଛନ୍ତି, ତାହା ସେହି ନଗରରେ ଥିବା ଏକ ବାଳକ ହିଁ ସେମାନଙ୍କୁ ଦାନ କରିପାରିବ; ସେମାନେ ଯାଆନ୍ତୁ ତାର ଆଗରେ ସେମାନଙ୍କର ହୃଦୟ ଖୋଲି ଦିଅନ୍ତୁ ।

ପଣ୍ଡିତ ଶିବଦତ୍ତଙ୍କ ଉପଦେଶ ଅନୁସାରେ ରାଜା ଫତେ ସିଂ ଓ ରାଣୀ, ସେଠାରୁ ଯାଇ ଗୁରୁ ଗୋବିନ୍ଦ ସିଂଙ୍କୁ ଭେଟିଲେ ଓ ଭେଟି ସେମାନଙ୍କର ମନେ ହେଲା ସେମାନେ ଯେପରି ଏକ ନୂତନ ଇଷ୍ଟଦେବତା ପୂଜା କରିବାକୁ ପାଇଲେ । ବାଳକ ଗୋବିନ୍ଦଙ୍କ ପ୍ରତି ସେମାନଙ୍କର ଭକ୍ତି-ଆସକ୍ତି ଦିନୁଦିନ ବଢ଼ିବାକୁ ଲାଗିଲା । ଦିନେ ରାଣୀ ଗୃହାଙ୍ଗନରେ ବସି ଚିନ୍ତାମଗ୍ନ ଥିଲାବେଳେ, ବାଳକ ଗୋବିନ୍ଦ ବାହାରେ ଦୀର୍ଘକାଳ କ୍ରୀଡ଼ା ପରେ ଘରକୁ ଫେରି ରାଣୀଙ୍କୁ ଅଗଣାରେ ଏକା ବସିଥିବାର ଦେଖି, ଧୀରେ,

ଅଲକ୍ଷିତ ଭାବରେ ତାଙ୍କ ଗଳାରେ ନିଜର ଶ୍ରେଷ୍ଠ ବାହୁ ଦୁଇଟିକୁ ଛନ୍ଦି ଦେଇ ଡାକିଦେଲେ "ମା ଗୋ !" । ସନ୍ତାନହୀନା ରାଣୀଙ୍କ କର୍ଣ୍ଣରେ ଏହି 'ମା' ଡାକ ଅମୃତଧାରା ବର୍ଷଣ କରିବାକୁ ଲାଗିଲା ଏବଂ ତାଙ୍କର ହୃଦ୍‌କନ୍ଦର ଆନନ୍ଦରେ ପୂର୍ଣ୍ଣ ହୋଇ ଉଠିଲା । ସେ ଉଠିପଡ଼ି ଓ ପଛକୁ ଫେରି ଦେଖିଲେ ବାଳକ ଗୋବିନ୍ଦ ତାଙ୍କ ଆଡ଼କୁ ଅନାଇ ହସି ହସି ଠିଆ ହୋଇଛନ୍ତି । ରାଜା ଓ ରାଣୀ ଯେଉଁ ବିସ୍ମୟକର ଘଟଣା ପାଇଁ ଏଯାବତ୍ ଖୋଜ ହେଉଥିଲେ, ମନେ ହେଲା ତାହା ହୁଏତ ଆରମ୍ଭ ହୋଇଗଲା । ରାଜା ଓ ରାଣୀଙ୍କର ପୁତ୍ରକାମନା ସିଦ୍ଧ ହେବାର ସୂଚନା ହେଲା । ଫଳରେ ସେମାନଙ୍କର ଅନ୍ତର ଆନନ୍ଦ ଓ କୃତଜ୍ଞତାରେ ପୂର୍ଣ୍ଣହୋଇଗଲା । ସେମାନେ ବର୍ତ୍ତମାନ ଦିନର ଅଧିକାଂଶ ସମୟ ଧ୍ୟାନ ଓ ପ୍ରାର୍ଥନାରେ କଟାଇଲେ ଏବଂ ତାଙ୍କର ଗୃହ, ପାଟନାରେ ଥିବା ଶିଖମାନଙ୍କର ଏକ ପ୍ରଧାନ ମିଳନ-ପୀଠ ହୋଇ-ଉଠିଲା । ସେ ଘର ପାଟନା ସହରରେ ଏ ପର୍ଯ୍ୟନ୍ତ ଏକ ପ୍ରଧାନ ଐତିହାସିକ ସଙ୍କେତ ହୋଇ ଠିଆ ରହିଛି ।

ସେଦିନ ଘରକୁ ଫେରି ବାଳକ ଗୋବିନ୍ଦ ପରିପୂର୍ଣ୍ଣ ନିଶ୍ଚିନ୍ତତାରେ ଘୋଷଣା କଲେ ଯେ ସେ ଆଜି ଏକ ନୂତନ ଜନନୀ ସୃଷ୍ଟିକରି ଆସିଛନ୍ତି ।

ମାତା ଗୁଜ୍ରୀ ଦେବୀ କୁତୂହଳୀ ହୋଇ ପଚାରିଲେ ତେବେ ଗୋଟିଏ ପୁଅ, ଦିଟି ମା'ର କୋଳରେ କେଳିବ କପରି ?

ଗୋବିନ୍ଦ ଉତ୍ତର ଦେଲେ—ଠିକ୍ ଯେପରି ଚନ୍ଦ୍ର, ଦି'ଟା ପୋଖରୀର ଜଳରେ ଏକାବେଳେକେ ଏକ ପରି ଖେଳିଥାଏ ।

ପାଟନାରେ ବାଳକ ଗୋବିନ୍ଦଙ୍କୁ ଶ୍ରଦ୍ଧା ଓ ଆଦର କରୁଥିବା ବହୁ ଲୋକଙ୍କ ଭିତରେ ଥିଲେ ମଧ୍ୟ ଦୁଇଜଣ ମୁସଲମାନ ନବାବ । ସେମାନଙ୍କର ନାମ ରହିମ୍ ବକ୍‌ସ ଓ କରିମ୍ ବକ୍‌ସ । ବାଳକ ଗୋବିନ୍ଦ ସ୍ୱାଭାବିକ ଭାବରେ ଯେଉଁ ଐଶ୍ୱରିକତା ବିକାଶିତ କରୁଥିଲେ ସେଥିରେ ଏହି ଦୁଇ ମୁସଲମାନ ନବାବ ମଧ୍ୟ ଏପରି ମୁଗ୍‌ଧ ହୋଇ ପଡ଼ିଥିଲେ ଯେ, ସେମାନେ ତାଙ୍କ ଉଦ୍ଦେଶ୍ୟରେ ଦୁଇଟି ଗୋଟା ଓ କିଛି ଜମି ଦାନ କରି ଦେଇଥିଲେ । ଏହି ସମ୍ପତ୍ତି ଏ ପର୍ଯ୍ୟନ୍ତ ପାଟନାର ଶିଖ୍ ଗୁରୁଦ୍ୱାରର ଅଧୀନରେ ଅଛି ।

ଗୁରୁ ତେଗ୍ ସିଂ ଆସାମରୁ ଫେରି ପାଟନାରେ ଯେଉଁ ଅଳ୍ପ ସମୟ ପାଇଁ ରହିଥିଲେ, ସେତିକିମାତ୍ର ହୋଇଥିଲା ପିତାପୁତ୍ରଙ୍କର ଭେଟ । ବାଳକ ଗୋବିନ୍ଦଙ୍କର ଚିତ୍ତ-ପଟରେ ପିତୃସ୍ମୃତି ଯେ ଅତ୍ୟନ୍ତ ଅସ୍ପଷ୍ଟ ଥିଲା ଏହା ସ୍ୱାଭାବିକ । ତେଣୁ ପାଟନାର ସକଳ ବାଲ୍ୟଲୀଳାର ଆନନ୍ଦ ଭିତରେ ବାଳକ ଗୋବିନ୍ଦ ପିତା ତେଗ୍ ସିଂହଙ୍କୁ ଭେଟିବା ପାଇଁ ସବୁବେଳେ ଉଦ୍‌ଗ୍ରୀବ ରହୁଥିଲେ । ତେଣୁ ଯେତେବେଳେ ପଞ୍ଜାବରୁ ଖବର ଆସିଲା ଯେ ଗୁରୁ-ପରିବାର ପାଟନାରୁ ଫେରିଯିବା ଯାତ୍ରା କରିବେ, ତାହା ଶୁଣି ସମସ୍ତେ ଖୁସିହୋଇ ଉଠିଲେ ଓ ଯାତ୍ରାର ଆୟୋଜନରେ ଲାଗି ପଡ଼ିଲେ ।

———

# ତୃତୀୟ ଅଧ୍ୟାୟ

## ଦିଲ୍ଲୀଠାରେ ଧର୍ମର ବଳି

ପାଟନାରୁ ବିଦାୟ ନେବାର ଅଭିଜ୍ଞତା ଉଭୟ ଆନନ୍ଦ ଓ ଦୁଃଖ ମିଶ୍ରିତ ଥିଲା । ବାଳକ ଗୋବିନ୍ଦଙ୍କର ପ୍ରଥମ ଛଅବର୍ଷ ଏଇଠି କଟି ଯାଇଥିଲା । ତେଣୁ ସ୍ୱାଭାବିକ ଭାବରେ ତାଙ୍କର ଚିତ୍ତ ବହୁ କରୁଣ-କୋମଳ ସ୍ମୃତିରେ ପରିପୂର୍ଣ୍ଣ ଥିଲା । ଯାତ୍ରା ପାଇଁ ସଜ୍ଜିତ ହେଉଥିବା ପାଲିଂକ ଓ ରଥ ସବୁ ଦେଖି ସେ ଉତ୍ସାହିତ ହେବା ସଙ୍ଗେ ସଙ୍ଗେ, ଛାଡ଼ିଯାଉଥିବା ଏତେ-ଦିନର ସାଙ୍ଗମାନଙ୍କ କଥା ଭାବି ସେ ଦୁଃଖିତ ହେଉଥିଲେ । ପାଟନାରୁ ବିଦାୟ ଯାତ୍ରା କଲାବେଳେ, ଗୋବିନ୍ଦଙ୍କ ସାଙ୍ଗମାନେ, ପଣ୍ଡିତ ଶିବଦତ୍ତ, ରାଜା ଫତେଚନ୍ଦ୍ର ଓ ତାଙ୍କ ରାଣୀ ପ୍ରଭୃତି ଭକ୍ତମାନେ ଏବଂ ବହୁ ହିନ୍ଦୁ ଓ ମୁସଲମାନ ବନ୍ଧୁ, ନଗର ଡେଇଁ ବହୁଦୂର ଯାଏ ସେମାନଙ୍କର ଯାନବାହନ ପଛେ ପଛେ ଯାଇଥିଲେ । ଶେଷରେ ସେମାନେ ବାଳକ ଗୋବିନ୍ଦ, ତାଙ୍କ ମାତା ଗୁଜ୍ରୀଦେବୀ ଓ ଗୋସେଇଁମା', ମାତା ନାନକିଙ୍କୁ ଯେତେବେଳେ ଶେଷଥର ପାଇଁ ବିଦାୟ ଦେଇ ବସିଲେ, ସେ ଦୃଶ୍ୟ ଅତ୍ୟନ୍ତ କରୁଣ ହୋଇ ଉଠିଥିଲା । ବନ୍ଧୁ ଭକ୍ତ ଓ ସାଙ୍ଗମାନେ ଯାତ୍ରୀ-ମାନଙ୍କର ନିରାପତ୍ତା କାମନା କରି ପ୍ରାର୍ଥନାମାନ ଗାନ କରି କରି ନଗରକୁ ଫେରିଲେ ।

ପାଟନାକୁ ଯେଉଁମାନେ ଫେରିଲେ ସେମାନଙ୍କର ପରମ ସାନ୍ତ୍ୱନା ଏହି ଥିଲା ଯେ, ବାଳକ ଗୋବିନ୍ଦଙ୍କ ଅବସ୍ଥିତି ଯୋଗୁଁ ସେହି ନଗରରେ ଧର୍ମମେଳା ସୁପ୍ରତିଷ୍ଠିତ ହୋଇଯାଇଥିଲା । ସକାଳେ ଓ ସନ୍ଧ୍ୟାରେ ନିୟମିତ ଭାବରେ ପ୍ରାର୍ଥନା ଓ ଧର୍ମାଲୋଚନା ହେଉଥିଲା ଏବଂ ସେ ସବୁ ସରିଲା ପରେ ମଧ୍ୟ ସମବେତ ଭକ୍ତବୃନ୍ଦ ଯେଝା ଘରକୁ ପଳାଇ ନ ଯାଇ ଗୋବିନ୍ଦଙ୍କ ସାହଚର୍ଯ୍ୟ ରୂପକ ସେମାନଙ୍କର ପରମ ସୌଭାଗ୍ୟ ଏବଂ ବାଳକ ଗୋବିନ୍ଦଙ୍କର ଅସାଧାରଣ ପ୍ରତିଭାସୂଚକ କର୍ମକଳାପ, ଆଦି ଆଲୋଚନା କରି ସୁଖଭୋଗ କରୁଥିଲେ । ଗୋବିନ୍ଦ ଯେଉଁ ଘରେ ଜନ୍ମଗ୍ରହଣ କରିଥିଲେ, ତାହା ଏକ ମନ୍ଦିରରେ ପରିଣତ ହୋଇଗଲା ଏବଂ ଏପର୍ଯ୍ୟନ୍ତ ଶିଖ୍‌ମାନଙ୍କର ପବିତ୍ରତମ ପୀଠମାନଙ୍କ ମଧ୍ୟରୁ ତାହା ଅନ୍ୟତମ ରୂପେ ସମ୍ମାନିତ ଏବଂ ତଖ୍‌ତ ବା

ସିଂହାସନ ନାମରେ ପରିଚିତ ଗୃହଟି ପ୍ରଧାନ ସାଙ୍ଗଠିକ ଧାମ ମଧ୍ୟରୁ ଏକତମ ବୋଲି ଗୃହୀତ । ସେହି ମନ୍ଦିରରେ ଏପର୍ଯ୍ୟନ୍ତ ଏକ ଶିଶୁ-ଶଯ୍ୟା, ହଳେ ଯୋତା ଏବଂ ପିଲାବେଳେ-ଧରି-ଖେଳୁଥିବା ଖଣ୍ଡା ଓ ଧନୁଶର ଆଦି,—ବାଳକ ଗୋବିନ୍ଦଙ୍କର ଏହି ସବୁ ସ୍ମୃତିଜଡ଼ିତ ଦ୍ରବ୍ୟ ସବୁ ସାଇତା ରହିଛି । ପରେ, ଗୁରୁ ହେଲା ପରେ, ଗୁରୁ ଗୋବିନ୍ଦ ସିଂ, ସୁନ୍ଦର ଭାବରେ ଅଳଂକୃତ ଗ୍ରନ୍ଥ ସାହେବର ଏକ କପି ନିଜ ଦସ୍ତଖତ ସହ ଏଠାକୁ ପଠାଇ ଦେଇଥିଲେ । ତାହା ମଧ୍ୟ ଏପର୍ଯ୍ୟନ୍ତ ସେଠାରେ ରଖାଯାଇଛି ।

ଗୁରୁ-ପରିବାର ଯିବାବାଟରେ କେବଳ ବନାରସ, ଅଯୋଧ୍ୟା ଓ ଲକ୍ଷ୍ନୌ ପ୍ରଭୃତି ସ୍ଥାନରେ ଦୀର୍ଘ ସମୟ କଟାଇ, ଏବଂ ଅନ୍ୟସ୍ଥାନମାନଙ୍କରେ ଅଳ୍ପ ଅଳ୍ପ ସମୟ ରହି, ଧୀରେ ଧୀରେ ପଂଜାବ ଆଡ଼କୁ ଗତି କଲେ ପଂଜାବର ଆମ୍ବାଲ ସହର ନିକଟରେ ଲଖ୍‌ନୌରଠାରେ ସେମାନେ ପ୍ରାୟ ଛଅ ମାସ କଟାଇଥିଲେ ଏବଂ ଏହିପରି ସମଗ୍ର ଯାତ୍ରାଟି ସେମାନଙ୍କୁ ପ୍ରାୟ ବର୍ଷେ ଲାଗି ଯାଇଥିଲା । ଗୁରୁ ଗୋବିନ୍ଦ ଆସିବାର ଶୁଣି ଲୋକେ ଦୂରଦୂରାନ୍ତର ସ୍ଥାନରୁ ଦର୍ଶନ ପାଇଁ ଆସୁଥିଲେ ଓ ଦେଖି ଶେଷରେ ପରମ ସନ୍ତୋଷ ହୋଇ ଫେରୁଥିଲେ । ପ୍ରତ୍ୟେକ ରହଣି ସ୍ଥାନରେ ଧର୍ମମେଳା ବସୁଥିଲା ଏବଂ ଭଜନ ସବୁ ଗୀତ ହେଉଥିଲା । ବାଳକ ଗୋବିନ୍ଦଂକୁ ଯିଏ ଦେଖୁଥିଲା ସିଏ ମୁଗ୍ଧ ହେଉଥିଲା ଏବଂ ଅନେକେ, ଉଭୟ ଧର୍ମପ୍ରଚାରକ ଓ ସାମରିକ ବୀର ଭାବରେ ସେ ଯେ ଭବିଷ୍ୟତରେ ଅସାଧାରଣ ଭାବରେ ଯଶସ୍ୱୀ ହେବେ, ଏହି ଭବିଷ୍ୟଦ୍‌ବାଣୀ କରି କରି ଯାଉଥିଲେ । ସବୁ ସ୍ଥାନରେ ସ୍ଥାନୀୟ ଶିଖ୍-ଯାଜକମାନଙ୍କ ଦ୍ୱାରା ପରିଚାଳିତ ହୋଇ ଭକ୍ତମାନେ ବାଳକ ଗୁରୁଂକୁ ଦର୍ଶନ କରୁଥିଲେ ଓ ଶ୍ରଦ୍ଧାର ସହିତ ଆଣିଥିବା ଉପଢ଼ୌକନ ସବୁ ଦେଇ ଯାଉଥିଲେ ।

ଗୁରୁ ତେଗ୍ ସିଂ, ସିୱାଲିକ୍ ପର୍ବତମାଳାର ପାଦଦେଶରେ ଆନନ୍ଦପୁର ନାମକ ନଗର ସ୍ଥାପନ କରି ସେହିଠାରେ ଅବସ୍ଥାନ କରୁଥିଲେ ଏବଂ ନିଜ ପୁତ୍ରର ଆଗମନକୁ ସେହିଠାରେ ହିଁ ଅପେକ୍ଷା କରି ରହିଥିଲେ । ଗୋବିନ୍ଦ ଓ ସହଯାତ୍ରୀମାନେ ଆନନ୍ଦପୁରର ନିକଟବର୍ତ୍ତୀ ହୁଅନ୍ତେ; ସମଗ୍ର ନଗର ସେମାନଙ୍କୁ ପାଛୋଟି ନେବାପାଇଁ ରାସ୍ତାରେ ଅଜାଡ଼ି ହୋଇ ପଡ଼ିଲା । ସମ୍ବର୍ଦ୍ଧନା ଉପଲକ୍ଷରେ ବହୁ ଆନନ୍ଦସୂଚକ ଉତ୍ସବ ଅନୁଷ୍ଠିତ ହେଲା । ଗୁରୁ ତେଗ୍ ସିଂ ବିଧାତାଙ୍କୁ ଧନ୍ୟବାଦ-ସୂଚକ ପ୍ରାର୍ଥନା କଲେ ଏବଂ

ଏକ ସାର୍ବଜନୀନ ଭୋଜର ଆୟୋଜନ କଲେ । ଆନନ୍ଦପୁରରେ ଗୁରୁ ଗୋବିନ୍ଦଙ୍କର ଉପସ୍ଥିତି ପ୍ରଚାରିତ ହୁଅନ୍ତେ, ଦୂର ଓ ନିକଟରୁ ତାଙ୍କୁ ଶ୍ରଦ୍ଧାଞ୍ଜଳି ଦେବା ପାଇଁ ଲୋକ ଧାଡ଼ି ଚାଲିଲେ । ସେମାନେ ବାଳଗୁରୁଙ୍କ ପାଇଁ ଯେଉଁସବୁ ଉପଢ଼ୌକନ ଆଣିଥିଲେ, ତା ଭିତରେ ଥିଲା ଇରାନୀ ଓ ଖୋରାସାନୀ ଅଶ୍ୱ ଏବଂ କାବୁଲ ଓ କାନ୍ଦାହାର—ନିର୍ମିତ ଅସ୍ତ୍ରଶସ୍ତ୍ର । ଜାଣିରଖିବାର କଥା ଏହି ଯେ ବାଳକ ହେଲେହେଁ, ଗୋବିନ୍ଦ ଏହି ଉପଢ଼ୌକନ ଗୁଡ଼ିକୁହିଁ ବେଶୀ ପସନ୍ଦ କରୁଥିଲେ ।

ଆନନ୍ଦପୁରର ଅବସ୍ଥାନ ଥିଲା ଅତି ରମଣୀୟ । ସିଓ୍ୟାଲିକ ପର୍ବତମାଳାର ଏକ ଅନୁଚ୍ଚ ଶୃଙ୍ଗ ଉପରେ ଏହା ଅବସ୍ଥିତ ଥିଲା ଏବଂ ଏହାର ପଶ୍ଚାତ୍‌ଭାଗରେ ପ୍ରାୟ ଦଶମାଇଲ ଦୂରକୁ ଦଣ୍ଡାୟମାନ ଥିଲା ନଇନାଦେବୀର ନଭସ୍ପର୍ଶୀ ଶିଖର । ସେତେବେଳେ ଆନନ୍ଦପୁର ପର୍ବତର ପାଦଦେଶ ପ୍ରକ୍ଷାଳନ କରି ଶତଦ୍ରୁ ବହି ଯାଉଥିଲା । ପାଟନାରେ ଯେଉଁ ଗୋବିନ୍ଦଙ୍କର ଶୈଶବ ଗଙ୍ଗାର ଶାଶ୍ୱତ ମର୍ମର-ଧ୍ୱନି ଶୁଣି ଶୁଣି ଅତିବାହିତ ହୋଇଯାଇଥିଲା, ତାଙ୍କୁ ଶତଦ୍ରୁ ସ୍ରୋତସେବିତ ଆନନ୍ଦପୁର ଭଲ ଲାଗିବା ସ୍ୱାଭାବିକ । ଏହି ବିସ୍ମୟକର-ଭାବରେ ମନୋହର ପରିବେଶ ପ୍ରତି ତାଙ୍କର ବାଳକପ୍ରାଣ ଅନୁକୂଳ ପ୍ରତିକ୍ରିୟାରେ ଆତ୍ମପ୍ରକାଶ କଲା । ସେ ଇଚ୍ଛାମତେ ବନ, ପର୍ବତ ଓ ଉପତ୍ୟକାରେ ବୁଲିବାକୁ ଲାଗିଲେ, ଏବଂ ତାଙ୍କର କ୍ଷିପ୍ର-ବର୍ଦ୍ଧମାନ ଶରୀର ସେହି ସ୍ୱାସ୍ଥ୍ୟପ୍ରଦ ବାୟୁମଣ୍ଡଳରୁ ଶକ୍ତି ସଂଗ୍ରହ କରିବାକୁ ଲାଗିଲା । ଅସ୍ତ୍ରାଭ୍ୟାସ ଓ କୃତ୍ରିମ ଯୁଦ୍ଧ ତାଙ୍କର ରୁଚିଅନୁଯାୟୀ ଥିଲା, ତା ସାଥିକି ବର୍ତ୍ତମାନ ଶିକାର ଅଭ୍ୟାସ ମଧ୍ୟ ସେ ଆରମ୍ଭ କଲେ । ତେଣେ ପିତା ତେଗ୍ ସିଂଙ୍କ ଅଧ୍ୟକ୍ଷତାରେ ବସୁଥିବା ଦୈନିକ ସଭା-ସମିତି, ତାଙ୍କ ପ୍ରତି ଥିଲା ଏକ ନିରବଚ୍ଛିନ୍ନ ଆଧ୍ୟାତ୍ମିକ ଶିକ୍ଷା । ପାଟନାରେ ଗୋବିନ୍ଦ ସିଂ, ମାତାଙ୍କଠାରୁ ଗୁରୁମୁଖୀଲିପି ଶିକ୍ଷା କରି ନେଇଥିଲେ । ପାଟନାରେ ରହିବା ଫଳରେ ଗୋବିନ୍ଦଙ୍କ କଥିତ ଭାଷାରେ ପଞ୍ଜାବୀ ସହିତ ସ୍ଥାନୀୟ ମାଗଧୀ ହିନ୍ଦୀ ବହୁ ପରିମାଣରେ ମିଶି ରହୁଥିବାରୁ ତାଙ୍କର କଥୋପକଥନ ସମସ୍ତଙ୍କୁ କୌତୁକ-ପ୍ରଦ ହେଉଥିଲା । ବର୍ତ୍ତମାନ ତାଙ୍କ ଭାଷା ଜ୍ଞାନକୁ ବିଶୁଦ୍ଧ ରୀତିରେ ଗଢ଼ିବା ପାଇଁ ତାଙ୍କ ପାଇଁ ସଂସ୍କୃତ, ହିନ୍ଦୀ ଓ ପର୍ସିଆନ୍ ଭାଷା ଶିଖିବାର ବ୍ୟବସ୍ଥା କରିଦିଆଗଲା । ସଂସ୍କୃତ ଓ ହିନ୍ଦୀ ପାଇଁ ସୁବିଦ୍ୱାନ ସାହିବ୍‌ଚାନ୍ଦଗ୍ରନ୍ଥୀ ନିଯୁକ୍ତ ହେଲେ ଏବଂ ପର୍ସିୟାନ ପାଇଁ ନିଯୁକ୍ତ ହେଲେ କାଜି ପୀର ମହମ୍ମଦ୍ ।

ତାଙ୍କର ସହାଧ୍ୟାୟୀ ହେଲେ ମନଆ ଯେ ପରେ ପଣ୍ଡିତ ଓ ଶହୀଦ୍ ଭାବରେ ଶିଖ ଇତିହାସରେ ଅମରତ୍ୱ ପାଇଛନ୍ତି, ଭାଇ ମାନ ସିଂ ଭାବରେ ।

ସେତେବେଳର ଆନନ୍ଦପୁରକୁ ଭୂସ୍ୱର୍ଗ କହିଲେ ଚଳେ । ଆନନ୍ଦ-ପୁର—ଜୀବନହିଁ ଥିଲା ଗୁରୁ ଗୋବିନ୍ଦଙ୍କର ସବୁଠାରୁ ସୁଖମୟ କାଳ । ଏହିଠାରେ ମନୁଷ୍ୟ ସାଧାରଣରେ ଯାହା ଗୃହେ ସେ ସମସ୍ତହିଁ ଗୋବିନ୍ଦସିଂଙ୍କର ଆଜ୍ଞାପ୍ରାପ୍ତ ଥିଲା । ପରମତମ ସୁଖ ତାଙ୍କର ପିତା ତେଗବାହାଦୂରଙ୍କର ତାଙ୍କ ପ୍ରତି ସ୍ନେହାଦର । ତାଙ୍କର ସକାଳ ଓ ସନ୍ଧ୍ୟା କଟୁଥିଲା ଧ୍ୟାନ ଓ ଧର୍ମ ଶିକ୍ଷାରେ ଏବଂ ଦିନର ଅବଶିଷ୍ଟ ସମୟ କଟୁଥିଲା ଶିକାର ଓ ଅନ୍ୟାନ୍ୟ ପୁରୁଷୋଚିତ ଅଭ୍ୟାସରେ । ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିବା ଗୃହରେ ସେ ରାତି-ଯାପନ କରୁଥିଲେ ଏବଂ ଶଯ୍ୟା ଗ୍ରହଣ ପୂର୍ବରୁ ବହୁ ସହଚର, ଧର୍ମଗ୍ରନ୍ଥର ଭଜନମାନ ଗାନ କରି ତାଙ୍କୁ ଶୁଣାଉଥିଲେ । କିନ୍ତୁ ଏହି ସୁଖ-ଶାନ୍ତିମୟ କାଳ, ଆନନ୍ଦପୁରକୁ କେନ୍ଦ୍ର କରି ପରେ-ଘଟିବାକୁ-ଥିବା ପ୍ରଳୟଙ୍କାରୀ ଘଟଣା ପ୍ରବାହର ଆଗମନୀ ମାତ୍ର ଥିଲା କହିଲେ ଚଳେ ।

ଏହି ସମସ୍ତ ସୁଖଦ ଘଟଣାମାନଙ୍କର ତଳେ ତଳେ ଆଶଂକାର ଏକ ମେଘ ଆନନ୍ଦପୁରର ବାତାବରଣରେ ଯେ ବରାବର ଭାସି ରହୁଥିବାର ଜଣା ନ ଥିଲା, ଏପରି ନୁହେଁ । ଏହି ଆଶଂକାର କାରଣ ସବୁ କାହାକୁ ଅଛପା ମଧ୍ୟ ନ ଥିଲା । ଗୁରୁ ତେଗବାହାଦୂର ସିଂ ତାଙ୍କର ପ୍ରାର୍ଥନା ସଭାରେ ପ୍ରତ୍ୟହ, ସେତେବେଳେ ସତ୍ୟ ଓ ଧର୍ମ କିପରି ସଙ୍କଟର ସମ୍ମୁଖୀନ ହୋଇ ରହିଥିଲା ଏବଂ ଆତ୍ମସମ୍ମାନ-ପ୍ରତି-ଜାଗ୍ରତ-ଥିବା ଏକ ଜାତିର ସେ ଅବସ୍ଥାରେ କ'ଣ କରିବା ଉଚିତ, ତାରି ଉପରେ ଜୋର ଦେଇହିଁ ବରାବର ଭାଷଣ ଦେଉଥିଲେ । ଯାହା ଫଳରେ ଲୋକଙ୍କ ଭିତରେ ସାହସ ଓ ପ୍ରତିରୋଧର ଭାବ ଉତ୍ତରୋତ୍ତର ବଢ଼ି ଚାଲିଥାଏ । ଗୁରୁ ନାନକଙ୍କ ବାଣୀରେହିଁ ଏହି ଭାବର ବୀଜ ନିହିତ ଥିଲା । ନାନକଜୀ ଦୃଢ଼କଣ୍ଠରେ ପ୍ରଚାର କରିଯାଇ-ଥିଲେ କେବଳ ମନୁଷ୍ୟତ୍ୱର ତାତ୍ପର୍ଯ୍ୟ ଓ ମର୍ଯ୍ୟାଦା ଏବଂ ସେହି ଗୁଣମାନଙ୍କୁ ବିକଶିତ ଅନୁକୂଳତା ଯୋଗାଇବା ପାଇଁ ସେ କରାଇବାରେ ପ୍ରଚେଷ୍ଟା କରି-ଯାଇଥିଲେ ଏକ ନୂତନ ଗୋଷ୍ଠୀ । ଭାରତୀୟ ସମାଜର ପ୍ରକୃତ ଦୋଷ ଦୁର୍ବଳତା କେଉଁଠି, ନାନକଜୀ ତାହା ଅନ୍ତଃଦୃଷ୍ଟି ବଳରେ ଜାଣିପାରିଥିଲେ ଏବଂ ଘଟଣାଚକ୍ରରେ ପଡ଼ି କି ପ୍ରକାର ହୀନତାରୁ ତାର ଅଧଃପତନ ଘଟିଥିଲା । ତାହାପ୍ରତି ମଧ୍ୟ ସେ କରୁଣ ଭାବରେ ସଚେତନ ଥିଲେ । ଯେଉଁ ସବୁ

ସାମାଜିକ ବିଧିବିଧାନ ଭାରତୀୟଙ୍କୁ ଦୁର୍ବଳୀକୃତ କରି ପକାଇ ଥିଲା ଏବଂ ସେ ସବୁରୁ ତାଙ୍କୁ ମୁକ୍ତ କରି, ଅନ୍ୟାୟ ଓ ଅତ୍ୟାଚାରର ସମ୍ମୁଖୀନ ହେବାକୁ ସେ ପୁଣି କିପରି ଶକ୍ତି ଫେରି ପାଇବ,—ନାନକଜୀଙ୍କ ନବଧର୍ମର ଏହାହିଁ ଥିଲା ଲକ୍ଷ୍ୟ । ପଂଚମ ଗୁରୁ ଅର୍ଜୁନଙ୍କ ଶହୀଦତ୍ୱ ଏବଂ ଅତ୍ୟାଚାରର ସମ୍ମୁଖୀନ ହେବା ପାଇଁ ଷଷ୍ଠ ଗୁରୁ ହରଗୋବିନ୍ଦ ଅସ୍ତ୍ର ଧାରଣକୁ ନ୍ୟାଯ୍ୟ ନୀତି ବୋଲି ଘୋଷଣା କରିବାରେ, ଗୁରୁ ନାନକଙ୍କ ବାଣୀର ମହତ୍ତ୍ୱ ସମ୍ଭାବନାସମେ ପୁଷ୍ପଫଳ ଧାରଣ କରିବାକୁ ଆରମ୍ଭ କଲା ।

ଆଉରଙ୍ଗଜେବ ଦିଲ୍ଲୀ ସିଂହାସନ ଆରୋହଣ କରନ୍ତେ, ଅବସ୍ଥା ଅଧିକ ସଙ୍କଟାପନ୍ନ ହୋଇ ଉଠିଲା । ସେ ଥିଲେ ନୈଷ୍ଠିକ ମୁସଲମାନ ଏବଂ ସେହି କାରଣରୁ ତାଙ୍କର ଅଭିଳାଷ ଥିଲା ଯେ, ସେ ଏହି ଭାରତ ଭୂମିକୁ ସମୂଳେ କାଫେର-ମୁକ୍ତ କରି ଏହାକୁ ଇସଲାମର ଦେଶ କରି ନେବେ । ସେ ଯେତେବେଳେ ଗୁଜରାଟର ଶାସକ ଥିଲେ, ସେତେବେଳେ, ବହୁ ହିନ୍ଦୁ ମନ୍ଦିର ଧ୍ୱଂସ କରିବା ସାଥେ ସାଥେ, ଆହମେଦାବାଦର ଚିନ୍ତାମଣି ମନ୍ଦିରରେ ଏକ ଗାଈ ହାଣି ତାକୁ ଅପବିତ୍ର କଲେ କେବଳ ନୁହେଁ, ତାକୁ ଏକ ମସଜିଦ୍‌ରେ ପରିଣତ କଲେ । ସେ ସିଂହାସନକୁ ଆସିଥିଲେ ଉକ୍ତର ନୀତି ଅତିକ୍ରମ କରି ଏବଂ ସେଥିପାଇଁ ନିଜ ଭାଇମାନଙ୍କୁ ହତ୍ୟା କରିଥିଲେ କେବଳ ନୁହେଁ, ନିଜ ବାପକୁ ଅନାହାରରେ ମରାଇଥିଲେ । ଏହି ସିଦ୍ଧିଚେଷ୍ଟା ପାପ ସବୁ ବୋଧହୁଏ ତାଙ୍କର ଅପରାଧବୋଧକୁ ଆହୁରି ଧାରୁଆ କରାଇ ନେଲା ଏବଂ ସେ ହିନ୍ଦୁମାନଙ୍କ ବିରୁଦ୍ଧରେ କଠୋରତର ବ୍ୟବସ୍ଥା ସବୁ ନିସଂକୋଚରେ ପ୍ରବର୍ତ୍ତିତ କରି ଚାଲିଲେ । ଏହି ସବୁ ବ୍ୟବସ୍ଥା ଦ୍ୱାରା ସେ ବୋଧହୁଏ ଧର୍ମାନ୍ଧ ମୁସଲମାନମାନଙ୍କୁ ସନ୍ତୋଷ ଦେବାକୁ ଏବଂ ଯେଉଁ ଅମାନୁଷିକ ଅପରାଧ ସବୁ କରି ସେ ରାଜମୁକୁଟ ପାଇଥିଲେ ସେ ସବୁର ହୁଏତ କିଞ୍ଚିତ୍ ପ୍ରାୟଶ୍ଚିତ୍ତ କରିବାକୁ ଯାଉଥିଲେ । ରାଜତ୍ୱର ପ୍ରଥମ ଦଶ ବର୍ଷ ସେ ହୁଏତ ନିଜକୁ ଯଥେଷ୍ଟ ଶକ୍ତିଶାଳୀ ଅନୁଭବ ନ କରିପାରି ବିଶେଷ ମତାନ୍ଧତା ଦେଖାଇ ନ ଥିଲେ; କିନ୍ତୁ ୧୬୬୯ରେ ସେ ସମସ୍ତ ପ୍ରାଦେଶିକ ଶାସକମାନଙ୍କୁ ଏହିପରି ଫରମାନ ଦେଇଦେଲେ—"ଉତ୍ସାହପୂର୍ଣ୍ଣ ହସ୍ତରେ କାଫେରମାନଙ୍କର ସବୁ ଦେବାଳୟ ଓ ବିଦ୍ୟାଳୟ ଧୂଳିସାତ୍ କରି ସେମାନଙ୍କର ସମସ୍ତ ଧର୍ମୀୟ ଆଚାରଅନୁଷ୍ଠାନ ବନ୍ଦ କର ।" ଏହି ରାଜାଦେଶ ଫଳରେ କାଶୀର ବିଶ୍ୱନାଥ ମନ୍ଦିର; ଗୁଜରାଟର ସୋମନାଥ ମନ୍ଦିର, ଏବଂ ମଥୁରାର

କେଶବରାୟ ମନ୍ଦିର ପ୍ରଭୃତି ହିନ୍ଦୁ ଭାରତର ପବିତ୍ରତମ ଓ ମୁଖ୍ୟ ଅଧିଷ୍ଠାନ ସବୁ ଧ୍ୱଂସପ୍ରାପ୍ତ ହେଲା । ରାଜାଦେଶ ମଧ୍ୟ ହେଲା ଯେ କେବଳ ରାଜପୁତ-ମାନଙ୍କୁ ଛାଡ଼ି ଅନ୍ୟ ସମସ୍ତ ଅ-ମୁସଲମାନ ପ୍ରଜାଂକ ଭିତରୁ କେହି ପାଲଙ୍କି, ହାତୀ ବା ଘୋଡ଼ା ଚଢ଼ି ଯିବାଆସିବା କରି ପାରିବେ ନାହିଁ, କି କୌଣସି ପ୍ରକାର ଅସ୍ତ୍ର ଧାରଣ କରି ପାରିବେ ନାହିଁ । ସବୁଠାରୁ ନିଷ୍ଠୁରତମ ଆଦେଶ ୧୬୭୯ରେ ଘୋଷିତ ହେଲା, ଯାହା ଫଳରେ ଭାରତର ପ୍ରତ୍ୟେକ ଅ-ମୁସଲମାନୀ ପ୍ରଜାଙ୍କୁ, ଏକ ଇସଲାମିକ ରାଜ୍ୟରେ ବାସ କରୁଥିବାର ସୌଭାଗ୍ୟ ଯୋଗୁଁ, ଜିଜିଆ ନାମକ ମୁଣ୍ଡ-କର ଦେବାକୁ ପଡ଼ିଲା । ଏହି ଦାକ୍ଷିଣାତ୍ୟ ଯୁଦ୍ଧରେ ଶୂନ୍ୟ-ପ୍ରାୟ ରାଷ୍ଟ୍ରୀୟ ଭଣ୍ଡାରକୁ ପୂର୍ତ୍ତି କରିବାର ଜିଜିଆ ହେଲା ନୂତନ ଉପାୟ, ଏବଂ ଯେଉଁମାନେ ନ ଦେଇ ପାରି ମୁସଲମାନ ହେବେ ତାହାଦ୍ୱାରା ମୁସଲମାନ ସଂଖ୍ୟା ବଢାଇବାର ମଧ୍ୟ ଏକ ଉପାୟ ।

ଆଉରଙ୍ଗଜେବଙ୍କର ଅଭିଳାଷ ଥିଲା ଯେ ସେ ନିଜ ଧର୍ମ ଛଡ଼ା ଆଉ ସକଳ ଧର୍ମକୁ ଉଚ୍ଛେଦ କରିବେ ଏବଂ ସେହି ଲକ୍ଷ୍ୟରେ ସେ ବଳାତ୍କାର ଧର୍ମ ଗ୍ରହଣ ପାଇଁ ମଧ୍ୟ ପଛାଉ ନ ଥିଲେ । ତାଙ୍କର ଏହି ଅମାନୁଷିକ ପରୀକ୍ଷା ପ୍ରଥମେ ଘଟିଲା କାଶ୍ମୀରରେ । ସମଗ୍ର ଭାରତରେ କାଶ୍ମୀରୀ ପଣ୍ଡିତମାନେ ସବୁଠାରୁ ଅଧିକ ଶିକ୍ଷିତ ସମ୍ପ୍ରଦାୟ ଥିଲେ । ସମ୍ରାଟ ଆଉରଙ୍ଗଜେବ ସ୍ଥିର କଲେ ଯେ ଯଦି କାଶ୍ମୀରର ସେହି ସମଗ୍ର ପଣ୍ଡିତଗୋଷ୍ଠୀକୁ ଇସ୍‌ଲାମର ବ୍ୟୂହ ଭିତରକୁ କୌଣସିମତେ ଅଣାଯାଇପାରେ, ତେବେ ହିନ୍ଦୁ ଜାତିର ଅବଶିଷ୍ଟାଂଶ ଆପେ ଆପେ ମୁସଲମାନ ହୋଇଯିବେ । କାଶ୍ମୀରର ତତ୍କାଳୀନ ମୁସଲମାନ ରାଜ୍ୟପାଳ ଇଫ୍‌ତିକର ଖାଁ ଏ ପ୍ରଚେଷ୍ଟା ଉତ୍ସାହର ସହିତ ଆରମ୍ଭ କରିଦେଲେ ଏବଂ ଖଣ୍ଡା ଦେଖାଇ ପଣ୍ଡିତମାନଙ୍କୁ ମୁସଲମାନ କରି ଚାଲିଲେ । ଧର୍ମ ନାମରେ ଏ କ୍ରୂର ଅମାନୁଷିକ ଏହି ମୁସଲମାନୀ ଅତ୍ୟାଚାରର ସମ୍ମୁଖରେ ଅସହାୟ କାଶ୍ମୀରୀ ଜନତା ପାଇଁ ଆନନ୍ଦପୁର ହୋଇ ଉଠିଲା ଏକମାତ୍ର ଆଶ୍ରୟସ୍ଥଳ । ସେଠାକୁ ସେମାନଙ୍କର ଦଳେ ନେତୃସ୍ଥାନୀୟ ବ୍ୟକ୍ତି ଆସି ଗୁରୁ ତେଗ୍‌ବାହାଦୁରଙ୍କୁ ନିଜର ଦୁର୍ଦ୍ଦଶାର କାହାଣୀ କହିଲେ ଏବଂ ଏ ସମ୍ପର୍କରେ ତାଙ୍କର ବ୍ୟକ୍ତିଗତ ମଧ୍ୟସ୍ଥତା ଭିକ୍ଷା କଲେ । ସେମାନେ କହିଲେ ଯେ ସେ ବର୍ତ୍ତମାନ ଧର୍ମର ଏକମାତ୍ର ରକ୍ଷକ ଏବଂ ସେହି ମହତ୍ କର୍ମପାଇଁ କେବଳ ସେହିଁ ଶକ୍ତିଶାଳୀ । କୌଣସି ସୁଚିନ୍ତିତ ଉପାୟରେ ସେ ସେମାନଙ୍କର ଓ ଧର୍ମର ସମ୍ମାନ ରକ୍ଷା କରନ୍ତୁ ବୋଲି, ସେମାନେ ଅଡ଼ି ବସିଲେ ।

ଗୁରୁ ତେଗ୍-ସିଂ ଏହି ନିବେଦନର କଥା ଚିନ୍ତା କରୁଥିଲାବେଳେ, ବାଳକ ଗୋବିନ୍ଦ ସିଂ ଖେଳ-ସାଥୀମାନଙ୍କୁ ଘେନି ସେହିଆଡ଼େ ଆସିବାର ଦେଖାଗଲା । ପିତାଜୀଙ୍କୁ ଗମ୍ଭୀର ଚିନ୍ତାମଗ୍ନ ଦେଖି ଗୋବିନ୍ଦ ହଠାତ୍ ବନ୍ଦ ହୋଇଯାଇ, ତାର କାରଣ ପଚାରିଲେ ।

ଗୁରୁ ଉତ୍ତରଦେଲେ—"ଧର୍ମର ଗ୍ଲାନି ଉପସ୍ଥିତ । ବିଦେଶୀ ଶାସକର ଅତ୍ୟାଚାର ସୀମାନ୍ତରକ୍ତ ହୋଇ ଉଠିଲାଣି । ପୃଥିବୀକୁ ଅତ୍ୟାଚାର-ମୁକ୍ତ କରିବା ପାଇଁ ଆଜି ଆବଶ୍ୟକ କେତେକ ଉପଯୁକ୍ତ ବ୍ୟକ୍ତି ଯେଉଁମାନେ ଏଥିପାଇଁ ହସି ହସି ଜୀବନ ଦାନ କରିପାରିବେ ।

ନିର୍ଭୀକ ଗୋବିନ୍ଦ ସିଂ ଉତ୍ତର ଦେଲେ—"ଏ କର୍ମ ପାଇଁ ତୁମ ଅପେକ୍ଷା ଯୋଗ୍ୟତର ବ୍ୟକ୍ତି କିଏ ଅଛି ପିତାଜୀ ?"

ଗୁରୁ ତେଗ୍ ସିଂ, ମାତ୍ର-ସପ୍ତବର୍ଷ-ବୟସ୍କ କିଶୋର ପୁତ୍ରର ଏହି ସାହସିକ ଉତ୍ତର ଓ ସମର୍ଥନରେ ଏବଂ ଏହି ବୟସରେ ମଧ୍ୟ ସତ୍ୟ ଓ ନ୍ୟାୟ ପାଇଁ ଜୀବନ ଦେବାର ଉତ୍ସାହରେ, ଅତ୍ୟନ୍ତ ପ୍ରୀତ ହେଲେ । ସେ ବର୍ତ୍ତମାନ କାଶ୍ମୀରୀ ନିବେଦକମାନଙ୍କୁ କହିଲେ ଯେ ସେମାନେ ଦିଲ୍ଲୀଯାଇ କର୍ତ୍ତୃପକ୍ଷଙ୍କୁ କହନ୍ତୁ ଯେ, ଯଦି ସେ (ତେଗ୍‌ବାହାଦୁର) ଇସଲାମ ଗ୍ରହଣ କରିବେ, ତେବେ ସେମାନେ ସମସ୍ତେ ସ୍ୱେଚ୍ଛାରେ ମୁସଲମାନ ହୋଇଯିବେ ।

ଅଉରଙ୍ଗଜେବଙ୍କର ସମଗ୍ର ଦେଶକୁ ମୁସଲମାନ କରିବାର ଚକ୍ରାନ୍ତକୁ ପଣ୍ଡ କରିବା ଏବଂ ସେହି ଲକ୍ଷ୍ୟରେ ପ୍ରାଣ ମଧ୍ୟ ଦେବା ପାଇଁ ଦୃଢ଼ପ୍ରତିଜ୍ଞ ହୋଇ ତେଗ୍‌ବାହାଦୁର ୧୬୭୩ ଖ୍ରୀଷ୍ଟାବ୍ଦରେ ଆନନ୍ଦପୁର ପରିତ୍ୟାଗ କଲେ । ବାହାରିବା ପୂର୍ବରୁ ସେ ପରମ ପିତାଙ୍କୁ ପ୍ରାର୍ଥନା କଲେ ଯେ ସେ ତାଙ୍କୁ ଧର୍ମପାଇଁ ପ୍ରାଣ ଦେବାର ଶକ୍ତି ଓ ସାହସ ଦେଉନ୍ତୁ । ଏହି ପ୍ରାର୍ଥନା ପରେ ସେ ନିଜର ପରିବାର ଓ ଭକ୍ତମାନଙ୍କଠାରୁ ବିଦାୟ ନେଇଗଲେ । ଆଗ୍ରାରେ ପହଞ୍ଚିବା ପୂର୍ବରୁ ସେ ଦକ୍ଷିଣ-ପୂର୍ବ ପଞ୍ଜାବ ଓ ମାଲଓାର ବହୁ ଅଞ୍ଚଳ ବୁଲି ଲୋକମାନଙ୍କ ଭିତରେ ବ୍ୟକ୍ତିଗତ ଓ ବିଶ୍ୱାସର ସ୍ୱାଧୀନତା ଉପରକୁ ଆସୁଥିବା ପ୍ରତ୍ୟେକଟି ଆଞ୍ଚକୁ ସାହସର ସହିତ ସମ୍ମୁଖୀନ ହେବା ପାଇଁ ପ୍ରଚାର କରି ଚାଲିଲେ । ତାଙ୍କ ବକ୍ତବ୍ୟର ତାତ୍ପର୍ଯ୍ୟ ଥିଲା—"କାହାକୁ ଭୟଭୀତ କରାଅ ନାହିଁ, କି କାହାକୁ ଭୟ କର ନାହିଁ ।" ପ୍ରାୟ ଦୁଇବର୍ଷ କାଳ ସେ ଏହିପରି ସ୍ଥାନରୁ ସ୍ଥାନାନ୍ତର ଯାଇ ପ୍ରଚାର କରି ଚାଲିଲେ ଜନତାର ଶ୍ରଦ୍ଧା ଓ ସମର୍ଥନ ଗ୍ରହଣ କରି । ସାମରିକ ଉଦ୍‌ବୋଧନ ସତ୍ତ୍ୱେ, ଗୁରୁଜୀଙ୍କର

ଆଧ୍ୟାତ୍ମିକ ଅନୁଷ୍ଠାନାଦି ଏହି ଭ୍ରାମ୍ୟମାଣ କାଳରେ ମଧ୍ୟ ଅବ୍ୟାହତ ରହିଥିଲା । ଏହି ସମୟରେହିଁ ପାତିଆଲା ନିକଟସ୍ଥ ସଇଫାବାଦର ସଇଫାଦ୍ଦିନ ଓ ଗଡ଼ିହର ଏକ ପଠାଣ, ଶିଖଧର୍ମ ଗ୍ରହଣ କରିଥିଲେ ।

ତେଗ୍‌ବାହାଦୁର ଆଗ୍ରା ପିହଞ୍ଚିବା ମାତ୍ରେ ସମ୍ରାଟଙ୍କ ଆଦେଶରେ ତାଙ୍କୁ ଗିରଫ କରାଯାଇ ଦିଲ୍ଲୀକୁ ନିଆଗଲା ଏବଂ ଯେପର୍ଯ୍ୟନ୍ତ ସେ ଇସ୍‌ଲାମ ଗ୍ରହଣ ନ କରିଛନ୍ତି, ସେପର୍ଯ୍ୟନ୍ତ ତାଙ୍କୁ ଶୃଙ୍ଖଳାବଦ୍ଧ ରଖି, ତାଙ୍କ ଉପରେ ପାଶବିକ ଅତ୍ୟାଚାର ପାଇଁ ମଧ୍ୟ ଆଦେଶ ଦିଆଗଲା । କିନ୍ତୁ ଦେଖାଗଲା ଯେ ଶାରୀରିକ ନିଷ୍ପେଷଣ ବା ସାଂସାରିକ ପ୍ରଲୋଭନ, ଏସବୁର ଉପରକୁ ଉଠି ଗୁରୁ ତେଗ୍ ସିଂ, ପରମପିତାଙ୍କ ସହିତ ଏକୀଭୂତ ହୋଇ ସମ୍ପୂର୍ଣ୍ଣ ଧ୍ୟାନମଗ୍ନ ରହିଲେ । ଅତ୍ୟାଚାରରୁ ନିଜକୁ ରକ୍ଷା କରିବା ପାଇଁ ତାଙ୍କଠାରୁ ଧର୍ମତ୍ୟାଗର କୌଣସି ଆଶା ଦେଖା ନ ଦେବାରୁ, ତାଙ୍କୁ କୁହାଗଲା ଯେ, ସେ କୌଣସି ବିସ୍ମୟକର କ୍ରିୟା କରି ନିଜ ଧର୍ମର ବୈଶିଷ୍ଟ୍ୟ ପ୍ରତିପାଦନ କରନ୍ତୁ । ଈଶ୍ୱରଙ୍କ ସ୍ୱକୀୟ ନିୟମାବଳୀର ବିରୋଧରେ ଯାଇ କୌଣସି ଅପ୍ରାକୃତିକ ଘଟଣା ସୃଷ୍ଟି କରିବା ଉଚିତ ନୁହେଁ ବୋଲି କହି ସେ ଏଥିରୁ ମଧ୍ୟ ନିବୃତ୍ତ ହେଲେ । ସେ କହିଲେ—"ପ୍ରକୃତ ଧାର୍ମିକ ଲୋକେ ଅଦ୍ଭୁତ ଓ ପ୍ରତାରକମାନଙ୍କୁ ଲଜ୍ଜାର କାରଣ ମନେ କରନ୍ତି ।"

ଫଳରେ, ୧୬୭୫ ନଭେମ୍ବର ପ୍ରଥମ ସପ୍ତାହରେ ତେଗ୍‌ବାହାଦୁରଙ୍କର ମୃତ୍ୟୁଦଣ୍ଡାଦେଶ ଆସିଗଲା । ଏହା ପୂର୍ବରୁ ସେ ଜଣେକ ଶିଖ ହାତରେ ଗୋଟିଏ ନାରିକେଳ ଓ ପାଞ୍ଚଟି ପଇସା ଆନନ୍ଦପୁରକୁ ପଠାଇ ଦେଇଥିଲେ, ଏହା କହି ଯେ, ଗୋବିନ୍ଦ, ଗୁରୁଗାଦି ଆରୋହଣ କଲାବେଳେ ତାଙ୍କ ଆଗରେ ସେ ସବୁ ସ୍ଥାପିତ ରଖାଯିବ ।

ତେଗ୍‌ବାହାଦୁରଙ୍କ ନିଷ୍ଠାପର ଅନୁଚର, ଭାଇ ମତିଦାସଙ୍କୁ ଦୁଇଟା ଖମ୍ବ ଭିତରେ ବାନ୍ଧିରଖି, ତାଙ୍କୁ କରତରେ ମୁଣ୍ଡରୁ ତଳ ଆଡ଼କୁ ଚିରାଯାଇ ଦୁଫାଳ କରି ଦେବାପରେ ସେହି ବର୍ବର ମୁସଲମାନମାନଙ୍କର ସ୍ୱୟଂ ତେଗ୍‌ବାହାଦୁରଙ୍କ ପ୍ରତି କରୁଣାର ଅବକାଶ ଯେ ନ ଥିଲା, ଏହା ସ୍ପଷ୍ଟ ହୋଇ ସାରିଥିଲା । ଆଉ ଜଣେ ଶିଖ, ଭାଇ ଦୟାଲ୍‌କୁ ଫୁଟନ୍ତା ପାଣିରେ ପକାଇଦେଇ ତା ଚମଡ଼ାକୁ ଚିରାଯାଇ ଗୁଳି ମାରି ଦିଆଗଲା । ୧୬୭୫ ଖ୍ରୀଷ୍ଟାବ୍ଦ

ନଭେମ୍ବର ୧୧ ତାରିଖରେ ଦିଲ୍ଲୀର ଚାନ୍ଦନୀଚୌକରେ ସର୍ବସମକ୍ଷରେ ତେଗ୍‌ବାହାଦୂରଙ୍କର ମସ୍ତକ ଛେଦିତ ହେଲା । ଗୁରୁଜୀଙ୍କର ମୃତ୍ୟୁକାଳୀନ ଶାନ୍ତ ସମାହିତ ଅବସ୍ଥା ଦେଖି ସ୍ୱୟଂ ଘାତକ ବିସ୍ମିତ ହୋଇ ଯାଇଥିଲା । ଭାରତର ଇତିହାସରେ ଏହି ଘଟଣା କିନ୍ତୁ ଭୂମିକମ୍ପ ସୃଷ୍ଟି କରିଥିଲା । ଗୁରୁ ଗୋବିନ୍ଦ ସିଂ 'ବିଚିତ୍ର ନାଟକ'ରେ ଏହି ଘଟଣାକୁ ଏହି ପରି ଭାବରେ ବର୍ଣ୍ଣନା କରିଛନ୍ତି :—

ଗୁରୁ ତେଗ୍ ବାହାଦୂର ଥିଲେ ହିନ୍ଦୁଜାତିର
ତିଳକ ସ୍ୱରୂପ,
ଏହି କଳିଯୁଗରେ ସେ କରିଗଲେ ସର୍ବୋତ୍ତମ କର୍ମ,
ନିଜର ଧର୍ମ ବିଶ୍ୱାସ ପାଇଁ ନିଜର ଜୀବନକୁ
ଅକୁଣ୍ଠିତ ଭାବରେ ଢାଳି ଦେଇ ।
ମସ୍ତକ ଦେଇ ଦେଲେ, ସାମାନ୍ୟତମ ଚିତ୍କାର ବିନା,
କେବଳ ନିଜ ଧର୍ମର ମାନ ରକ୍ଷା ପାଇଁ ।
ସେ ଦେଇ ଦେଲେ ତାଙ୍କର ମୁଣ୍ଡ,
କିନ୍ତୁ ଟଳି ନ ଥିଲେ ତାଙ୍କର ପ୍ରତିଜ୍ଞାରୁ ।
ମାଟିର ଶରୀରଟା ବାସି ଲୁଗା ପରି ଫିଙ୍ଗି ଦେଇ ଚଲେ ସେ
ଦିଲ୍ଲୀର ସମ୍ରାଟ ପାଇଁ,
ଆତ୍ମା ତାଙ୍କର ଚାଲିଗଲା ଉର୍ଦ୍ଧ୍ୱକୁ ସ୍ୱର୍ଗଦ୍ୱାର ଦେଇ ।
ଧରାଗତ କେଉଁ ମନୁଷ୍ୟ ଏପରି କର୍ମ କରିଛି ?
ତେଗ୍ ବାହାଦୂର ଧରାରୁ ବିଦାୟ ନିଅନ୍ତେ,
ପୃଥିବୀରେ ବିଳାପର ଧ୍ୱନି ଉଠିଲା;
ସଂସାରପାକ ବିକଳ କ୍ରନ୍ଦନରେ ଭରି ଉଠିଲା,
କିନ୍ତୁ ଦେବରାଜ୍ୟରେ ଶୁଭିଲା ଆନନ୍ଦର ଧ୍ୱନି ।

ଗୁରୁ ତେଗ୍ ବାହାଦୂରଙ୍କର ଛିନ୍ନଭିନ୍ନ ମୃତ ଦେହ ଚାନ୍ଦନୀଚୌକରେ ଅରକ୍ଷିତ ହୋଇ ପଡ଼ି ରହିଲା । ମୋଗଲ-କ୍ରୋଧର ସମ୍ମୁଖୀନ ହୋଇ ଛିନ୍ନ ଶବ ପାଖକୁ ଯିବାକୁ ମଧ୍ୟ କେହି ସାହସ କଲେ ନାହିଁ । କିନ୍ତୁ ସେଦିନ ସନ୍ଧ୍ୟାବେଳେ ଗୋଟିଏ ଭୀଷଣ ଝଡ଼ ଦେଖା ଦେଇଥିଲା । ସେହି ଅବସରରେ ଜଇଟା ନାମକ ଏକ ନିମ୍ନତମ ଶ୍ରେଣୀ (ରାଂଘ୍ରେଟା)ର ଶିଖ୍, ଅଲକ୍ଷିତ ଭାବରେ

ଗୁରୁଙ୍କର ଛିନ୍ନ ମସ୍ତକଟି ଯେନ ପଳାଇବାକୁ ସମର୍ଥ ହୋଇଥିଲା । ଏହି ଧୂଳିମଳିନ ଅଥଚ ମହାର୍ଘ ବସ୍ତୁଟିକୁ ଧରି ସେ ଯଥାଶୀଘ୍ର ଆନନ୍ଦପୁର ପହଞ୍ଚିବାକୁ ଚେଷ୍ଟାକଲା । ଲୁବାନାର ଏକ ବଣିକ ମଧ୍ୟ ତାର ତୁଳା-ନେଇ ଯାଉଥିବା ଗାଡ଼ିରେ ତେଗ୍‌ବାହାଦୂରଙ୍କ କବନ୍ଧଟାକୁ ଲୁଚାଇ ନିଜ ଘରକୁ ନେଇଗଲା । ପ୍ରକାଶ୍ୟ ଅନ୍ତ୍ୟେଷ୍ଟି କ୍ରିୟା, ରାଜ୍ୟର କାନୁନ୍ ବିରୋଧୀ କାମ ହେବ ଭାବି, ସେହି ଲୁବାନାର ଶିଖ୍, ଧର୍ମପାଇଁ ପ୍ରାଣ ଦେଇଥିବା ଗୁରୁଙ୍କର ଦେହ ସହିତ ନିଜର ଘରଟିକୁ ଅଗ୍ନିଦଗ୍ଧ କରିଦେଲା । ସେହି ଭସ୍ମୀଭୂତ ଗୃହ ଉପରେ ଏବେ ରିକାବ୍‌ଗଞ୍ଜର ଗୁରୁଦ୍ୱାର ଦଣ୍ଡାୟମାନ । ଗୁରୁ ତେଗ୍‌ବାହାଦୁର ଦିଲ୍ଲୀରେ ଯେଉଁ ସ୍ଥାନରେ ଧର୍ମପାଇଁ ସ୍ୱ-ମସ୍ତକ ଦାନ କରିଥିଲେ, ସେହିଠାରେହିଁ ଆଜ ଭାରତ ରାଜଧାନୀରେ ସିଶ୍-ଗଞ୍ଜ ଗୁରୁଦ୍ୱାର ସଗର୍ବରେ ଦଣ୍ଡାୟମାନ ।



# ଚତୁର୍ଥ ଅଧ୍ୟାୟ

## ଆନନ୍ଦପୁରର ଆତ୍ମାର ପୂନର୍ଗଠନ ।

ତେଗ୍‌ବାହାଦୁରଙ୍କର ଧୂଳିଲିପ୍ତ ଛିନ୍ନମସ୍ତକ ଯେତେବେଳେ ଆନନ୍ଦପୁରରେ ପହଞ୍ଚିଥିବ ସେହି ଦୁଃଖ-ଦାୟକ ଦୃଶ୍ୟରେ ହୁଏତ ଚତୁର୍ଦ୍ଦିଗର ପର୍ବତମାଳାର କଠିନ ଶିଳାରାଶି ମଧ୍ୟ ଦ୍ରବୀଭୂତ ହୋଇ ଯାଇଥିବ । ତେଗ୍ ବାହାଦୂରଙ୍କ ପତ୍ନୀ ଓ ଜନନୀ ଏବଂ ଶିଖମାନେ ଶୋକାଭିଭୂତ ହେବା ସ୍ୱାଭାବିକ । ସେତେବେଳକୁ ଗୋବିନ୍ଦଙ୍କ ବୟସ ମୋଟେ ଦଶବର୍ଷ । ବାଳକ ଗୋବିନ୍ଦଙ୍କ ପକ୍ଷରେ ଏହି ପିତୃନାଶର ଗଭୀର ଦୁଃଖ ପାଇଁ ଅଶ୍ରୁ ଓ ଭାଷା ନଥିଲେ ମଧ୍ୟ, ସେ ଅସାଧାରଣ ଧୀରତାର ସହିତ ଅବସ୍ଥାର ସମ୍ମୁଖୀନ ହେବାର ଦେଖାଗଲା । ସେ ପ୍ରଥମେ ପିତୃମସ୍ତକବାହୀ ମାଟଜାତୀୟ ଶିଖ୍, ଜଇଟାକୁ ଆଲିଙ୍ଗନ କଲେ ଏବଂ ତାର ସାହସ ଓ ଶ୍ରଦ୍ଧା ପାଇଁ ତାକୁ ସମ୍ବର୍ଦ୍ଧନା ଜଣାଇଲେ । କେବଳ ସେତିକି ନୁହେଁ, ଉଦାରହୃଦୟ ବାଳକ ଗୋବିନ୍ଦ ସେହି ମୁହୂର୍ତ୍ତରେ ଜଇଟାର ସମଗ୍ର ଗୋଷ୍ଠୀକୁ ଉନ୍ନୟନର ପୁରସ୍କାରରେ ଭୂଷିତ କଲେ, ଏଇଆ ଘୋଷଣା କରି ଯେ, ଆଜଠୁ— "ରଙ୍ଗ୍‌ରେଟେ ଗୁରୁ କେ ବେଟେ"—ରଙ୍ଗରେଟାମାନେ ଗୁରୁଙ୍କ ପୁଅ । ଦୂରଦ୍ରଷ୍ଟା ବାଳକ ଗୋବିନ୍ଦ ସେତେବେଳେ ମଧ୍ୟ ଭାବି ବସିଥିଲେ ଯେ, ଦିଲ୍ଲୀ ଗୁରୁଦ୍ୱାରାଚୌକିଠାରେ ଏତେ ଶିଖ୍ ଥାଉଁ ଥାଉଁ ଜଣେ ହେଲେ କିପରି, ଗୁରୁଙ୍କ ମୃତ ଦେହର ହେଫାଜତ କରିବାକୁ ଉପରେ ଆଗଭର ହେଲେ ନାହିଁ । ଏହା ତାଙ୍କ ଆତ୍ମାକୁ ଗଭୀର ବେଦନା ଦେଲା ଏବଂ ସେ ସେତିକିବେଳେ ହୁଏତ ସ୍ଥିର କଲେ ଯେ, ସେ ଶିଖ୍ ସମ୍ପ୍ରଦାୟକୁ ଏପରି ଭାବରେ ଗଢ଼ି ତୋଳିବେ, ଯେପରିକି ଆକୃତି ଓ ପ୍ରକୃତି, ଉଭୟରେ ସେମାନେ ଅନ୍ୟ ସକଳ ମନୁଷ୍ୟ-ଗୋଷ୍ଠୀଠାରୁ ଭିନ୍ନ ଜଣାଯିବେ ।

ସେ ତାଙ୍କ ମା ଓ ଗୋସେଇଁମାଙ୍କୁ ଏବଂ ଶିଖ୍ ଭକ୍ତମାନଙ୍କୁ ସାନ୍ତ୍ୱନା ଦେଇ ବୁଝାଇଲେ ଯେ, ସେମାନେ ମୃତ ତେଗ୍‌ବାହାଦୁରଙ୍କ ପାଇଁ ଶୋକ ପ୍ରକାଶ ନ କରି ପ୍ରାର୍ଥନା କରନ୍ତୁ, ଯେହେତୁ ସେ ଈଶ୍ୱରଙ୍କ ଇଚ୍ଛା ପୂରଣ

କଟେହିଁ ପ୍ରାଣ ଦେଇ ଯାଇଛନ୍ତି ଏବଂ ସେହି ଭାବରେ ରଖି ଯାଇଛନ୍ତି ସମଗ୍ର ଜଗତ ଆଗରେ ଏକ ମହାନ୍ ଆଦର୍ଶ । ଏ ପ୍ରକାର ପୂର୍ଣ୍ଣ ପୁରୁଷ-ମାନଙ୍କ ପାଇଁ ଶୋକ ଅପୌକ୍ତିକ । ଗୋବିନ୍ଦ କହିଲେ ଯେ, ତାଙ୍କ ପିତା ବର୍ତ୍ତମାନ ଅମର ଲୋକରେ ଏବଂ ସେହି ଲୋକ, ତାଙ୍କ ଆଗମନ-ଜନିତ ଆନନ୍ଦଧ୍ୱନିରେ ମୁଖରିତ ।

ଗୋବିନ୍ଦ ପିତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସମ୍ପାଦନ କଲେ । "ଚନ୍ଦନ କାଷ୍ଠର ଚିତା ତିଆରି ହେଲା । ତେଗ୍‌ବାହାଦୂରଙ୍କ ଛିନ୍ନ ମସ୍ତକ ଗୋଲାପ ଅତରରେ ଅଭିଷେଚିତ ହେଲା । ଗୋବିନ୍ଦ, ତାହା ନେଇ ଚିତା ଉପରେ ସ୍ଥାପନ କଲେ ଏବଂ 'ଜପଜି' ଆବୃତ୍ତି କରି ଚିତାରେ ଅଗ୍ନି ସଂଯୋଜନ କଲେ । ସମବେତ ଶିଖ୍ ଭକ୍ତମଣ୍ଡଳି ସ୍ୱର୍ଗତ ଗୁରୁଙ୍କ ଆତ୍ମା ଉଦ୍ଦେଶ୍ୟରେ ଭଜନ ଗାନ କରିବାକୁ ଲାଗିଲେ, ଏବଂ ତେଗ୍ ବାହାଦୂରଙ୍କ ବୀରତ୍ୱ ଓ ତ୍ୟାଗ ନିଜ ନିଜ ଭିତରେ ଆଲୋଚନା କଲେ । ଶେଷରେ 'ସୋହିଲା' ପାଠ ପରେ ଶେଷ ଆଶୀର୍ବାଦ ଦିଆଗଲା ଏବଂ ମହାପ୍ରସାଦ ବଣ୍ଟନ କରାଗଲା । ଗୋବିନ୍ଦ ଶ୍ମଶାନରୁ ଘରକୁ ଫେରି, ପୂର୍ବ ଗୁରୁମାନଙ୍କ ରଚିତ ଭଜନ ସବୁ ଗୀତ ହେବାର ବ୍ୟବସ୍ଥା ଆରମ୍ଭ କରି-ଦେଲେ ଏବଂ ତାହା ଦଶ ଦିନ ଚାଲିବା ପରେ, ଭିକ୍ଷା ବିତରିତ ହୋଇ ଏହି ଅନ୍ତ୍ୟେଷ୍ଟି କ୍ରିୟା ସମାପ୍ତ ହେଲା ।"

କ୍ରମେ ଆନନ୍ଦପୁରକୁ ତେଗ୍ ବାହାଦୂରଙ୍କ ମୃତ୍ୟୁଜନିତ ଯେଉଁ ଶୋକର ମୌନତା ଘେରି ରହିଥିଲା, ଗୋବିନ୍ଦସିଂ ତାହା ଉଡ଼ାଇ ନେଲେ । ଚତୁର୍ଦ୍ଦିଗର ପର୍ବତରାଜି ଭଜନ, ବୀରଗାଥା ଓ ଗୁରୁ ଗୋବିନ୍ଦଙ୍କ ବିଶାଳ ଅଶ୍ୱର କ୍ଷିପ୍ର କ୍ଷୁରାଘାତରେ ଧ୍ୱନିତ ହେବାକୁ ଲାଗିଲା । ଦ୍ୱିଗୁଣିତ ହୋଇ ସାମରିକ ଅଭ୍ୟାସ, ପୌରୁଷମୟ କ୍ରୀଡ଼ା, ଘୋଡ଼ା-ଦୌଡ଼ର ପ୍ରତିଯୋଗିତା, ଏବଂ ଧନୁ ଓ ନାଳିକାଶସ୍ତ୍ର ମାନଙ୍କର ପରୀକ୍ଷା ଇତ୍ୟାଦି, ଆନନ୍ଦପୁରର ଦୈନନ୍ଦିନ ଜୀବନର ସ୍ୱାଭାବିକ କର୍ମସୂଚୀ ରୂପେ ଦେଖା ଦେଲା । ଶିଖ୍‌ମାନଙ୍କୁ କୁହାଗଲା ଯେ ସେମାନେ ଏଣିକି ଗୁରୁଙ୍କ ପାଇଁ ଅଶ୍ୱ, ଓ ଅସ୍ତ୍ରଶସ୍ତ୍ରହିଁ ଉପହାର ରୂପେ ଆଣିବେ ଏବଂ ନିଷ୍ଠାପର ଭକ୍ତମାନେ ଗୁରୁଙ୍କ ପ୍ରୟୋଜନାନୁଯାୟୀ ଆନନ୍ଦପୁରକୁ ଏହି ସାମରିକ ଉପହାରରାଜିର ଏକ ନିରବଚ୍ଛିନ୍ନ ଧାରା ବୁହାଇ ଚାଲିଲେ । ସାମରିକ ଶିକ୍ଷା ପାଇଁ ଶିଖ

ମାନଙ୍କ ଭିତରେ ବର୍ତ୍ତମାନ ଏପରି ବ୍ୟାପକ ଉତ୍ସାହ ଦେଖା ଦେଇଥିଲା ଯେ, ଗୋବିନ୍ଦଙ୍କ ସମସାମୟିକ କବି ଘ୍ୱାର୍ ତାଙ୍କର ଏକ କବିତାରେ ଲେଖିଛନ୍ତି—"ଶିଖ ବାଳକ ପଗଡ଼ି ବାନ୍ଧିବାକୁ ଜାଣିବା ଆଗରୁ ଅସ୍ତ୍ରଚାଳନା ଜାଣି ସାରିଥାଏ !" ତେଗ୍‌ବାହାଦୂରଙ୍କ ମୃତ୍ୟୁଜନିତ ଆଦ୍ୟ କ୍ରୋଧ; ଶିଖ୍‌-ମାନଙ୍କ ଅନ୍ତରରେ ଏକ ନିଶ୍ଚିତ ଲକ୍ଷ୍ୟ ଓ ତାହା ହାସଲ କରିବା ପାଇଁ ଏକ ପ୍ରତିଜ୍ଞାବଦ୍ଧତାରେହିଁ ପରିଣତ ହୋଇଥିଲା । ଅନ୍ୟ କଥାରେ, ଏକ ନୂତନ ଜାତି ତିଆରି ହୋଇ ଆସୁଥିଲା ।

୧୬୭୬ ଖ୍ରୀଷ୍ଟାବ୍ଦର ବୈଶାଖୀ ପୂର୍ଣ୍ଣିମା ଦିନ ଗୋବିନ୍ଦ ଆନୁଷ୍ଠାନିକ ଭାବରେ ଗୁରୁ ପଦରେ ଅଭିଷିକ୍ତ ହେବାର ବ୍ୟବସ୍ଥା ହେଲା । ଏହି ଉତ୍ସବ, ଉତ୍ସାହ ଓ ଆଡ଼ମ୍ବର ସହିତ ସମ୍ପନ୍ନ ହୋଇଥିଲା । ଦେଶର ସବୁ ପ୍ରାନ୍ତରୁ ଶିଖ୍‌ମାନେ 'ଦିୱାନ' (ଧର୍ମ-ସମ୍ମିଳନୀ)ରେ ଯୋଗ ଦେବା ପାଇଁ ଆସିଲେ । ଗୋବିନ୍ଦ ରଣସଜ୍ଜାରେ ସଜ୍ଜିତ ହୋଇ ଏବଂ ଉଷ୍ଣୀଷରେ କାଲ୍‌ଘି ବା ପକ୍ଷୀ-ପୁଚ୍ଛ ଧାରଣ କରି ଉପସ୍ଥିତ ହେଲେ । ସେହି ଶାନ୍ତ ସୁନ୍ଦର ଓ ରଣସଜ୍ଜାରେ ସୁସଜ୍ଜିତ ବାଳକ-ଗୁରୁଙ୍କୁ ଦେଖି ସମବେତ ଶିଖମାନଙ୍କର ଆନନ୍ଦ ଉଦ୍‌ବେଳିତ ହେବାକୁ ଲାଗିଲା । ସେମାନେ ଶ୍ରଦ୍ଧା ଓ ଭକ୍ତିର ସହିତ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । ଗ୍ରନ୍ଥସାହେବରୁ ନିର୍ଦ୍ଦିଷ୍ଟ ଭଜନ ସବୁ ଗୀତ ହେଲା ଏବଂ ଶେଷ ସ୍ୱସ୍ତ୍ୟୟନ ପରେ ଗୁରୁଙ୍କ ଭାଲପଠରେ ଜୟଫ୍ରାନର ତିଳକ ଦିଆ ଗଲା । ଆଗାମୀ ଗୁରୁଙ୍କ ପ୍ରତି ଶ୍ରଦ୍ଧାନିଦର୍ଶନ ରୂପେ, ଗୁରୁ ତେଗ୍‌ବାହାଦୁର ସିଂ ତାଙ୍କ ମୃତ୍ୟୁ ପୂର୍ବରୁ ଯେଉଁ ପାଞ୍ଚଟି ପଇସା ଓ ଗୋଟିଏ ନାଖିକେଲ ପଠାଇ ଦେଇଥିଲେ, ତାହା ନୂତନ ଗୁରୁଙ୍କ ଆଗରେ ଉପସ୍ଥାପିତ କରାଗଲା । ପବିତ୍ର ପ୍ରସାଦ ବିତରିତ ହେଲା ଏବଂ ପରେ, ସେଦିନର ଭୋଜନ ପାଇଁ ଶିଖମାନେ ଗଲେ ସାଧାରଣ ପାକଶାଳା ବା ଗୁରୁ-କା-ଲଙ୍ଗରକୁ, ଯେଉଁଠି ସେମାନେ କୌଣସି ପ୍ରକାର ଭିନ୍ନତା ନରଖି, ଏକତ୍ର ଖାଦ୍ୟ ଗ୍ରହଣ କଲେ । ବାଳକ ଗୋବିନ୍ଦ ବର୍ତ୍ତମାନ ଶିଖ ସମ୍ପ୍ରଦାୟର ଉଭୟ ରାଷ୍ଟ୍ରିକ ଓ ଆଧ୍ୟାତ୍ମିକ ଶାସକ ହେଲେ ।

ଅଧିକାରର ଏକ ନୂତନ ନିଶାଣ ରୂପେ ଆନନ୍ଦପୁରରେ ବର୍ତ୍ତମାନ ଦେଖା ଦେଲା ଏକ ଢୋଲ । ଗୁରୁ ଗୋବିନ୍ଦ ଏହାକୁ ନିଜ ଇଚ୍ଛାରେ ସ୍ୱତନ୍ତ୍ର ଭାବରେ ନିର୍ମାଣ କରାଇଥିଲେ, ଯଦିଓ ମସନ୍ଦ ବା ପ୍ରାନ୍ତୀୟ ଯାଜକମାନେ

ଏହାର ବିରୋଧ କରିଥିଲେ । ଆନନ୍ଦପୁର, ସେ ପର୍ଯ୍ୟନ୍ତ ଥିଲା ବିଳାସପୁର ରାଜାଙ୍କ ଇଲାକାରେ । ଏହି ନୂତନ ଦୁନ୍ଦଭି ଧ୍ୱନି ବିଳାସପୁର ରାଜାଙ୍କର ବିରକ୍ତି ଓ କ୍ରୋଧ ଜାତ କରାଇପାରେ ବୋଲି ସେମାନେ ଆପତ୍ତି କରିଥିଲେ । ଗୋବିନ୍ଦ ଏହାକୁ ଦୁର୍ବଳତାର ଯୁକ୍ତି କହି ମାନି ନଥିଲେ । ତିଆରି ସରିଲା ପରେ, ଏହି ନୂତନ ବାଦ୍ୟର ନାମ ହେଲା "ରଣଜିତ୍ ନାଗରା" ଏବଂ ଉତ୍ସବର ସହିତ ଏହାକୁ ପ୍ରତିଷ୍ଠିତ କରାଗଲା । ସବୁଠାରୁ ବଳବାନ୍ ଶିଖ୍‌କୁ ଏହା ବଜାଇବାର ଭାର ଦିଆଗଲା । ଯେତେବେଳେ ଏହା ତାଳ ରଖି ବାଦିତ ହେଲା, ଏହା ସକଳ ଶିଖ୍‌ର ହୃଦୟକୁ ପ୍ରକୃତରେ ନର୍ତ୍ତିତ କଲା । ସାଧାରଣତଃ ଏ ବାଦ୍ୟ ବଜା ହେଉଥିଲା ଯେତେବେଳେ ଗୁରୁ ଶିକାରକୁ ବା ମିଳିତ ଭୋଜନକୁ ଯାଉଥିଲେ । ଶେଷୋକ୍ତ ବାଦନରେ ତାତ୍ପର୍ଯ୍ୟ ଥିଲା, ସମସ୍ତେ ଯେପରି ଶୁଣିବେ ଓ ସମସ୍ତେ ମିଳିତ ଭୋଜନରେ ଯୋଗ ଦେବେ । ପ୍ରତ୍ୟେକ ଶିଖ୍-ଗୁରୁଦ୍ୱାରରେ ଏଇ ପ୍ରଥା ଏ ପର୍ଯ୍ୟନ୍ତ ଚାଲି ଆସିଛି ।

ବିଳାସପୁରର ତତ୍‌କାଳୀନ ରାଜା ଭୀମଚନ୍ଦ, ଆନନ୍ଦପୁରରେ ଯେଉଁ ସବୁ ବ୍ୟାପାର ଘଟି ଚାଲିଥିଲା; ତାର ଖବର ରଖୁଥିଲେ । ରଣଜିତ୍ ନାଗରାର ମନ୍ଦ୍ର-ଗମ୍ଭୀର ଧ୍ୱନି ତାଂକୁ ଏକାଧାରରେ କଲା କୁତୂହଳୀ ଓ ଭୟଭୀତ । ସେ ନିଜ ମନ୍ତ୍ରୀଙ୍କୁ କହିଲେ, ବୁଝି ଜଣାଇବାକୁ, ଶିଖ୍ ସମ୍ପ୍ରଦାୟ ଓ ସେମାନଙ୍କର ଗୁରୁଜୀଙ୍କର ତାଙ୍କ ରାଜ୍ୟର ଶାନ୍ତି ଏପରି ନଷ୍ଟ କରିବାରେ ମତଲବ୍ କ'ଣ । ସେ ମନ୍ତ୍ରୀ କିନ୍ତୁ ଈଶ୍ୱର-ଭୀରୁ ଓ ବିବେଚକ ପୁରୁଷ ଥିଲେ ଏବଂ ରାଜାକୁ କହିଲେ ଯେ, ଶିଖ-ଗୁରୁଙ୍କଠାରୁ କୌଣସି ବିପଦର ଆଶଂକା ସେ ନ କରନ୍ତୁ । ଗୁରୁ ଶିକାରକୁ ଆସିଲାବେଳେ ହିଁ ସେହି ନବ-ନିର୍ମିତ ନାଗରାଟା ବଜା ହୁଏ ଏବଂ ଗୁରୁଙ୍କ ସହିତ ସୁସମ୍ବନ୍ଧ ରଖିବାକୁ ଓ ତାଂକୁ ଯଥାଶୀଘ୍ର ସାକ୍ଷାତ କରିବାକୁ ସେ ରାଜାଙ୍କୁ ଉପଦେଶ ଦେଲେ ।

ଏଥିକି ରାଜାଙ୍କ ମନ ପାଇଲା ଏବଂ ସେ ମନ୍ତ୍ରୀଙ୍କ ପଠାଇଲେ ଗୁରୁଙ୍କ ସହିତ ଏକ ସାକ୍ଷାତର ବ୍ୟବସ୍ଥା କରିବା ପାଇଁ । ରାଜଦୂତ ଆନନ୍ଦପୁରରେ ଯଥୋଚିତ ଆତିଥ୍ୟରେ ସମ୍ବର୍ଦ୍ଧିତ ହେଲେ ଏବଂ ସେଠାରୁ ସମ୍ବାଦ ଗଲା ଯେ, ଆନନ୍ଦପୁରର ଆତିଥ୍ୟ ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଏବଂ ବିଳାସପୁରର ରାଜା ବିଜେ କଲେ, ଯଥୋଚିତ ଭାବରେ ସମ୍ବର୍ଦ୍ଧିତ ହେବେ ।

ଆନନ୍ଦପୁରକୁ ବିଜେ ହୁଅନ୍ତେ, ରାଜା ଭୀମଚନ୍ଦ ଆଶାନୁରୂପ ଅଭିନନ୍ଦନ ମଧ୍ୟ ଲାଭ କଲେ । କିଶୋର ହେଲେହେଁ ଗୁରୁ ଗୋବିନ୍ଦ, ରାଜାଙ୍କ

ସମ୍ବନ୍ଧ ଧର୍ମ ସମସ୍ତ ଧରି ନାନା ବିଷୟରେ କଥୋପକଥନ କରି ଚାଲିଲେ । କାବୁଲ୍‌ରେ ବାସ କରୁଥିବା ଶିଖ୍ ଭକ୍ତ ଦୁନିଚାନ୍ଦ୍, ଗୁରୁଙ୍କୁ ଏକ ସୁନ୍ଦର କାରୁକାର୍ଯ୍ୟଖଚିତ ତମ୍ବୁ ଭେଟି ଦେଇଥିଲେ । ରାଜା ଓ ଗୁରୁଙ୍କର ଦ୍ୱିତୀୟ ସାକ୍ଷାତ ସେହି ତମ୍ବୁରେ ଆୟୋଜିତ ହୋଇଥିଲା ଏବଂ ସେହି ତମ୍ବୁର କାରୁକାମରେ ରାଜା ମୁଗ୍ଧ ହୋଇ ପଡ଼ିଲେ । ଆସାମର ରାଜା ରତନରାଇ ସେହିପରି ଗୁରୁଙ୍କୁ ଏକ ଶ୍ରେଷ୍ଠ, ସୁନ୍ଦର ଓ ଚତୁର ହାତୀ ଉପହାର ଦେଇଥିଲେ, ଯାହାର ନାମ ରଖା ଯାଇଥିଲା, 'ପ୍ରସାଦୀ' । ରାଜା ଭୀମଚାନ୍ଦ ପ୍ରସାଦୀକୁ ଦେଖି ମଧ୍ୟ ବିଶେଷ ମୁଗ୍ଧ ହେଲେ । ଫଳରେ, ବିଲାସପୁରର ଏହି ରାଜା ଈର୍ଷାଯୁକ୍ତ ହୋଇ ପଡ଼ିଲେ ଏବଂ ଘରକୁ ଫେରି ଫେରି ଖାଲି ଭାବି ଲାଗିଲେ, ଶିଖମାନଙ୍କଠାରୁ ଏହି ତମ୍ବୁ ଓ ଏହି ହାତୀକୁ ଛଡ଼ାଇ ନେଇ ସେ, ସେସବୁକୁ କିପରି ନିଜର କରିବେ । ରାଜାଙ୍କର ପୁଅ ଅଜମେର ସିଂହର ବିବାହ ତାଙ୍କର ଏହି ମହାଭିଳାଷ ସାର୍ଥକ କରିବା ପାଇଁ ଯେପରିକି ଏକ ସୁଯୋଗ ଜୁଟାଇ ଦେଲା । ରାଜା, ଗୁରୁଙ୍କୁ, ପୁଅର ବିବାହ ଉପଲକ୍ଷରେ, ସେହି ହାତୀ ଓ ଅନ୍ୟାନ୍ୟ ରାଜ-ବିବାହୋପଯୋଗୀ ଆଡ଼ମ୍ବର ଦ୍ରବ୍ୟ ସବୁ ଧାର ଦେବା ପାଇଁ ଖବର ପଠାଇଲେ । ଗୁରୁ, ରାଜାର ଅଭିସନ୍ଧି ଅନୁମାନ କରି କହି ପଠାଇଲେ ଯେ, ସେଗୁଡ଼ିକ ଭକ୍ତମାନଙ୍କର ଉପହାର, ସେ ଗୁଡ଼ିକ ଅନ୍ୟର ବ୍ୟବହାର ପାଇଁ ସେ ଦେବେ ନାହିଁ । ରାଜା ଏଥିରେ କୁପିତ ହୋଇ ଲେଖିଲେ ଯେ, ଯଦି ପ୍ରସାଦୀ ହାତୀ ତୁରନ୍ତ ନ ପଠାଯାଏ, ତେବେ ତାଙ୍କର ସୈନ୍ୟବାହିନୀ ଆସି ତାକୁ କେବଳ ନେଇ ନେବେ ନୁହେଁ, ଗୁରୁ ଓ ତାଙ୍କର ଶିଖମାନଙ୍କୁ ତାଙ୍କ ରାଜ୍ୟର ମଧ୍ୟ ନିକାଲି ଦେବେ । ଗୁରୁ ଗୋବିନ୍ଦ ସିଂ ଏ ଧମକରେ ମତ ପରିବର୍ତ୍ତନ କରିବାର ଲୋକ ଯଦିଓ ନଥିଲେ, ତେଣେ ବିଳାସପୁର ରାଜାଙ୍କୁ ଅନ୍ୟାନ୍ୟ ପାର୍ବତ୍ୟରାଜାମାନେ ଉପଦେଶ ଦେଲେ ଯେ, ହଠାତ୍ କିଛି ଗୋଟାଏ କାଣ୍ଡ ସେ ନ କରନ୍ତୁ, ବିଶେଷ କରି ପୁଅର ବିବାହବେଳେ । ଆନନ୍ଦପୁରର ସଦ୍ୟ-ସଙ୍କଟ ତେଣୁ କିଛି କାଳ ପାଇଁ ଉଭେଇ ଗଲା ।

କିନ୍ତୁ ପାର୍ବତ୍ୟ ରାଜାମାନଙ୍କର ଗୁରୁ ଗୋବିନ୍ଦସିଂଙ୍କ ପ୍ରତି ବୈରଭାବ କେବଳ ଗୋଟାଏ ହାତୀକୁ କେନ୍ଦ୍ର କରି ନଥିଲା, — ଏହାର କାରଣ ଥିଲା ଗଭୀରତର । ଏକେ ଗୁରୁଗୋବିନ୍ଦ ଏକ ସ୍ୱତନ୍ତ୍ର ରାଜା ପରି ଚମକପ୍ରଦ ଦରବାର ତିଆରି କରାଇ ସାରିଥିଲେ । ଦ୍ୱିତୀୟ ଓ ଗୁରୁତର କାରଣ ହେଲା ଏହି ଯେ, ନୂତନ ସମ୍ପ୍ରଦାୟରେ ଜାତି-ବିଚାର-ଶୂନ୍ୟତା ଏବଂ ଧର୍ମ-ଦରିଦ୍ର

ଉଚ୍ଚନୀଚ-ନିର୍ବିଶେଷରେ ସର୍ବ ଶ୍ରେଣୀର ଲୋକେ ଏକତ୍ର ଏକ ଖାଦ୍ୟ ଭୋଜନ କରିବା । ଏହା ସେମାନଙ୍କ ଚକ୍ଷୁରେ ଚିରାଚରିତ ହିନ୍ଦୁ ଐତିହ୍ୟ ପ୍ରତି ଏକ କଠୋର ମହାଘାତ ଏବଂ ସେମାନଙ୍କର ନିଜ ନିଜ ରାଜ୍ୟରେ ନିଜ ନିଜର ସନାତନ ସାମାଜିକ ବ୍ୟବସ୍ଥା ପ୍ରତି ଏକ ବିପଦ ବୋଲି ସେମାନେ ମନେ କଲେ । ଦ୍ୱିତୀୟ କାରଣ ଏହି ହେଲା ଯେ, ଗୁରୁ ତେଗବାହାଦୂର ସିଂଙ୍କ ମୃତ୍ୟୁ ପରଠାରୁ, ଶିଖ ସଂପ୍ରଦାୟ ଦିଲ୍ଲୀର ମୋଗଲ-ଶାସକଙ୍କ ରକ୍ତଚକ୍ଷୁର ଶରବ୍ୟ ହୋଇ ସାରିଥିଲେ । ସେମାନଙ୍କ ସହିତ ସଦ୍‌ଭାବର ଅର୍ଥ, ସମ୍ରାଟଙ୍କ ବିରାଗଭାଜନ ହେବା । ବରଂ ସେମାନଙ୍କ ସହିତ ଶତ୍ରୁତା ମୋଗଲ ଦରବାରକୁ ଖୁସୀ କରିବାର ଆଶା । ଏହି ଜାତି ଓ ଦେଶଦ୍ରୋହୀ ସାମନ୍ତ ରାଜନ୍ୟ ବର୍ଗ, ପରେ ପରେ ତାହାହିଁ କରି ଚାଲିଲେ ।

ତରୁଣ ହେଲେହେଁ ଦୂରଦ୍ରଷ୍ଟା ଗୋବିନ୍ଦ ସିଂ ଚାରିପଟେ ବଢ଼ି ଉଠୁଥିବା ଏହି ବ୍ୟାପକ ବିପଦ ଓ ବିଦ୍ୱେଷ ପ୍ରତି ସଚେତ ରହି, ନିଜ ସଂପ୍ରଦାୟକୁ ତଦନୁଯାୟୀ ଗଢ଼ିବାକୁ ଲାଗିଲେ । ସେ ଆଗ ନିଜକୁ ଗଢ଼ି ଚାଲିଲେ, ଏକାଧାରରେ ଶାରୀରିକ ଶକ୍ତି ଓ ସାହିତ୍ୟିକ ଗଭୀରତା ଅର୍ଜନ କରିବାରେ । ଏତେବେଳକୁ ସେ ହୋଇ ଉଠିଲେଣି ଏକ କ୍ଷିପ୍ରାବୟବ, ସୁନ୍ଦର, ଶକ୍ତିମାନ ତରୁଣ । ତାଙ୍କର ଉଜ୍ଜଳ ଚକ୍ଷୁରେ ହୃଦୟର ବ୍ୟାପକ କରୁଣା ଏବଂ ମନର ଗଭୀର ବିଶ୍ୱାସ ଫୁଟି ଉଠୁଥିଲା । ତାଙ୍କଠାରେ ମଧ୍ୟ ଦେଖିଦେଇଥିଲା ଅସାଧାରଣ ସର୍ବବିଦ୍ୟା-ପାରଦର୍ଶିତା । ଦିବାରାତ୍ରି ସେ ଯେପରି ତାଙ୍କର ପ୍ରତ୍ୟେକ କର୍ତ୍ତବ୍ୟ କର୍ମରେ ଉତ୍ସାହର ସହିତ ଲାଗିପଡ଼ୁଥିଲେ, ସେଥିରୁ ମନେ ହେଉଥିଲା ତାଙ୍କର ଜୀବନୀଶକ୍ତି ଥିଲା ଅସରନ୍ତି । ସେ ସୂର୍ଯ୍ୟୋଦୟର ବହୁ ପୂର୍ବରୁ ଉଠି ପ୍ରଥମେ ପରମ ପିତାଙ୍କୁ ଧ୍ୟାନ କରୁଥିଲେ । ତା'ପରେ ସେ ଧର୍ମସଭାର ପ୍ରାତଃକାଳୀନ ଅଧିବେଶନରେ ଯୋଗଦେଇ ବାଦ୍ୟଯନ୍ତ୍ର ସହିତ ଗୀତ ହେଉଥିବା ଭଜନମାନ ଶୁଣୁଥିଲେ । ତା'ପରେ ଗ୍ରନ୍ଥ ସାହେବର ବିଶେଷ ବିଶେଷ ଅଂଶ ଉପରେ ସେ ସମବେତମଣ୍ଡଳୀକୁ ବ୍ୟାଖ୍ୟାନ ଶୁଣାଉଥିଲେ । ଦିନର ବାକି ସମୟତକ, ସାମରିକ ଅଭ୍ୟାସ, ପୁସ୍ତକାଧ୍ୟୟନ, ବୀରଗାଥା ଓ ଭଜନ ଗାନ, ଶିଖ୍‌ମାନଙ୍କର ସମବେତ-ଜୀବନର ନାନା ନୂତନ ନୂତନ ସମସ୍ୟା ନେଇ ନେତୃସ୍ଥାନୀୟ ଶିଖ୍‌ମାନଙ୍କ ସହିତ ଲଘୁ ଓ ଗୁରୁ ଆଲୋଚନା । ସନ୍ଧ୍ୟାବେଳେ ପୁଣି ଧର୍ମସଭା ବସୁଥିଲା ଓ ତା'ପରେ ଥିଲା ମିଳିତ ଭୋଜନ । ତା ପରେ

ବହୁ ରାତି ପର୍ଯ୍ୟନ୍ତ ଗୃହଲେ, ମୋଗଲ ଶାସକମାନଙ୍କର ଅତ୍ୟାଚାର ଓ ପୂର୍ବତନ ଗୁରୁମାନଙ୍କର ଜୀବନୀ ଆଲୋଚନା ।

ଗଭୀର ଯତ୍ନ ଓ ମନୋନିବେଶ ଫଳରେ ଗୁରୁ ଗୋବିନ୍ଦସିଂ ଅସ୍ତ୍ର-ଶସ୍ତ୍ର ଚାଳନାରେ ଅନନ୍ୟସାଧାରଣ ପାରଙ୍ଗମତା ଲାଭ କଲେ । ଅଶ୍ୱାରୋହୀ ଭାବରେ ସେ ଯେପରି ଥିଲେ ଅଦ୍ୱିତୀୟ, ସେହିପରି ଧନୁ ଓ ତରବାରୀ ପରିଚାଳନାରେ ମଧ୍ୟ ନ ଥିଲେ ତାଙ୍କର କେହି ସମକକ୍ଷ । ପୁସ୍ତକ-ଜ୍ଞାନରେ ମଧ୍ୟ ସେ ସମାନ ଅସାଧାରଣତାର ଅଧିକାରୀ ହୋଇ ପଂଜାବୀ, ସଂସ୍କୃତ, ବ୍ରଜବୋଲି ଓ ପାର୍ସି ଭାଷାରେ ଧୂରନ୍ଧର ହୋଇ ଉଠିଲେ । ବିଶେଷ କରି ସଂସ୍କୃତ ଓ ପାର୍ସି ଭାଷାର ସମଗ୍ର ପ୍ରାଚୀନ ସାହିତ୍ୟ ଅଧ୍ୟୟନ କରି ସେହି ଦୁଇଟି ଭାଷାରେ ସେ ବିଚକ୍ଷଣ ବ୍ୟୁତ୍ପତ୍ତି ଲାଭ କଲେ । ସ୍ୱୀୟ ସାଥିକ କାବ୍ୟ-କବିତା ରଚନାରେ ମଧ୍ୟ ତାଙ୍କର ସ୍ୱାଭାବିକ ଶକ୍ତି ଓ ଉତ୍ସାହ ପ୍ରକାଶ ପାଇଲା । ତାଙ୍କ ରଚିତ କାବ୍ୟ-କବିତାର ପରିମାଣ ଏତେ ଯେ, ଜଣେ ଲୋକ ଆଉ କିଛି ନକରି କେବଳ ସେଗୁଡ଼ା ଲେଖି ବସିଥିଲେ ତାର ସାରା-ଜୀବନ ହୁଏତ ସେଇଥିରେହିଁ କଟିଥାନ୍ତା । ତାଙ୍କର ଗୁରୁମୁଖୀ ହସ୍ତାକ୍ଷରହିଁ ତାଙ୍କର ଉନ୍ନତ କଳା-ଚେତନାର ପରିଚୟ ଦିଏ । ଆମର ସୌଭାଗ୍ୟକୁ ତାଙ୍କର ହସ୍ତଲିପି ସମସାମୟିକ କେତେକ ଗ୍ରନ୍ଥରେ ଓ କେତେକ ହୁକୁମ-ନାମାରେ ଏ ପର୍ଯ୍ୟନ୍ତ ଦେଖିବାକୁ ମିଳୁଛି ।

ପଞ୍ଜାବୀ ଭାଷାରେ ତାଙ୍କର ଏକମାତ୍ର ରଚନା ଏବଂ ତାଙ୍କର ସର୍ବାଦ୍ୟ ରଚନା ହେଉଛି, "ଭର୍ସ୍ରୀ ଭଗଉତି ଜୀ କି" — ଯାହା ସାଧାରଣରେ 'ଚଣ୍ଡୀ-ଦୀ-ଭାର' ନାମରେହିଁ ପରିଚିତ । ଏହାର ଲେଖନକାଳ ୧୬୮୪ ଖ୍ରୀ:ଅ । ଶକ୍ତି ଏବଂ ଗଠନ ସୌନ୍ଦର୍ଯ୍ୟରେ ଗୁରୁଗୋବିନ୍ଦସିଂଙ୍କ 'ଚଣ୍ଡୀ-ଦୀ-ଭାର୍' ସହିତ ତୁଳିତ ହେବା ପାଇଁ ପଞ୍ଜାବୀ ଭାଷାରେ ଖୁବ୍ କମ ଗ୍ରନ୍ଥ ଅଛି । ଏହା ଦେବ ଓ ଦୈତ୍ୟମାନଙ୍କ ସଂଗ୍ରାମ ବର୍ଣ୍ଣନାକାରୀ ଏକ ମହାକାବ୍ୟ । ଏହାର ସ୍ୱର ପ୍ରବାହ ଏବଂ ଭାବକଳ୍ପ ସବୁ, ପ୍ରକୃତ ସଂଗ୍ରାମର ସ୍ୱାଦ ଆଣି ଦିଅନ୍ତି । ଲେଖକଙ୍କର ବର୍ଣ୍ଣନାକୌଶଳ ଓ କବି-କଳ୍ପନା ଯୋଗୁଁ ମହାକାବ୍ୟର ନାୟିକା ଦୁର୍ଗାଦେବୀ ପୌରାଣିକ ଗଳ୍ପର ଅସ୍ପଷ୍ଟତାରୁ ବାହାରି ଦୃଢ଼ ବାସ୍ତବତା ଗ୍ରହଣ କରି ପାରିଛନ୍ତି । ପଞ୍ଜାବର ଜନଚେତନାରେ ଏହି କାବ୍ୟ ଏପରି ଗଭୀର ରେଖାପାତ କରିପାରିଛି ଯେ, ସାଧାରଣ ପଞ୍ଜାବୀ ଲୋକ,

ଢନର ପ୍ରଥମ କର୍ମ ଖ୍ଵବରେ, ଏ ପୁସ୍ତକକୁ କେବେହେଲେ ପାଠ କରିବେ ନାହିଁ, କାରଣ ସେମାନଙ୍କର ଏକ ସଂସ୍କାର ହୋଇଯାଇଛି, ଏହି ପୁସ୍ତକର ପ୍ରଭାବରେ ଶୋଣିତ ଉଷ୍ମ ହୋଇ ଉଠି, ସମଗ୍ର ଢନପାଙ୍କ ଦାଂଗାପ୍ରବଣତା ସୃଷ୍ଟି କରିପାରେ । କିନ୍ତୁ ନିହାଙ୍ଗ ପ୍ରଭୃତି ସାମରିକ ଗୋଷ୍ଠୀ ଏହାକୁ ପ୍ରତ୍ୟହ ପାଠ କରି ଏଥିରୁ ଇପ୍‌ସିତ ପ୍ରେରଣା ଓ ଶକ୍ତି ପାଇଥାନ୍ତି ।

ଗୁରୁ ଗୋବିନ୍ଦ ସିଂ ଦୈତ୍ୟମାନଙ୍କ ସହିତ ଦୁର୍ଗାଦେବୀଙ୍କର ସାହସିକ ସଂଗ୍ରାମର ବର୍ଣ୍ଣନା କରି ଏଇ ମହାକାବ୍ୟ ଲେଖିବାରେ ଏକମାତ୍ର ଉଦ୍ଦେଶ୍ୟ ଥିଲା, ନିଜ ଲୋକଙ୍କ ଚରିତ୍ରରେ ସେହି ସାମରିକ ପ୍ରବୃତ୍ତି ଜାଗ୍ରତ କରିବା । ଗୁରୁଙ୍କର ରଚନା, ମୌଳିକ ମାର୍କଣ୍ଡେୟ ପୁରାଣକୁ ଅନୁସରଣ କରିଥିଲେହେଁ ନିଜର ମୁଖ୍ୟ ଉଦ୍ଦେଶ୍ୟକୁ ଆଖିରେ ରଖି, ସେ ଦୁର୍ଗାଙ୍କର ଚରିତ୍ରକୁ କାବ୍ୟଂକ ଅନ୍ତର୍ଦୃଷ୍ଟି ସହିତ ବାସ୍ତବତାର ଜଗତକୁ ନେଇ ଆସିଛନ୍ତି, ଯେପରିକି ତାଂକର ପାଠକମାନଂକ ଆଗରେ ତାହା ସ୍ୱାଭାବିକ ମନେ ହେବ ।

ପୁରାଣ ଅନୁସାରେ ଅଷ୍ଟଭୂଜା ଦୁର୍ଗା ବିଷ୍ଣୁଂକଠାରୁ ଉତ୍ପନ୍ନ ହେଲେ । ବ୍ରହ୍ମା, ଦୈତ୍ୟ ମଧୁ କୈଟଭ ଦ୍ଵାରା ଅଶାନ୍ତ ହୋଇ କପାଳର ଘର୍ମ ପୋଛି ସମୁଦ୍ରକୁ ଫୋପାଡ଼ି ଦିଅନ୍ତେ ସେଥିରୁ ଜଳନ୍ଧର ନାମକ ଆଉ ଏକ ଦୈତ୍ୟ ଜାତ ହୋଇ ପଡ଼ିଲା । ଏହି ଦୁଇ ଦୈତ୍ୟ ଦ୍ଵାରା ଏକାବେଳେକେ ଆକ୍ରାନ୍ତ ହୁଅନ୍ତେ, ପଳାୟମାନ ବ୍ରହ୍ମା ଯାଇ ବିଷ୍ଣୁଙ୍କ ଶରଣ ପଶିଲେ । ବିଷ୍ଣୁ ସେତେବେଳେ ଗଭୀର ଧ୍ୟାନରେ ବସିଥିଲେ । ମଧୁକୈଟଭ ବିଷ୍ଣୁଙ୍କୁ ମଧ୍ୟ ଆକ୍ରମଣ କରିବାକୁ ଯାଆନ୍ତେ ଧ୍ୟାନସ୍ଥ ବିଷ୍ଣୁଙ୍କର ପାର୍ଶ୍ୱଦେଶ ଫାଟି ଦୁର୍ଗାଦେବୀ ଆବିର୍ଭୂତ ହେଲେ ଓ ଅସୁରମାନଙ୍କ ସହିତ ଯୁଦ୍ଧ କଲେ ।

ଆଉ ଏକ କାହାଣୀ ଅନୁସାରେ ଦୁର୍ଗା ଥିଲେ ଉଜ୍ଜୟିନୀର ଏକ ରାଜାଙ୍କର କନ୍ୟା ଓ ଏକମାତ୍ର ସନ୍ତାନ । ଫଳରେ ରାଜାଂକ ମୃତ୍ୟୁପରେ ସେ ସିଂହାସନ ଆରୋହଣ କଲେ । ସେ ଏକାଧାରରେ ସୁନ୍ଦରୀ ଓ ସାହସିନୀ ଥିଲେ । ଗୁରୁ ଗୋବିନ୍ଦ ସିଂକ ହିନ୍ଦୀ କାବ୍ୟ 'ଚଣ୍ଡୀ ଚରିତ୍ର'ରେ ସେହି ରାଜକନ୍ୟା ଏହିପରି ବର୍ଣ୍ଣିତ ହୋଇଛନ୍ତି ।—

ଚନ୍ଦ୍ର ପରି ତାଂକର ବଦନ ଉଜ୍ଜ୍ୱଳ,
ତାର ଦର୍ଶନରେ ମନୁଷ୍ୟର ଦୁଃଖ ହଜି ଯାଉଛି,
ଶିବଂକ ସାପ ପରି ତାଂକର କେଶଜାଲ ଲମ୍ବିଛି
ତାଂକର ଚକ୍ଷୁ ପଦ୍ମ ଓ ହରିଣର ଈର୍ଷାର ସ୍ଥାନ,

ଭ୍ରୂଲତା ତାଂକର ଧନୁକ ଆକାର,
ଏବଂ ଚକ୍ଷୁର ପକ୍ଷ୍ମ ରାଜ ସେହି ଧନୁକର୍ଟେ ଶର ପରି,
ତାଂକର କଟି ସିଂହ ପରି ଏବଂ ଗତି ଗଜରାଜ ପରି;
ସେ ଗିରିଶିଖରବାସିନୀ,
ତାଂକର ଆକର୍ଷଣକୁ କିଏ ରୋଧି ପାରେ ?
ଏକ ହସ୍ତରେ ତାଂକର କୃପାଣ,
ସିଂହ ତାଂକର ବାହନ,
ତାଂକର ସୌନ୍ଦର୍ଯ୍ୟ ଅଗ୍ନିପ୍ରଭ ।
ଅନ୍ୟ ହାତରେ ତାଂକର ସମର-ଧନୁ,
ତାଂକର କ୍ଷିପ୍ରତା ମତ୍ସ୍ୟକୁ ମଧ ଲଜ୍ଜା ଦେବ,
ଏବଂ ଚକ୍ଷୁର ମୃଦୁ ମାଧୁର୍ଯ୍ୟ ଲଜ୍ଜା ଦେବ
ହରିଣ ଓ ପଦ୍ମକୁ ।
ଲଜ୍ଜା ଦେବ ଶୁକକୁ ପୁଣି ତାଂକର ନାସିକା
ତାଂକର ଗ୍ରୀବା ଦେବ ପାରାବତକୁ ଓ
ସ୍ୱର, କୋକିଳକୁ ଏବଂ
ମୁକ୍ତାନିନ୍ଦିତ ଦନ୍ତରାଜି, ଡାଳିମ୍ବ ବୀଜକୁ ।
ଦେବୀଂକ ସ୍ପର୍ଶରେ
ଚନ୍ଦ୍ର-କିରଣଜାଳ ଉଜ୍ଜ୍ୱଳତର ହୋଇ ଉଠିଛନ୍ତି ।

ଗୁରୁ ଗୋବିନ୍ଦ ସିଂଙ୍କର ପଞ୍ଜାବୀ କାବ୍ୟ ଚଣ୍ଡୀ-ଦୀ-ଭାର ଆରମ୍ଭ ହୋଇଛି ଦୁର୍ଗାଦେବୀ ଦୈତ୍ୟମାନଙ୍କୁ ପରାସ୍ତ କରି ସାରିଲା ପରେ ଦେବତାମାନେ ନିଜ ଅଧିକାର ଭୋଗ କରିବାରେ । ସତ୍ୟଯୁଗ ଚାଲି ଯାଇଛି । ନିମ୍ନତର ଯୁଗ ତ୍ରେତା ଆରମ୍ଭ ହୋଇଛି । ଜଗତରେ କେତେଣୁ ବହୁ ଗୋଳମାଳ ଆରମ୍ଭ ହେଲଣି । ସମାଧାନ ପାଇଁ ନାରଦ ବାହାରି ପଡିଲେଣି । ନିଃସହାୟ ବୋଧ କରି ଦେବତାମାନେ ଦୁର୍ଗାଂକ ବାସସ୍ଥାନ କୈଳାସକୁ ଗଲେ । ଦେବନେତା ଇନ୍ଦ୍ର ଦେବୀଂକ ସାହାଯ୍ୟ ପ୍ରାର୍ଥନା କଲେ । ସେମାନଂକର ପ୍ରାର୍ଥନାରେ ଦୈତ୍ୟ-ଭକ୍ଷକ ସିଂହରେ ଚଢ଼ି ଦୁର୍ଗା ସଂଗ୍ରାମକୁ ଡେଇଁ ପଡ଼ିଲେ ।

ଘୋରତର ଯୁଦ୍ଧ ଆରମ୍ଭ ହେଲା । ଶଙ୍ଖ ଦୁନ୍ଦୁଭିର ନିନାଦ ଓ ଯୋଦ୍ଧୃ-ବର୍ଗର ଚିତ୍କାରରେ ଗଗନ ବିଦୀର୍ଣ୍ଣ ହେଲା । ଶର ଓ ତରବାରିମାନଙ୍କର

ଯାତ୍ରିରେ ସୂର୍ଯ୍ୟ ମଧ୍ୟ ଅଦୃଶ୍ୟ ହୋଇଗଲେ । ଯୁଦ୍ଧର ଗୋଳ ଭିତରେ ଦୀର୍ଘକେଶ ଯୋଦ୍ଧାମାନେ ମଦ୍ୟପାୟୀଙ୍କ ପରି ଭୂପତିତ ହେବାର ଦେଖାଯାଲେ । ବର୍ଚ୍ଛାବିଦ୍ଧ ସୈନିକମାନେ ବୃକ୍ଷଶାଖାରେ କୋଳି ଓହଳିଲା ପରି ଓହଳି ରହିଲେ । ଭୂପତିତ ସୈନିକମାନଙ୍କର ସ୍ତୂପ ବଜ୍ରଧ୍ୱସ୍ତ ଗମ୍ବୁଜ ପରି ଦେଖାଗଲେ । ଦୈତ୍ୟମାନେ ଖୁବଣେ ଦୃଢ଼ପ୍ରତିଜ୍ଞତା ସହିତ ଯୁଦ୍ଧ କରିବାର ଦେଖାଗଲେ । ସେମାନଙ୍କ ଭିତରୁ ଜଣେହେଲେ କେହି ପଳାୟନ କଲେ ନାହିଁ । ସେମାନଙ୍କର ସ୍ତ୍ରୀମାନେ ସେମାନଙ୍କର ଜଗଟରେ, ଏହି ରକ୍ତାକ୍ତ ଦୃଶ୍ୟ ଏବଂ ଦୁର୍ଗାଦେବୀଙ୍କର ଅସୀମ ସାହସ ପର୍ଯ୍ୟବେକ୍ଷଣ କରୁଥାନ୍ତି । ଦୁର୍ଗାଙ୍କ ଖଡ୍ଗ, ନାଚି ନାଚି ଶତ୍ରୁ ପକ୍ଷରେ ମୃତ୍ୟୁ ବର୍ଷଣ କଲାପରି ଦେଖାଗଲା । ସେମାନେ ବର୍ଷଣମେଘ ପରି ତାଙ୍କୁ ବେଢ଼ି ବସିଲେ । ମହାବଳୀ ମଖାସୁର ତାଙ୍କୁ ଖୁବଣେ ଉତ୍ପାତ ସହିତ ଆକ୍ରମଣ କରି ବସିଲା । କିନ୍ତୁ ଦୁର୍ଗା ସ୍ୱକରବାଳରେ ତାଙ୍କୁ ଏପରି ଆଘାତ କଲେ ଯେ, ତାହା, ତା'ର ଶିରସ୍ତ୍ରାଣ ଚୂନା କରି, ମସ୍ତକ, ଶରୀର ଓ ଅଶ୍ୱକୁ ଭେଦ କରି ମହୀକି ପଶିଗଲା । ସେହି ଖଡ୍ଗରେ ସେ ରାକ୍ଷସ ବ୍ୟୂହମାନଙ୍କୁ ଗୋଟି ଗୋଟି କରି ଧ୍ୱଂସ କଲେ ଏବଂ ଦେବତାମାନଙ୍କୁ ସେମାନଙ୍କର ନିଜ ରାଜ୍ୟ ଫେରାଇ ଦେଇ, ସ୍ୱଧାମକୁ ଫେରିଗଲେ ।

କିନ୍ତୁ ଦେବତାମାନଙ୍କର ଦୁର୍ଦ୍ଦଶା ସେତିକରେ ଶେଷ ହେଲା ନାହିଁ । ଦୈତ୍ୟମାନେ ଶୁମ୍ଭ ଓ ନିଶୁମ୍ଭଙ୍କ ନେତୃତ୍ୱରେ ପୁଣି ଏକତ୍ର ହୋଇ ଇନ୍ଦ୍ରପୁରୀ ଆକ୍ରମଣ କଲେ । ଦେବତାମାନେ ପୁଣି ନିଃସହାୟ ହୋଇ ଦେବୀଙ୍କର ଶରଣ ପଶିଲେ । ଦେବୀ ପୁଣି ଯୁଦ୍ଧକୁ ବାହାରି ରାକ୍ଷସମାନଙ୍କ ଆଗରେ ବିଦ୍ୟୁତ୍ ପରି ଉଦ୍ଭାସିତ ହେଲେ । ରାକ୍ଷସମାନଙ୍କ ଭିତରୁ ଲୋଚନ, ଧୂମ୍ର ପ୍ରଭୃତି ସାହସିକ ଯୋଦ୍ଧାମାନେ ଆଗଭର ହେଲେହେଁ ଚଣ୍ଡୀଙ୍କ ଖଡ୍ଗ ଓ ଶରଘାତରେ ସମସ୍ତେ ଶରନିଦ୍ରାଭିଭୂତ ହେଲେ ।

ବର୍ତ୍ତମାନ ଶ୍ରଣବଦ୍‌ବଜସ୍ୱ ନାମକ ରାକ୍ଷସ ସେନାପତି ଲୌହବର୍ମ ପରିହିତ ଏକ ହିଂସ୍ରବାହିନୀ ସେନ ଯୁଦ୍ଧକ୍ଷେତ୍ରରେ ଦେଖାଦେଲେ । ସିଂହ-ବାହିନୀ ଓ ଗଦାହସ୍ତା ହୋଇ ଚଣ୍ଡୀ ରଣକ୍ଷେତ୍ରକୁ ଆସିଲେ । କିନ୍ତୁ ଦେଖାଗଲା ଯେ ଶ୍ରଣବଦ୍‌ବଜସ୍ୱ, ଅମର । ତାର ଭୂପତିତ ରକ୍ତବିନ୍ଦୁରୁ

ନୂତନ ବାହିନୀ ଉତ୍ଥିତ ହୋଇ ସଂଗ୍ରାମ ପାଇଁ ପ୍ରସ୍ତୁତ ଥିବାର ଦେଖାଗଲା । ଅନ୍ୟ ଉପାୟ ନ ଦେଖି ଦୁର୍ଗା କାଳୀଙ୍କୁ ସ୍ମରଣ କଲେ । କାଳୀ ତାଙ୍କ କପାଳରୁ ଅଗ୍ନିଶିଖା ପରି ଉଦ୍ଭୂତ ହେଲେ ଏବଂ ଉଭୟ କାଳୀ ଓ ଦୁର୍ଗା ବର୍ତ୍ତମାନ ଏକାବେଳକେ ଶତ୍ରୁ ସ୍କନ୍ଧାବାରରେ ମୃତ୍ୟୁ ବର୍ଷାଇ ଚାଲିଲେ, ସେମାନଙ୍କର ରକ୍ତାକ୍ତ ତରବାରି ସାହାଯ୍ୟରେ । ରକ୍ତବୀଜ ଆତ୍ମ-ସମର୍ପଣ କଲା । "ତାଙ୍କୁ ଘେରି ରହିଥିବା ତରବାରିସବୁ ନବାଗତ ବରଙ୍କୁ ଦେଖିବାକୁ ଆସିଥିବା, କନ୍ୟାମାନଙ୍କ ପରି ଦେଖା ଯାଉଥିଲେ ।" ଦୁର୍ଗାଙ୍କ ଖଡ୍ଗ ପ୍ରହାରରେ ରକ୍ତବୀଜର ଅଙ୍ଗରୁ ଯେଉଁ ରକ୍ତ ପ୍ରବାହିତ ହେଲା, ତାହା କାଳୀ ସଙ୍ଗେ ସଙ୍ଗେ ପାନ କରିନେଲେ । ଫଳରେ ନୂତନ ସୈନ୍ୟବାହିନୀ ଆଉ ଦେଖାଦେଲେ ନାହିଁ ।

ରକ୍ତବୀଜର ମୃତ୍ୟୁ ସମ୍ବାଦରେ ଶୁମ୍ଭ ଦୈତ୍ୟର ବିଷାଦ କହିଲେ ନ ସରେ । ରାକ୍ଷସମାନେ ପ୍ରତିହିଂସା ପାଇଁ ପୁଣି ପ୍ରସ୍ତୁତ ହେଲେ । ଝଟିକାକ୍ଷୁବ୍ଧ ସମୁଦ୍ର ବକ୍ଷସ୍ଥ ପୋତ ପରି, ରାକ୍ଷସ ପଦପାତରେ ଧରଣୀ ଟଳମଳ ହେବାକୁ ଲାଗିଲା । କିନ୍ତୁ ଦୁର୍ଗା କାଠୁରିଆ କାଠ କାଟିଲା ପରି ରାକ୍ଷସମାନଙ୍କୁ କାଟି ପକାଇଲେ । ଯେଉଁମାନେ ଲଢ଼ାଇରେ ହାଳିଆ ହୋଇ ନ ଥିଲେ, ସେମାନେ ମଧ୍ୟ ଆଉ ସମ୍ଭାଳି ପାରିଲେ ନାହିଁ । ମୁଲ୍‌ତାନରେ ତିଆରି ଏକ ବିଶେଷ ଧନୁ ଧରି ଓ ଘୋଡ଼ାରେ ଚଢ଼ି ନିଶୁମ୍ଭ ବର୍ତ୍ତମାନ ଦେବୀଙ୍କ ସହିତ ଲଢ଼ିବାକୁ ଆସିଲା । କିନ୍ତୁ ସେ ଶରମାରିବା ପୂର୍ବରୁ ଦେବୀଙ୍କର କ୍ଷିପ୍ର ହସ୍ତ ତାକୁ ଖଡ୍ଗରେ ଏପରି ଏକ ପ୍ରହାର ଦେଲା ଯେ ସେ ତଳେ ପଡ଼ି ପଞ୍ଚତ୍ୱପ୍ରାପ୍ତ ହେଲା । ପରେ ଶୁମ୍ଭ ମଧ୍ୟ ସେହି ଦଶାପ୍ରାପ୍ତ ହେଲା ।

ସେମାନଙ୍କର ଦଳପତିମାନଙ୍କର ଏ ପ୍ରକାର ପତନ ଦେଖି ରାକ୍ଷସମାନେ ବିକଳରେ କାନ୍ଦିବାକୁ ଲାଗିଲେ । ସେମାନେ ସେମାନଙ୍କର ଘୋଡ଼ାମାନଙ୍କୁ ଛାଡ଼ି ଦେଇ ଏବଂ ଆତ୍ମସମର୍ପଣର ଚିହ୍ନ ସ୍ୱରୂପ ପାଟିରେ କୁଟାନଟା ପୂରାଇ ଦୌଡ଼ିବାକୁ ଲାଗିଲେ । ଦୁର୍ଗା ଇନ୍ଦ୍ରଙ୍କୁ ପୁଣି ତାଙ୍କର ରାଜ-ମୁକୁଟ ଫେରାଇ ଦେଲେ । "ଜଗନ୍ମାତା କି ଜୟ" ବୋଲି ସକଳ ଲୋକ ଉଚ୍ଚାରଣ କଲେ । ଦୈତ୍ୟ ଓ ଦେବତାମାନଙ୍କ ସଂଗ୍ରାମରେ ଦୁର୍ଗା ଏହିପରି ବିଜୟିନୀ ହୋଇ ବାହାରିଲେ । ସେ ଦୈବଶକ୍ତି, କ୍ରୋଧ ଓ ପ୍ରତିବିଧାନର

ପ୍ରଶଂସକ ଏବଂ ସତ୍ୟ ଓ ନ୍ୟାୟ୍ୟରେ ଥିବା ଲୋକର ସର୍ବଦା ବନ୍ଧୁ ଓ ରକ୍ଷାକାରିଣୀ ।

ଚଣ୍ଡୀ-ଦି-ଭାର୍‌ରେ ଦେବୀଙ୍କର ଏହି ଏହି ଭିନ୍ନ ଭିନ୍ନ ନାମ ବ୍ୟବହୃତ ହୋଇଅଛି—ଦୁର୍ଗସା, ଚଣ୍ଡୀ, ଦେବୀତା, ସିଣୀ ଭବାନୀ, ଜଗନ୍ମାତ ଓ ମହାମାୟୀ ।

ଗୁରୁଗୋବିନ୍ଦ ସିଂହଙ୍କର ଏହି ଚଣ୍ଡୀ-ଦି-ଭାର୍‌କୁ ଆକାରରେ ମହାକାବ୍ୟ ବୋଲି କୁହାଯାଇ ପାରିଲେ ମଧ୍ୟ ଏହାର ଉଦାର ବ୍ୟାପ୍ତି, ଏହାର ସାଂଗିତିକ ଭାଷା, ଏବଂ ଏହାର ଉପମାପ୍ରବାହ ପାଠକ ଚିତ୍ତରେ ପରମ ଉତ୍ସାହ ସୃଷ୍ଟି କରିଥାଏ ।

୧୬୮୨ର ବୈଶାଖୀ ଉତ୍ସବକୁ ମୁଲ୍‌ତାନରୁ ଯେଉଁ କେତେକ ଉତ୍ସାହୀ ଶିଖ୍ ଆନନ୍ଦପୁରକୁ ଆସିଥିଲେ ତାଙ୍କ ଭିତରେ ନନ୍ଦଲାଲ ଗୋୟା ନାମକ ଏକ କୃତବିଦ୍ୟ ଯୁବକ ଥିଲା । ସେ ଆରବୀ ଓ ପାର୍ସି ଭାଷାରେ ପଣ୍ଡିତ ଥିଲା କେବଳ ନୁହେଁ, ଆରବୀରେ କବିତା ମଧ୍ୟ ଲେଖି ପାରୁଥିଲା । ତାର ପୂର୍ବପୁରୁଷମାନେ କାବୁଲ୍ ଦରବାରରେ ମନ୍ତ୍ରୀ ଥିଲେ ଏବଂ ସେ ସେହି ସୂତ୍ରରେ ହିଁ ପାର୍ସ ସାହିତ୍ୟରେ ଜ୍ଞାନ ଅର୍ଜନ କରିଥିଲା । ସେ ଗୁରୁ ଗୋବିନ୍ଦ ସିଂଙ୍କୁ ପାର୍ସି ଭାଷାରେ ସ୍ୱଲିଖିତ 'ବାନ୍ଦଗୀନାମ' ନାମକ ପୁସ୍ତକ ଉପହାର ଦେଇଥିଲା । ଗୁରୁ ଏହା ପଢ଼ି ପ୍ରୀତ ହୋଇଥିଲେ ଏବଂ ଭାଇ ନନ୍ଦଲାଲକୁ ସେଥିପାଇଁ ଅଭିନନ୍ଦିତ କରିଥିଲେ । ସେ ଏହା ମଧ୍ୟ କହିଲେ ଯେ ପୁସ୍ତକର ନାମ "ଜିନ୍ଦ୍‌ଗୀନାମା" ହେଲେ ଭଲ ହୁଅନ୍ତା । ପୁସ୍ତକର ନାମ ସେଇଆ ହିଁ ରହିଛି ।

୧୯ ବର୍ଷ ବୟସରେ ଗୁରୁ ଗୋବିନ୍ଦ ସିଂ ଲାହୋରନିବାସୀ ଭିଖିଆଙ୍କର କନ୍ୟା ସୁନ୍ଦରୀଙ୍କୁ ବିବାହ କଲେ । ପ୍ରଚଳିତ ପ୍ରଥାକୁ ନ ମାନି ସେ ବିବାହ ପାଇଁ ଲାହୋର ଯିବାକୁ ମନାକଲେ ଏବଂ ଆନନ୍ଦପୁର ପାଖରେ ଏକ କ୍ଷୁଦ୍ର ସହର ବସାଇ ତା'ର ନାମ ଦେଲେ ଲାହୋର । ତାଙ୍କର ଶିଷ୍ୟ, ଭକ୍ତ, ବଣିକ ଓ ଦୋକାନୀମାନେ ଆଗ୍ରହର ସହିତ ସେଠି ଯାଇ ବସତି ସ୍ଥାପନ କଲେ । ଭିଖିଆ, କନ୍ୟାକୁ ଧରି ସେହି ନୂତନ ଲାହୋରକୁ ଆସିଲେ ଏବଂ ଆନନ୍ଦଉତ୍ସବ ଓ ଭୋଜଭାତରେ ବିବାହ ଅନୁଷ୍ଠିତ ହେଲା ।

କିନ୍ତୁ ଠିକ୍ ପରବର୍ଷ, ଗୁରୁଜୀଙ୍କୁ ଭେଟିବା ପାଇଁ ଆସିଥିବା ଦଳେ ନୂତନ ଶିଖ୍ ମେଣ୍ଟରେ ଏକ ଅବିବାହିତା କନ୍ୟା ଥିଲା, ଯେ ଧରିବସିଲା ସେ ଗୁରୁଙ୍କୁ ବିବାହ କରିବ । ଗୁରୁ ଏଥିପାଇଁ ଆଦୌ ଉତ୍ସାହି ନ ଥିଲେ । କିନ୍ତୁ ତାଙ୍କ ମାତା ଅନୁରୋଧ କରିବାରୁ ସେ ବାଧ୍ୟହୋଇ 'ଜିତୋ' ନାମକ ଏହି କନ୍ୟାଟିକୁ ମଧ୍ୟ ଶେଷରେ ବିବାହ କଲେ । ଜିତୋଜୀ ୧୭୦୧ ରେ ପ୍ରାଣତ୍ୟାଗ କଲେ । ସେହି ବର୍ଷ, ରୋହତାସ ଅଧିବାସୀ ହରି ଭଗବାନ୍ ନାମକ ଶିଖ୍, ସାହିବ୍ ଦେବାନ୍ ନାମିକା ନିଜର କନ୍ୟାଙ୍କୁ ଗୁରୁଙ୍କୁ ଅର୍ପଣ କରିବାକୁ ବସିଲେ । କିନ୍ତୁ ସମର-ପ୍ରସ୍ତୁତି ଅଂଶ ରୂପେ ଗୁରୁ ଗୋବିନ୍ଦ ସିଂ ସେତେବେଳକୁ ବିବାହିତ ହୋଇ ମଧ୍ୟ କଠୋର ବ୍ରହ୍ମଚର୍ଯ୍ୟ ବ୍ରତ ଗ୍ରହଣ କରି ସାରିଲେଣି । କିନ୍ତୁ ବାଳିକାର ପିତାମାତା ଅଡ଼ି ବସିବାରୁ ଏବଂ ବାଳିକାଟି ଗୁରୁଙ୍କୁ ସେବା କରିବାର ସୁଯୋଗ ଛଡ଼ା ଆଉ କିଛି ଚାହିଁନି, ଏହା କାତର ଭାବରେ ପ୍ରାର୍ଥନା କରିବାରୁ, ଗୁରୁ କେବଳ ଏକ ଆନୁଷ୍ଠାନିକ ବିବାହ ପାଇଁ ରାଜି ହେଲେ । ପରେ ତାଙ୍କୁ ଗୁରୁ ଗୋବିନ୍ଦ-ପ୍ରତିଷ୍ଠିତ ଖାଲ୍‌ସା ବାହିନୀର ଜନନୀ ବୋଲି ଘୋଷିତ କରାଗଲା ।

ଗୁରୁ ଗୋବିନ୍ଦ ସିଂକର ଚାରିଟି ସନ୍ତାନ ହୋଇଥିଲେ । ସୁନ୍ଦରୀଙ୍କ ଗର୍ଭରୁ ୧୬୮୯ ରେ ଅଜିତ ସିଂ ଜନ୍ମ ହୋଇଥିଲେ । ଆଉ ତିନୋଟି ଜିତୋଜୀଙ୍କ ଗର୍ଭଜାତ—୧୬୯୦ ରେ ଜୁଝାର ସିଂ, ୧୬୯୬ ରେ ଜୋରାୱାର ସିଂ, ୧୬୯୯ ରେ ଫତେ ସିଂ ।

— — — —

# ପଞ୍ଚମ ଅଧ୍ୟାୟ

## ସାହିତ୍ୟରେ ନୂତନ ରୂପକ ।

ବିଳାସପୁରର ରାଜା ଭୀମଚନ୍ଦ ଗୁରୁ ଗୋବିନ୍ଦ ସିଂଙ୍କ ବିରୁଦ୍ଧରେ ଯେଉଁ ଈର୍ଷା-ପ୍ରତିହିଂସା-ମୂଳକ ଚକ୍ରାନ୍ତ ପୂର୍ବେ କଳ୍ପନା ମାତ୍ର କରୁଥିଲେ, ବର୍ତ୍ତମାନ ସମୟକୁ ତାହା କ୍ରମେ ବାସ୍ତବତା ଆଡ଼କୁ ଆସିବାକୁ ଆରମ୍ଭ କରି-ଥିଲା । ଏହାର ପ୍ରଥମ ପଦକ୍ଷେପ ହେଲା, ଗୁରୁଙ୍କୁ ବିଳାସପୁରର ନାହାନ ନାମକ ଏକ ଶିକାର-ପ୍ରଚୁର ସ୍ୱାସ୍ଥ୍ୟକର ସ୍ଥାନରେ କିଛିକାଳ କଟେଇବାକୁ ନିମନ୍ତ୍ରଣ କରିବା । ରାଜା ଭୀମଚନ୍ଦ ଏହି ଉଦ୍ଦେଶ୍ୟରେ ଆନନ୍ଦପୁରକୁ ଦୂତ ପ୍ରେରଣ କଲେ । କିନ୍ତୁ ଚତୁର ଗୁରୁଜୀ ହଠାତ୍ ଯିବାର ସମ୍ଭାବନା ନାହିଁ କହି, ଆଉ କିଛିଦିନ ଅପେକ୍ଷା କରିବାକୁ କହିଲେ ।

ବିଳାସପୁରଙ୍କର ଏହି ଚକ୍ରାନ୍ତରେ ଶିର୍‌ମୁରର ରାଜା ମେଦିନୀ ପ୍ରକାଶଙ୍କ ଛଡ଼ା ସେ ଅଞ୍ଚଳର ଅନ୍ୟ ସମସ୍ତ ପାର୍ବତ୍ୟ ରାଜାମାନେ ଯୋଗ ଦେଇଥିଲେ, କିନ୍ତୁ କେତେକ ଶିଖ୍-ମସନଦ ବା ପ୍ରାନ୍ତୀୟ ଧର୍ମଯାଜକ ମଧ୍ୟ ସମ୍ପୂର୍ଣ୍ଣ ନିରୀହତାରେ ବିଳାସପୁରଙ୍କ ନିମନ୍ତ୍ରଣ ରକ୍ଷା କରିବାକୁ ଉପଦେଶ ଦେଲେ ଓ କିଛି କାଳ ପାଇଁ ଗୁରୁଜୀ ଆନନ୍ଦପୁର ଛାଡ଼ି ଯାଆନ୍ତୁ ବୋଲି ସେମାନେ ଗୁରୁ-ମାତାଙ୍କୁ ବାରମ୍ବାର କହନ୍ତେ ଗୁରୁ ଗୋବିନ୍ଦ ସିଂ ଜନନୀଙ୍କ କଥାରେ ରାଜି ହୋଇ ମଧ୍ୟ ସେ ପ୍ରଥମେ ଗଲେ ଶିର୍‌ମୁରର ରାଜା ମେଦିନୀ ପ୍ରକାଶଙ୍କ ଘରକୁ ।

ଗୁରୁ, ଆନନ୍ଦପୁରରେ ଯଥେଷ୍ଟ ଶିକ୍ଷିତ ଦୁର୍ଗରକ୍ଷୀ ସୈନିକ ମୁତୟନ କରି ଯାତ୍ରା ଆରମ୍ଭ କଲେ । ରଣଜିତ୍ ନାଗରା ତାଙ୍କର ଯାତ୍ରାରମ୍ଭକୁ ଚତୁର୍ଦ୍ଦିଗରେ ବିଘୋଷିତ କଲା । ସୁଶିକ୍ଷିତ କେତେକ ସୈନ୍ୟ ସାଥିରେ ଘେନି ଗୁରୁଜୀ ୧୬୮୬ ଖ୍ରୀ: ଅ: ର ଗ୍ରୀଷ୍ମକାଳରେ ଏହି ନାହାନ୍-ଯାତ୍ରା କରିଥିଲେ । ବାଟରେ ପିତାମହ ଗୁରୁ ହରିଗୋବିନ୍ଦ ସିଂଙ୍କ ସ୍ମୃତି-ମନ୍ଦିରଠାରେ ଶ୍ରଦ୍ଧାନିବେଦନ କରିବା ପାଇଁ ସେ କିରାତପୁରଠାରେ ରହିଲେ । ସେଠାରୁ ପୁଣି ଯାତ୍ରା କରି ନାହାନର ନିକଟବର୍ତ୍ତୀ ହେଲବେଳେ

ସ୍ୱୟଂ ରାଜା ଗୁରୁଙ୍କୁ ପାଖରେ ଆସିଲେ ଏବଂ ପ୍ରକାଶ କଲେ ଯେ, ଗୁରୁଜୀ ତାଙ୍କର ଆତିଥ୍ୟ ସ୍ୱୀକାର କରିଥିବାରୁ ସେ ନିଜକୁ ଭାଗ୍ୟବାନ ମନେ କରୁଛନ୍ତି । ସେ ଗୁରୁଙ୍କୁ ଓ ତାଙ୍କର ଶିଖ୍ ଅନୁଚରମାନଙ୍କୁ ନିଜ ପ୍ରାସାଦକୁ ଘେନି ଯାଇ ସେମାନଙ୍କର ଯଥୋଚିତ ସତ୍କାର କରିବାକୁ ଲାଗିଲେ ।

କିନ୍ତୁ ରାଜାଙ୍କର ଅତିଥି ହୋଇ ବେଶୀ ଦିନ କଟାଇବା ଗୁରୁଙ୍କର ଆଦୌ ଅଭିଳାଷ ନ ଥିଲା । ଦିନେ ଶିକାରରେ ବାହାରିଥିଲା ବେଳେ ଗୁରୁ ଯମୁନା ନଦୀର ଅଦୂରସ୍ଥ ଏକ ପାର୍ବତ୍ୟସ୍ଥଳୀରେ ପ୍ରାକୃତିକ ସୌନ୍ଦର୍ଯ୍ୟରେ ବିମୁଗ୍ଧ ହୋଇ ପଡିଲେ ।

ଏ ଜାଗାଟି ମଧ୍ୟ ବିଳାସପୁର ରାଜ୍ୟାନ୍ତର୍ଗତ ଥିଲା—ନାହାନଠାରୁ ୨୭ ମାଇଲ ଦୂର । ଗୁରୁ ନାହାନ୍‌କୁ ଫେରି ନ ଯାଇ ସେହିଠାରେହିଁ ତମ୍ବୁ ପକାଇଲେ ଏବଂ ପରମପିତାଙ୍କୁ ପ୍ରାର୍ଥନା ଓ ପ୍ରସାଦ ବିତରଣ ପରେ, ନିଜର ଓ ବିଳାସପୁର ରାଜାଂକ ଲୋକଙ୍କୁ ଲଗାଇ ସେଠାରେ ଏକ ଦୁର୍ଗର ଗଠନ ଆରମ୍ଭ କଲେ । ଦିବା-ରାତ୍ରି କାମ ଚାଲିବା ଯୋଗୁଁ ଗଠନ ଶୀଘ୍ର ସମାପ୍ତ ହେଲା ଏବଂ ଗୁରୁଜୀ ସେହିଠାରେ ଅଧିବାସ କଲେ । ଗୁରୁଜୀ ପ୍ରଥମେ ସେହି ସ୍ଥାନ ଦେଖି ମୁଗ୍ଧ ହୋଇଥିଲା ବେଳେ ତାଙ୍କର ପ୍ରିୟ ଅଶ୍ୱ ସେହି ଭୂମିକୁ କ୍ଷୁରାଘାତ ବା ପଦାଘାତ କରିଥିବାରୁ ଗୁରୁ ସେହି ଅଶ୍ୱକୁ ସମ୍ମାନିତ କରି ଦୁର୍ଗର ନାମ ଦେଲେ ପାଓନ୍ତା-(ପାଓ-ପାଦ) ।

ଭାଗ୍ୟକୁ, ଗୁରୁଙ୍କର ଏହି ପାଓନ୍ତା ଦୁର୍ଗରେ କଟାଇଥିବା ବର୍ଷଗୁଡିକ ସର୍ବାଧିକ ସୃଜନଶୀଳ ହୋଇ ଉଠିଥିଲା । ଆନନ୍ଦପୁର ପରି ଏଠାରେ ମଧ୍ୟ ସେ ନିଜ ଅନୁଚରମାନଙ୍କୁ ଉଭୟ ଧର୍ମ ଓ ଯୁଦ୍ଧର ଅଭିଜ୍ଞତାରେ ଉତ୍ତରୋତ୍ତର ଶିକ୍ଷିତ କରାଇ ଚାଲିଲେ । ଶିକାର ବିନୋଦନ ମଧ୍ୟ ଅବ୍ୟାହତ ରହିଥିଲା । ସେ ନିଜେ 'ବିଚିତ୍ର ନାଟକ'ରେ କହିଛନ୍ତି ଯେ, ସେ "ଏଠାରେ ବନରେ ବହୁ ବ୍ୟାଘ୍ର, ଭଲ୍ଲୁକ ଓ ହରିଣ ବଧ କରିଥିଲେ ।" କିନ୍ତୁ ଏ ସବୁ ସତ୍ତ୍ୱେ ସେ ଏହିଠାରେହିଁ ବହୁ ସମୟ ଚିନ୍ତାମଗ୍ନ ଥିବାର ଦେଖାଯାଉଥିଲା ଯେତେବେଳେ ସେ ସ୍ୱଦେଶର ସମସାମୟିକ ଦୁର୍ଦ୍ଦଶା ଓ କିପରି ସେଥିରୁ ଜାତିକୁ ଉଦ୍ଧାର କରାଯିବ, ତାର ନୂଏତ ଯୋଜନା କରୁଥିଲେ । ଏହିଠାରେ ମଧ୍ୟ ତାଙ୍କର କବି-ପ୍ରତିଭା ତାର ଶ୍ରେଷ୍ଠ ସ୍ଫୁରଣ ଲାଭ କଲା । ସେ ଏହି ସ୍ଥାନରେ

ଯେଉଁସବୁ କାବ୍ୟ-କବିତା ଲେଖି ଗଲେ, ଆଧ୍ୟାତ୍ମିକ ଅନୁଭବ, ରଚନା-ଶୈଳୀର ଭଙ୍ଗିମା ଏବଂ ଉପଜୀବ୍ୟ ବସ୍ତୁର ଶକ୍ତିମତ୍ତା ଯେଣୁ, ଅତୁଳନୀୟ । ଏହି ସବୁ କାବ୍ୟକ ସୃଷ୍ଟିରେ ଗୁରୁଜୀଙ୍କର ଦୁଇଟି ଲକ୍ଷ୍ୟ ଥିଲା,—ଅକାଳ (ଅନନ୍ତ)ଙ୍କର ମହିମା ପ୍ରଚାର ଏବଂ ଏକ ଦୁର୍ବଳୀଭୂତ ଜାତିର ଅଭ୍ୟୁତ୍ଥାନ ଏବଂ ରଚନାଗୁଡ଼ିକ ଦୁଇଟିଯାକ ଲକ୍ଷ୍ୟ ପୂରଣ ପାଇଁ ଏକାନ୍ତ ଭାବରେ କାର୍ଯ୍ୟକାରୀ ହୋଇ ପାରିଥିଲା । ପାର୍ଥିବ ଭାଷା ଓ ସାହିତ୍ୟମାନଙ୍କରେ କୌଣସି ରଚନା, ଏପରି ଏକାଧାରରେ ଆଧ୍ୟାତ୍ମିକ ଅନ୍ତର୍ଦୃଷ୍ଟି ଓ ପୌରୁଷମୟ ବାଣୀ ବହନ କରିଥିବାର ଜଣା ନାହିଁ ।

ଏହି ସବୁ ରଚନାମାନ ଦେଇ ଗୁରୁ ଗୋବିନ୍ଦ ସିଂ ସାହିତ୍ୟ-ରାଜ୍ୟରେ ଏକ ନୂତନ ରୂପକ ସୃଷ୍ଟି କଲେ,— 'ଖଡ଼ଗର ରୂପକ' । ସେ ଖଡ଼ଗକୁ ଦୁର୍ଗା, କାଳିକା ବା ଶକ୍ତିଙ୍କର ଏବଂ ଏପରିକି ସ୍ୱୟଂ ଅକାଳଙ୍କର ମଧ୍ୟ, ପ୍ରତୀକ ରୂପେ ଚିତ୍ରିତ କଲେ । ସେ ଭଗବାନଙ୍କୁ ବର୍ଣ୍ଣନା କଲେ "ସର୍ବଲୌହ" ବୋଲି,—ତାହା ଦ୍ୱାରା ଦାସତ୍ୱ-ଜର୍ଜରୀଭୂତ ଏକ ଜାତିର ନିର୍ବିରୋଧ ଚିନ୍ତାଧାରାକୁ ଏକ ନୂତନ ଅଭିମୁଖ୍ୟ ଦେବା ପାଇଁ । ସେତେବେଳେ ଭାରତୀୟ ଜାତି କେବଳ ଏକ ନୂତନ ଧର୍ମ ଓ ବିଶ୍ୱାସ ଦରକାର କରୁ ନଥିଲା, ସେ ମଧ୍ୟ ଲୋଡ଼ୁଥିଲା, ଏକ ନୂତନ ଭାଷା । ଗୁରୁ ଗୋବିନ୍ଦ ସିଂ ଜାତିକୁ ସେହି ନୂତନ ରୂପକ, ନୂତନ ଭାବକଳ୍ପ ଓ ନୂତନ ଭାଷା ଦେଇଗଲେ । 'ବିଚିତ୍ର ନାଟକ'ରେ ସେ ବିଧାତାଙ୍କୁ ଖଡ଼ଗ ରୂପେହିଁ ଆବାହନ କରି ଏହିପରି କହିଛନ୍ତି :—

ନମସ୍କାର ଶ୍ରୀଖଡ଼ଗ କୋ,
କରଉଁ ସୁହିତ ଚିତ ଲାଇ
ପୂର୍ଣ୍ଣ କରଉଁ ଗ୍ରନ୍ଥ ଇହ
ତୁମ ମମ କରହୁ ସହାଇ ।

"ପ୍ରେମ ଓ ଭକ୍ତିରେ ମୁଁ ପବିତ୍ର ତଲବାରକୁ ନମସ୍କାର କରେ,
ଏହି ଗ୍ରନ୍ଥ ରଚନାରେ ମୁଁ ଯେ ତିଙ୍କର ସାହାଯ୍ୟ ପାଏ ।"

ତା ପରେ ଆମେ ପାଇବା ଧ୍ୱନି-ଝଂକୃତ ଓ ଭକ୍ତି-ଅଭିଷିକ୍ତ ଖଡ଼ଗର ଏକ ମନୋଜ୍ଞ ସ୍ତୁତି । ତାହାର ସଂସ୍କୃତ-ପ୍ରଭାବିତ ପଦ୍ୟାବଳୀରେ ଯୁଦ୍ଧମାନ

ତରବାରର ଧ୍ୱନି ଏପରି ଦୃପ୍ତତା ଓ ସାଂଗୀତିକତା ସହିତ ପ୍ରକଟିତ ହୋଇଛି ଯେ, ଏଠାରେ ମୌଳିକ ଶ୍ଳୋକଗୁଡ଼ିକୁ ଥୋଇ ଦେବାକୁ ମନ କରୁଛି: —

ଖଗ ଖଣ୍ଡ ବିହନ୍ଦମ୍
ଖଲ ଦଲ ଖଣ୍ଡମ୍
ଅତିରଣ ମନ୍ଦମ୍,
ବର ବନ୍ଦମ୍ ।
ଭୁଜଦଣ୍ଡ ଅଖଣ୍ଡମ୍
ତେଜ ପ୍ରଚଣ୍ଡମ୍
ଜୋତି ଅମନ୍ଦମ
ଭାନୁ ପ୍ରଭମ୍ ।
ସୁଖ ସନ୍ତଂ କରଣମ୍
ଦୁର୍ମତି ଦାରୁଣମ୍
କଲ୍‌ବିଷ ହରଣମ୍
ଅସି ଶରଣମ୍
ଜୟ ଜୟ ଜଗକାରଣମ୍
ସୃଷ୍ଟି ଉଭାରଣମ୍,
ମମ ପ୍ରତିପାରଣମ୍
ଜୟ ତେଘମ୍ ।

ଗୁରୁ ଗୋବିନ୍ଦଙ୍କ ରଚନାରେ ଖଡ୍‌ଗ ଓ ଈଶ୍ୱର ଏହିପରି ଭାବରେ ପରସ୍ପର-ଅର୍ଥ-ସୂଚକ ଶବ୍ଦ ହୋଇ ପଡ଼ିଛନ୍ତି । ଶିଖ୍-ପ୍ରାର୍ଥନା ସଭାମାନଙ୍କରେ ଏବେ ହେଉଥିବା ପ୍ରାରମ୍ଭିକ ଭଜନଟି ଗୁରୁ ଗୋବିନ୍ଦ-ସିଂ-ରଚିତ । ତାର ପ୍ରଥମ ପଂକ୍ତି ହେଉଛି, "ପ୍ରଥମେ ଖଡ୍‌ଗ ଓ ତା ପରେ ଗୁରୁ ନାନକଙ୍କୁ ଧ୍ୟାନ କର" ।

ଗୁରୁଗୋବିନ୍ଦ ଈଶ୍ୱରଙ୍କୁ ଯେତେବେଳେ 'ସର୍ବଲୌହ' ବା ଖଡ୍‌ଗ ବୋଲି ବର୍ଣ୍ଣନା କଲେ, ସେତେବେଳେ ସେ ଆଦୌ ଭୁଲିଯାଇ ନ ଥିଲେ ଯେ ଈଶ୍ୱର ମଧ୍ୟ ପ୍ରେମ ଓ କରୁଣାମୟ । ଅତୁଳନୀୟ "ଜପସାହେବ"ର କେତୋଟି ପଂକ୍ତିରେ ଈଶ୍ୱରଙ୍କର ସ୍ୱର୍ଗୀୟ ଗୁଣାବଳି ସେ ଏହିପରି ବର୍ଣ୍ଣନା କରିଛନ୍ତି ।

"ଖଡ଼୍‌ଗଧାରୀ ପ୍ରଭୁ, ତୁମ୍ଭଙ୍କୁ ବନ୍ଦନା କରେ,
ଶସ୍ତ୍ରଧାରୀ ପ୍ରଭୁ ତୁମ୍ଭଙ୍କୁ ବନ୍ଦନା କରେ,
ଶେଷତତ୍ତ୍ୱଜ୍ଞ ପ୍ରଭୁ ତୁମ୍ଭଙ୍କୁ ମୁଁ ବନ୍ଦନା କରେ
ବନ୍ଦନା କରେ ପ୍ରଭୁ ତୁମକୁ ଯେ ଜନନୀ ପରି
ଏ ଜଗତକୁ ପ୍ରେମ କରନ୍ତ ।"

ଗୁରୁଗୋବିନ୍ଦ ସାମରିକ ଆୟୁଧ ଭିତରେ ଯେ ଈଶ୍ୱରଙ୍କର ପ୍ରତୀକ ଦେଖି ପାରିଛନ୍ତି, ତାର କାରଣ, ସେହିହିଁ ମନ୍ଦ ଓ ଦୁଷ୍ଟର ସଂହାରକ; ଯଦିଓ ସେହିହିଁ ଦୀନ-ଦୁଃଖର ବଂଧୁ, କରୁଣାର ଉତ୍ସ ଏବଂ ସକଳ ସୁଖର ନିଦାନ । ସାମରିକ ଓ ଆଧ୍ୟାତ୍ମିକ, ଭକ୍ତି ଓ ସଂଗ୍ରାମ ଏହି ସ୍ୱ ଆପାତ-ବିପରୀତ ଗୁଣାବଳୀର ମିଶ୍ରଣହିଁ ଗୁରୁ ଗୋବିନ୍ଦ ସିଂଙ୍କ ରଚନା ଓ ଜୀବନର ପରମ ବୈଶିଷ୍ଟ୍ୟ । ତାହାହିଁ ତାଙ୍କୁ ଦେଇ ପାରିଲା ଧର୍ମ ଓ ଯୁଦ୍ଧର ନେତା ଭାବରେ ଅନନ୍ୟତା ।

ପାଓନ୍ତା-ଅଧିବାସ ବେଳେ ଗୁରୁଜୀ ସାଧାରଣତଃ ସକାଳର ଧ୍ୟାନ—ପ୍ରାର୍ଥନା ପରେ ଯମୁନା କୂଳେ କୂଳେ ବୁଲନ୍ତି, ଯେ ପର୍ଯ୍ୟନ୍ତ ସେ ମନୋମତ ଏକ ଶାନ୍ତ—ମନୋହର ସ୍ଥଳ ନ ପାଇଛନ୍ତି । ପାଇଲେ, ସେ ସେଠି ବସିଯାନ୍ତି ପ୍ରାୟ ତିନିଘଣ୍ଟାକାଳ ଏବଂ ଲେଖି ଚାଲନ୍ତି କବିତା । କେବେ କେବେ ଏହି ସୃଜନୀ-ପ୍ରକ୍ରିୟା ଅଧିକ ସମୟ ମଧ୍ୟ ନେଇ ଯାଉଥିଲା । ଥରେ ତାଙ୍କର "ଅକାଲ-ଉସ୍ତତି" ରଚନାବେଳେ "ତୁହି" (ତୁମେ ଭଗବାନ) ଶବ୍ଦ ଉପରେ ଏପରି ଭାବ-ବିଭୋର ହୋଇ ପଡ଼ିଲେ ଯେ, ସେ ଧ୍ୟାନମଗ୍ନ ରହିଗଲେ ପ୍ରାୟ ଷୋଳଘଣ୍ଟା କାଳ । ନିମ୍ନଲିଖିତ ଭଜନଟିରେ 'ତୁହି' ଶବ୍ଦ ଷୋଳଥର ଆତ୍ମପ୍ରକାଶ କରିଛି ।

ପାଓନ୍ତା-ଅଧିବାସ ପରେ ସେ ପ୍ରଥମେ ଆନନ୍ଦପୁରରେ ଆରମ୍ଭ କରିଥିବା "କୃଷ୍ଣାବତାର" କାବ୍ୟଟିକୁ ଶେଷ କଲେ । ପ୍ରାଚୀନ କାହାଣୀ ଓ ପୁରାଣରୁ ସେ ଏହିପରି ଅନେକ କଥାବସ୍ତୁ ସଂଗ୍ରହ କଲେ ଯାହା ନେଇ ଜାତି ଭିତରେ ସାମରିକ ଉତ୍ସାହକୁ ଜାଗ୍ରତ ଓ ବର୍ଦ୍ଧିତ କରାଯାଇ ପାରିବ । ଭାରତୀୟ ଜାତିର ପୁନର୍ଗଠନ ପାଇଁ ଭାରତର ପ୍ରାଚୀନ ଐତିହ୍ୟର ଆଶ୍ରୟ ନେବାରେ, ଗୁରୁ ଗୋବିନ୍ଦଙ୍କର କାବ୍ୟିକ ଅନ୍ତର୍ଦୃଷ୍ଟିହିଁ ସୂଚିତ ହେଉଛି । କାରଣ, ଅନ୍ୟ କୌଣସି ଉପାୟରେ ଭାରତୀୟ ଆତ୍ମାକୁ ଏପରି

ଗଣ୍ଡିଭ ଭାବରେ ସ୍ମର୍ଣ କରାଯାଇ ପାରିବ ନାହିଁ । ନିଜର ଲକ୍ଷ୍ୟ ଓ ଆଦର୍ଶ ନେଇ ଗୁରୁ ଗୋବିନ୍ଦଙ୍କ ନିଜ ଚିତ୍ତରେ କୌଣସି ପ୍ରକାର ଦ୍ୱିଧା ନଥିଲା । "କୃଷ୍ଣାବତାର"ର ସମାପ୍ତି-ସୂଚକ ଶ୍ଲୋକାବଳୀରେ ସେ ଏଇପରି ଲେଖିଛନ୍ତି:—

"ଭଗବାନଙ୍କ କାହାଣୀ ମୁଁ ହିନ୍ଦୀରେ ବର୍ଣ୍ଣନା କଲି
ହେ ପ୍ରଭୁ, ଏଥିରେ ମୋର ଏକମାତ୍ର ଉଦ୍ଦେଶ୍ୟ ରହିଲା,
ଲୋକଙ୍କୁ ଧର୍ମ-ଯୁଦ୍ଧ ଶିକ୍ଷା ଦେବା ।"

ପବିତ୍ର ଓ ଧର୍ମୀୟ କାରଣ ପାଇଁ ରଣକ୍ଷେତ୍ରରେ ସାହସିକ ଜୀବନ-ଦାନର ମହତ୍ତ୍ୱ ଓ ଗୌରବହିଁ ଗୁରୁଗୋବିନ୍ଦ ସିଂ ଜାତିପ୍ରାଣରେ ଦୃଢ଼ ପ୍ରତିଷ୍ଠା କରିବାକୁ ଚାହିଁଥିଲେ । ଏକ ଭଜନରେ ଗୁରୁଜୀ ପରମପିତାଙ୍କୁ ଏହିପରି ପ୍ରାର୍ଥନା ଜଣାଇଛନ୍ତି—

"ମତେ ଏହି ବର ଦାନ କର, ପ୍ରଭୁ,
ମୁଁ ଯେପରି ଶୁଭକର୍ମ କରିବାରେ କେବେହେଲେ
ପଶ୍ଚାଦ୍‌ପଦ ନ ହୁଏ,
ରଣକ୍ଷେତ୍ରକୁ ଯାତ୍ରା କଲାବେଳେ,
ମୋ ଭିତରେ ଶତ୍ରୁପ୍ରତି ଭୟ ଆଦୌ ନଥାଏ, ଏବଂ
ସର୍ବଦା ମୋ ପକ୍ଷକୁ ବିଜୟ ଦାନ କର ।
ମୋ ଚିତ୍ତର ଏକମାତ୍ର ବାସନା, ପ୍ରଭୁ,
ମୁଁ ଯେପରି ସର୍ବଦା ତୁମର ସ୍ତୁତି ଗାନ କରେ,
ଏବଂ ଯେତେବେଳେ ସେହି ମୁହୂର୍ତ୍ତ ଆସିଯିବ,
ସେତେବେଳେ ଯୁଦ୍ଧ କରୁ କରୁ ମୋର ଯେପରି
ମୃତ୍ୟୁ ହୁଏ ।"

ଏହିପରି ଭାବରେ କ୍ଷୁଦ୍ର ପାଓଣ୍ଟା ଦୁର୍ଗ ଏକ ଆଧ୍ୟାତ୍ମିକ ଓ ସାଂସ୍କୃତିକ ପୁନରୁତ୍ଥାନର କେନ୍ଦ୍ର ହୋଇ ଉଠିଲା । ଗୁରୁଗୋବିନ୍ଦ ସିଂଙ୍କର ପାଓଣ୍ଟାରଚିତ କାବ୍ୟ ବଳର ପରିମାଣହିଁ ବିସ୍ମୟସୂଚକ । ପୁଣି ତାଙ୍କର ନିଜର ବିପୁଳ ସୃଷ୍ଟି ସାଥିକୁ, ଥିଲା ମଧ୍ୟ ତାଙ୍କର ସଭା-କବିମାନଙ୍କର ରଚନା । କାବ୍ୟ ସୃଷ୍ଟି ଓ କାବ୍ୟ ରଚନା ନେଇ ପାଓଣ୍ଟା ଦୁର୍ଗର ସୁନାମ

ଗୃହଆଡ଼େ ବ୍ୟାପି ଯାଆନ୍ତେ, ସରସ୍ୱତୀଙ୍କର ବହୁ ସେବକ ସେଠାକୁ ଧାଇଁଲେ । ଗୁରୁଗୋବିନ୍ଦ ସିଂ ସେମାନଙ୍କ ଭିତରୁ ୫୨ ଜଣଙ୍କ ପାଇଁ ସ୍ଥାୟୀ ଗୃହକରର ଯୋଗାଡ଼ କରି ଦେଇଥିଲେ । ସେମାନଙ୍କ ଭିତରେ ଲକ୍ଷନ୍, କାଶିରାମ, ଅଣି ରାୟ ଏବଂ ଶୁକଦେବ ଇତ୍ୟାଦି ବିଶିଷ୍ଟ ପଞ୍ଜାବୀ ଲେଖକ-ମାନେ ଅନ୍ତର୍ଭୁକ୍ତ । ସେତେବେଳେ ବିଦ୍ୟା ଓ କାବ୍ୟରଚନା ସଂସ୍କୃତଜ୍ଞ ବ୍ରାହ୍ମଣମାନଙ୍କଠାରେହିଁ ଆବଦ୍ଧ ଥିଲା । ଗୁରୁଗୋବିନ୍ଦ ସିଂ ଜ୍ଞାନର ଏହି ଏକଚାଟିଆ ବ୍ୟବସାୟ ଭାଙ୍ଗିବା ଲକ୍ଷ୍ୟରେ, ପାଞ୍ଚ ଜଣ ଶିଖ୍‌ଙ୍କୁ ବନାରସ ପଠାଇଲେ, ସଂସ୍କୃତ ପଢ଼ିବାକୁ । ଏହିମାନେହିଁ ହେଲେ ଶିଖ୍‌ମାନଙ୍କ ଭିତରେ "ନିର୍ମଳ-ସାହିତ୍ୟ-ମଣ୍ଡଳୀ"ର ସ୍ଥାପକ । ଏମାନଙ୍କର ଅଭ୍ୟୁଦୟ ପରେ ବିଦ୍ୟା କେବଳ ଉଚ୍ଚଜାତିମାନଙ୍କ ନିକଟରେ ଆଉ ଆବଦ୍ଧ ରହିଲା ନାହିଁ । ଥରେ ସାଧାରଣ ରୋଷେଇଶାଳରେ କାମ କରୁଥିବା ଏକ ନିମ୍ନ ଶ୍ରେଣୀର ଶିଖ୍, ଗୁରୁଜୀଙ୍କ ଇଙ୍ଗିତରେ, ଗୁରୁଜୀଙ୍କର ଏକ ଦୋହାର ପାଣ୍ଡିତ୍ୟପୂର୍ଣ୍ଣ ବ୍ୟାଖ୍ୟା କରି, ଜନୈକ ସଂସ୍କୃତଜ୍ଞ ବ୍ରାହ୍ମଣ ପଣ୍ଡିତଙ୍କୁ ବିସ୍ମିତ କରାଇ ଦେଇଥିଲା ।

ସଭା-କବିମାନେ ଗୁରୁ ଗୋବିନ୍ଦ ସିଂଙ୍କର କେବଳ ସ୍ତୁତିବାଦ କରୁ ନ ଥିଲେ । ସେମାନେ ହାସ୍ୟ, କରୁଣ, ଶୃଙ୍ଗାରାଦି ସକଳ ରସକୁ ଆଶ୍ରୟ କରି କାବ୍ୟ-କବିତା ଲେଖୁଥିଲେ ଏବଂ ସେଥିପାଇଁ ପ୍ରଚୁର ଭାବରେ ପୁରସ୍କୃତ ହେଉଥିଲେ । ହଂସ ନାମକ କବି ମହାଭାରତର କର୍ଣ୍ଣ-ପର୍ବ ଅନୁବାଦ କରି ଦେବାରୁ, ଗୁରୁଜୀ ତାଙ୍କୁ ୬୦ ହଜାର ଟଙ୍କା ଉପହାର ଦେଇଥିଲେ । ଏହିପରି ଭାବରେ ପଞ୍ଜାବୀ ଓ ବ୍ରଜବୋଲି ଭାଷାରେ ବିରାଟ ସାହିତ୍ୟ ଗଢ଼ି ଉଠିଥିଲା । ଏହି କାମ ପାଓଣ୍ଟାରୁ ଯାଇ ଆନନ୍ଦପୁରରେ ମଧ୍ୟ ଚାଲୁ ରହିଲା । ସେଠାରେ ଗୁରୁଜୀ ଥରେ ଜମା ହୋଇଥିବା ପାଣ୍ଡୁଲିପି-ଗୁଡ଼ିକୁ କୌତୁକରେ ଓଜନ କରାଇବାରେ, ଓଜନ ହେଲା ୯ ମହଣ । ଏସବୁ ପରେ "ବିଦ୍ୟାଗାର" ନାମ ଧାରଣ କରି ଏକତ୍ର ସଂପାଦିତ ହୋଇଥିଲା ଏବଂ ଗୁରୁ ଗୋବିନ୍ଦ ସିଂ ଏହି ଗ୍ରନ୍ଥମାଳାକୁ ଖୁବ୍ ଉଚ୍ଚ ମୂଲ୍ୟ ଦେଉଥିଲେ । କିନ୍ତୁ ଦୁଃଖର ବିଷୟ ଏହିଯେ, ମୋଗଲ ଓ ପାର୍ବତ୍ୟ ରାଜାମାନଙ୍କ ସହିତ ଦୀର୍ଘ ସଂଗ୍ରାମ ପରେ ଗୁରୁଜୀ ଏକଦା ଯେତେବେଳେ ଆନନ୍ଦପୁର ତ୍ୟାଗ କରିବାକୁ ବାଧହେଲେ, ସେତେବେଳେ ସାର୍ସା ନଦୀର ବନ୍ୟାରେ ଏହି ଅମୂଲ୍ୟ ଗ୍ରନ୍ଥରାଜି ଭାସିଗଲା । ଏହାଫଳରେ ପଞ୍ଜାବୀ ସାହିତ୍ୟର ଯାହା କ୍ଷତି ହୋଇଛି, ତାହା ଏ ପର୍ଯ୍ୟନ୍ତ ଅପୂରଣୀୟ ରହିଛି ।

ଗୁରୁ ଗୋବିନ୍ଦଙ୍କର ନିଜର ରଚନାଗୁଡ଼ିକ ଏକତ୍ରରେ "ଦଶମ ଗ୍ରନ୍ଥ" ନାମରେ ପରିଚିତ, ଯେହେତୁ ଏହା ସେହି ଦଶମ ଗୁରୁ ରଚିତ, ଯେପରି ପ୍ରଥମ ଗୁରୁ ରଚିତ ଗ୍ରନ୍ଥକୁ ଶିଖମାନେ "ଆଦିଗ୍ରନ୍ଥ" କହନ୍ତି । ଏହି ଆଦିଗ୍ରନ୍ଥ ହିଁ ଶିଖ୍ ମାନଙ୍କର ପବିତ୍ର ଗ୍ରନ୍ଥସାହେବ । 'ଦଶମ ଗ୍ରନ୍ଥ'ର 'ଜପ ସାହିବ୍' ଓ 'ତ୍ୱପ୍ରିପ୍ରସାଦ ସ୍ୱୈୟେ' ଶିଖ୍ ମାନଙ୍କର ଦୈନନ୍ଦିନ ପଞ୍ଚ-ପ୍ରାର୍ଥନା ଅନ୍ତର୍ଗତ । 'ଜପ ସାହିବ୍' ଦଶଟି ଭିନ୍ନ ଭିନ୍ନ ଛନ୍ଦରେ ରଚିତ ୮୦୦ ଶ୍ଳୋକ ଏବଂ ଭଗବତ୍ ସ୍ତୁତି ଭାବରେ ସମଗ୍ର ବିଶ୍ୱସାହିତ୍ୟରେ ଏକ ଉଚ୍ଚାଙ୍ଗ ସୃଷ୍ଟି । ଉଭୟ ଭାବ ଓ ଗଠନରେ ଏହାର ବିଶୁଦ୍ଧତା ଅଛି । ଅଥଚ ଏହାର ଶବ୍ଦ ଯୋଜନା ଓ ଭାବ-କଳ୍ପର ନୂତନତ୍ୱ ଏବଂ ବ୍ୟବହୃତ ଛନ୍ଦମାନଙ୍କର ସାବଲୀଳ ଓ ସାଂଗିତିକ ଗତି ପାଠକ ଚିତ୍ତରେ ଏକ ଗଭୀର କାବ୍ୟିକ ସ୍ପର୍ଶ ଦେଇଯାଏ । ଗୁରୁଜୀଙ୍କ ଲେଖନୀପ୍ରସୂତ 'ଅକାଳ ଉସ୍ତାତ୍', 'ଶବ୍ଦ ହଜାରେ', ଏବଂ 'ଶ୍ରୀମୁଖବାକ୍ ସ୍ୱୈୟେ' ମଧ୍ୟ ଈଶ୍ୱର-ସ୍ତୁତି । 'ଶସ୍ତ୍ର ନାମମାଳା' ଯୁଦ୍ଧରେ ବ୍ୟବହୃତ ଅସ୍ତ୍ର ଶସ୍ତ୍ରର ନାମ ସମ୍ବଳିତ ସେଗୁଡ଼ିକର ପୌରାଣିକ ତାତ୍ପର୍ଯ୍ୟ ଓ ସେଗୁଡ଼ିକ କେଉଁଠି କିପରି କେଉଁ ଅବସ୍ଥାରେ ବ୍ୟବହୃତ ହୋଇଥିଲେ, ତାର ବର୍ଣ୍ଣନା ଦେଇଛି । ଗୁରୁଜୀଙ୍କର 'ଜ୍ଞାନ ପ୍ରବୋଧ ଗ୍ରନ୍ଥ'ରେ ଦାର୍ଶନିକ ତତ୍ତ୍ୱର ବାସ୍ତବ ପ୍ରୟୋଗର ଚେଷ୍ଟା ହୋଇଛି । ବିଷ୍ଣୁଙ୍କର ଚବିଶ ଅବତାରରେ ବିମୂର୍ତ୍ତିକର ଲୀଳାସବୁ 'ଚୌବିଂଶ ଅବତାର'ରେ ବର୍ଣ୍ଣିତ ଏବଂ ପୂର୍ବେ ଯେପରି କୁହାଯାଇଛି, 'ଚଣ୍ଡୀ ଚରିତ୍ର, ପ୍ରଥମ ଓ ଦ୍ୱିତୀୟ ଭାଗ' ଏବଂ 'ଭାର ଶ୍ରୀ ଭଗବତୀଜୀକି' ରେ ପୌରାଣିକ ଦୁର୍ଗା-ଉପାଖ୍ୟାନକୁ ପୁନର୍ଜନ୍ମ ଦିଆ ଯାଇଛି ।

ଗୁରୁ ଗୋବିନ୍ଦ ସିଂଙ୍କର ସମସ୍ତ ରଚନା ଭିତରେ ଆମେ ମୋଟାମୋଟି ପାଉ ତାଂକର କାବ୍ୟିକ କଳ୍ପନା-ଶକ୍ତି ଏବଂ ଆଧ୍ୟାତ୍ମିକ ଅନ୍ତର୍ଦୃଷ୍ଟି । ସେଗୁଡ଼ିକରେ ଆମେ ପୁରାଣ, ଦର୍ଶନ, ଜ୍ୟୋତିର୍ବିଦ୍ୟା, ମନସ୍ତତ୍ତ୍ୱ, ଭୂଗୋଳ, ବୃକ୍ଷବିଜ୍ଞାନ, ଆୟୁର୍ବେଦ ଏବଂ ସମରବିଦ୍ୟା ଇତ୍ୟାଦି ମାନବ ଜ୍ଞାନର ନାନା ବିଭାଗରେ ତାଙ୍କର ଅସାଧାରଣ ଅବବୋଧ ଦେଖି ମଧ୍ୟ ବିସ୍ମିତ ହେଉଁ । ବ୍ରଜବୋଲି, ଆଉଧି, ଆରବୀ, ପାର୍ସି ଓ ପଞ୍ଜାବୀ ପ୍ରଭୃତି ନାନା ଭାଷାରେ ମଧ୍ୟ ତାଂକର ଦଖଲ ଥିଲା । ସେତେବେଳେ ବ୍ରଜବୋଲିହିଁ ସେ ଅଂଚଳରେ ସାହିତ୍ୟିକ ଭାଷା ଥିଲା ଏବଂ ଗୁରୁଜୀଙ୍କର ଅଧିକାଂଶ ରଚନା ତେଣୁ ଥିଲା ସେହି ଭାଷାରେ । ଖାଣ୍ଟି ପଞ୍ଜାବୀ ଭାଷାରେ ତାଂକର

ଏକମାତ୍ର ପ୍ରଧାନ ପୁସ୍ତକ ହେଉଛି, 'ଭାର-ଶ୍ରୀ ଭଗବତ୍ତାଜୀକ' । ତାଂକର ଶବ୍ଦ ଯୋଜନାରେ ରହସ୍ୟମୟ କ୍ଷମତା ଥିବାରୁ, ସେ ନାନା ଭାବ, ଅବସ୍ଥା ଓ ଧ୍ୱନିକୁ ସାବଲୀଳତାର ସହିତ ବର୍ଣ୍ଣି ପାରୁଥିଲେ । ସେହି ସାବଲୀଳତା, ଗିରିସ୍ରୋତର ଅବାରିତ ପ୍ରବାହ ବା କ୍ଷିପ୍ରଗାମୀ ଅଶ୍ୱର ଧାବନ ସହିତ ହିଁ ତୁଳନୀୟ । ତାଂକ ପଦାବଳୀର ସଂଗୀତ ମହାନ୍ତରୀକ୍ଷରେ ଜ୍ୟୋତିଷ୍କ ମଣ୍ଡଳର-ଘୂର୍ଣ୍ଣନ-ଜନିତ-କଳ୍ପିତ ସଂଗୀତ ସହିତ ବା ତୁଳନୀୟ ହୋଇପାରେ । ସେ ପ୍ରାଚୀନ ଅନେକ ଗ୍ରନ୍ଥ ଗ୍ରହଣ କରିଥିଲେ ହେ, ତାଂକର ନିଜସ୍ୱ ଗ୍ରନ୍ଥର ସଂଖ୍ୟା ମଧ୍ୟ ପ୍ରଚୁର । ସେହିପରି ନିଜର ଶ୍ଳୋକାବଳୀକୁ ଅଳଂକୃତ ଓ ଅର୍ଥ ପୂର୍ଣ୍ଣ କରିବା ପାଇଁ ସେ ଅଗଣିତ ନୂତନ ଉପମା ଓ ପ୍ରତୀକ ବ୍ୟବହାର କରି ଯାଇଛନ୍ତି । ପଞ୍ଜାବୀ ସାହିତ୍ୟରେ, ଉଦାତ୍ତ ସ୍ୱର ପାଇଁ, ରୂପ-କଳ୍ପର ପ୍ରାଚୁର୍ଯ୍ୟ ପାଇଁ ଏବଂ ଧ୍ୱନିର ଝଂକାର ପାଇଁ, ଗୁରୁ ଗୋବିନ୍ଦ ସିଂଙ୍କ କବିତା ଏ ପର୍ଯ୍ୟନ୍ତ ଅନୁପମ ହୋଇ ରହିଛି । ଏହା ଅଗଣିତ ଭାରତୀୟଙ୍କୁ ଉଦ୍‌ବୁଦ୍ଧ କରି ଆସିଛି ଏବଂ ଭାରତୀୟ ସାହିତ୍ୟକୁ ପୁନର୍ଜୀବିତ ଓ ବୃଦ୍ଧିମନ୍ତ କରିପାରିଛି ।

କିନ୍ତୁ ଗୁରୁଜୀ, କବିର ଯଶ ପାଇଁ କେବଳ କବିତା ଲେଖି ନ ଥିଲେ । ତାଙ୍କପାଇଁ କାବ୍ୟ-କବିତା ଥିଲା, ସୃଷ୍ଟିର ପଛରେ ଥିବା ଦୈବଶକ୍ତିକୁ ଏବଂ ସେହି ଶକ୍ତି ଯେପରି ଭାବରେ ତାଙ୍କର ବ୍ୟକ୍ତିଗତ ଅଭିଜ୍ଞତା ଭିତରକୁ ଆସି ପାରିଥିଲା, ତାହା ଜଗତକୁ ଦେଖାଇଦେବା । ସେ ସକଳ ଅନ୍ଧ ଓ ଅଜ୍ଞ ବିଶ୍ୱାସକୁ ଏବଂ ବିଶେଷରେ ପ୍ରତିମା ପୂଜାକୁ ନାପସନ୍ଦ କରି ଏକମାତ୍ର ପରମ ପୁରୁଷଙ୍କର ଆରାଧନାହିଁ ପ୍ରଚାର କରିଯାଇଛନ୍ତି । ତାଙ୍କର ଖଡଗ୍ ମହିମା ପ୍ରଚାର ଭିତରେ ଥିଲା ଈଶ୍ୱରଙ୍କର ନ୍ୟାୟଶୀଳତାର ବ୍ୟାଖ୍ୟାନ । ତାଙ୍କ ପାଇଁ 'ଖଡଗ୍' କେବେ ପରାକ୍ରମଣ ବା ଆତ୍ମ-ପରିବର୍ଦ୍ଧନର ପ୍ରତୀକ ନ ଥିଲା । ତାଙ୍କ ଦର୍ଶନରେ 'ଖଡଗ୍' ଥିଲା ସତ୍ୟ ଓ ନ୍ୟାୟର ରକ୍ଷଣ ପାଇଁ ସତ୍‌କର୍ମ ଓ ସାହସିକ କର୍ମର ପ୍ରତୀକ ମାତ୍ର । ଏହା ଥିଲା ପୌରୁଷ ଓ ଆତ୍ମ-ସମ୍ମାନର ଚିହ୍ନ ଏବଂ କେବଳ ଗତ୍ୟନ୍ତର ନ ଥିବା ସ୍ଥଳେ, ଆତ୍ମରକ୍ଷା ପାଇଁହିଁ ଶେଷ ଅବସ୍ଥାରେ ଏହା ବ୍ୟବହୃତ ହେବାର କଥା । ଗୁରୁ ଗୋବିନ୍ଦ କହିଛନ୍ତି :—

"ସକଳ ଉପାୟ ହେଲେ ବିଫଳ,
ଖାପରୁ କୃପାଣ ବାହାର କର ।"

---

# ଷଷ୍ଠ ଅଧ୍ୟାୟ

## ଅକାଲଙ୍କ କୃପାରେ ବିଜୟ ।

ପାଓଣ୍ଟା ଦୁର୍ଗର ଏହି ଶାନ୍ତ, କାବ୍ୟଭାରାକ୍ରାନ୍ତ ବାୟୁମଣ୍ଡଳ ଏକ ଆକସ୍ମିକ ଓ ଅନାକାଂକ୍ଷିତ ସଂଘର୍ଷ ଦ୍ୱାରା ଦିନେ ବିକ୍ଷୁବ୍‍ଧ ହୋଇ ଉଠିଲା । ଆଉରଙ୍ଗଜେବ, ଦାକ୍ଷିଣାତ୍ୟରେ ଯୁଦ୍ଧରେ ବ୍ୟସ୍ତ ରହିଥିବାରୁ ଉତ୍ତରରେ ଯାହା ଘଟୁଥିଲା, ସେ ସବୁ କଥା ହୁଏତ ଜାଣୁ ନଥିଲେ ବା ଜାଣି ସେ ସବୁକୁ ସେ ପରିସ୍ଥିତିରେ ଗୌଣ ମନେ କରୁଥିଲେ । କିନ୍ତୁ ବିଦେଶୀ ମୋଗଲ ରାଜାର ଅନ୍ଧଭକ୍ତ ପାର୍ବତ୍ୟ ସାମନ୍ତ ରାଜାମାନଙ୍କ ଈର୍ଷା ଯୋଗୁଁ ଆନନ୍ଦପୁର କୁ ବିପଦର ଆଶଂକା ଘନୀଭୂତ ହୋଇ ଆସୁଥିଲା । ସେମାନେ ସେଇମାନଙ୍କ ପାଖେ ପାଖେ ଶିଖ୍ ସଂପ୍ରଦାୟ ଓ ବିଶେଷ କରି ଗୁରୁ ଗୋବିନ୍ଦ ସିଂଙ୍କର ଅଭ୍ୟୁଦୟ ସହ୍ଯ କରି ପାରୁ ନଥିଲେ ବିଳାସପୁରର ରାଜା ଭୀମଚନ୍ଦ୍ରଙ୍କ ଅସୂୟା-ଜନିତ କୁଭାବନାର ସଂକେତ ପୂର୍ବରୁ ଦିଆଯାଇଛି । ସେହି ଷଡ଼ଯନ୍ତ୍ର ଏତେବେଳକୁ କ୍ରମେ ଆସ୍ତେ ପରିପକ୍ୱ ହୋଇ ଆସିଲାଣି । ରାଜା ଭୀମଚନ୍ଦ୍ରଙ୍କ ପୁଅ ଶ୍ରୀନଗରର ରାଜା ଫତେ ସାହାଙ୍କ କନ୍ୟାଙ୍କୁ ବିବାହ କଲେ । ଯୋଜନା ହେଲାଯେ, ବରଯାତ୍ରୀ ସାମନ୍ତ ରାଜାମାନେ ଶ୍ରୀନଗରରୁ ଫେରିବା ବାଟରେ ପାଓଣ୍ଟା ଆକ୍ରମଣ କରିବେ । ନିଷ୍ପାପ ଗୁରୁ ଗୋବିନ୍ଦ ସିଂଙ୍କୁ, ନିଜର ଏହି ପରିଚିତ ଲୋକେ ଏପରି ଅପକର୍ମ କାହିଁକି କରିବାକୁ ଗଲେ, ତାହା ସର୍ବଦା ରହସ୍ୟମୟ ହୋଇ ରହି ଆସିଛି । ସେ ସେଥିପାଇଁ "ବିଚିତ୍ର ନାଟକ"ରେ କହିଛନ୍ତି ଯେ— "ରାଜା ଫତେ ସାହା ମୋସାଙ୍ଗେ ଯେ ଲଢ଼ାଇ କଲେ, ତାହାର କୌଣସି ହେଲେ ହେତୁ ବା ଲକ୍ଷ୍ୟ ନଥିଲା ।" ବରଂ, ଗୁରୁଜୀ ରାଜା ଫତେସିଂକ କଲ୍ୟାଣକାମୀ ହୋଇ ତାଂକର ପ୍ରତିଯୋଗୀ ଶିରମୁର ରାଜାଂକ ସହିତ ଥିବା ଦୀର୍ଘ ବିବାଦ ଆପୋଷରେ ତୁଟାଇ ଦେଇଥିଲେ ଏବଂ ତାଂକ କନ୍ୟାର ବିବାହ ବେଳେ ପ୍ରଚୁର ଉପହାର ପ୍ରେରଣ କରିଥିଲେ । ତାଂକର ସମ୍ବନ୍ଧୀ ବିଳାସପୁରର ରାଜା ଭୀମଚନ୍ଦ୍ରଂକ ପ୍ରରୋଚନାରେ, ସେ କିନ୍ତୁ ସମସ୍ତ ଭଦ୍ରତା ହରାଇ, ସେହି ଉପହାରଗୁଡ଼ିକୁ ଫେରାଇ ଦେଇ, ଗୁରୁଜୀଂକୁ ଅନ୍ୟମାନଂକ ସହିତ ଆକ୍ରମଣ କରିବାରେ ଯୋଗ ଦେଲେ ।

ଆକ୍ରମଣର ସୂଚନା ପାଇ ଗୁରୁ ଗୋବିନ୍ଦ ସିଂ ଶତ୍ରୁମାନଙ୍କୁ ପାଓନ୍ତା-ଠାରୁ ଛଅମାଇଲ୍ ଦୂରରେ ଭଗାନି ନାମକ ସ୍ଥାନରେ ଭେଟିଲେ । ଲଢ଼ାଇ ଆରମ୍ଭ ହେବାର ପ୍ରାକ୍‌କାଳରେ ଗୁରୁଜୀଙ୍କର ପାଁଚ ଶତ ପଠାଣସୈନ୍ୟ ବିଶ୍ୱାସଘାତକତା କରି ରାଜାମାନଙ୍କ ପକ୍ଷକୁ ବାହାରି ଗଲେ । ଏଗୁଡ଼ାକ ମୋଗଲ ସେନାବାହିନୀରୁ ପୂର୍ବେ ବିତାଡ଼ିତ ହୋଇଥିଲେ । କିନ୍ତୁ ସୈୟଦ ପୀର୍ ବୁଧ୍ ସା ନାମକ ଗୁରୁଜୀଙ୍କର ଏକ ମୁସଲମାନ ଶିଷ୍ୟର ସୁପାରିଶ ଯୋଗୁଁହିଁ ସେ ସେମାନଙ୍କୁ ନିଜ ବାହିନୀରେ ସ୍ଥାନ ଦେଇଥିଲେ ଏବଂ ନିଜ ପାଖରେ ପାଓନ୍ତାଦୁର୍ଗର ରକ୍ଷୀ ଭାବରେ ସେମାନଙ୍କୁ ସ୍ଥାପିତ କରିଥିଲେ । ଆହୁରି ମଜାର କଥା ଯେ ଆନନ୍ଦପୁରରୁ ଅଣାଯାଇଥିବା ଉଦାସୀ-ଦଳ ମଧ୍ୟ ଯୁଦ୍ଧ ଆରମ୍ଭ ନ ହେଉଣୁ ପ୍ରାଣ ଭୟରେ ସ୍ଥାନଛାଡ଼ି ପଳାଇଗଲେ । ରହିଲେ ଯାହାହେଉ, ସେମାନଙ୍କର ଦଳପତି ମହନ୍ତ କର୍ପାଲ୍ ଏବଂ ଯୁଦ୍ଧକ୍ଷେତ୍ରରେ ଅପୂର୍ବ ଶୌର୍ଯ୍ୟ ପ୍ରଦର୍ଶନ କରି ସେ ନିଜ ଦଳର ଭୀରୁତାର ପ୍ରାୟଶ୍ଚିତ୍ତ କଲେ । ପୁଣି, ଏହି ସୁଯୋଗ-ସନ୍ଧୀ ଅର୍ଥଲୋଲୁପବଂଧୁମାନଙ୍କର ପକ୍ଷ ତ୍ୟାଗର ସାମୁହିକ ପ୍ରାୟଶ୍ଚିତ୍ତ ମଧ୍ୟ କଲେ, ଅନୁଗତ ବଂଧ ପୀର ବୁଧୁ ସା, ତାଙ୍କର ଚାରିପୁଅ ଓ ସାତଶତ ସୈନିକ ସହିତ, ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହୋଇ ଏମାନଙ୍କ ସାଥୀକ ଅବଶ୍ୟ ଗୁରୁଙ୍କର ଅନୁଗତ ବହୁସଂଖ୍ୟକ ଶିଖ ଥିଲେ, ଯେଉଁମାନେ ଯୁଦ୍ଧପାଇଁ ବିଶେଷ ଭାବରେ ତାଲିମ୍‌ପ୍ରାପ୍ତ ନ ହୋଇଥିଲେ ମଧ୍ୟ, ଗୁରୁଙ୍କପାଇଁ ଖୁସୀରେ ପ୍ରାଣ ଦେବାକୁ ତିଆରି ଥିଲେ । ପକ୍ଷତ୍ୟାଗୀ ପଠାଣ ସୈନ୍ୟମାନେ ଗଲାବେଳେ ଥଟ୍ଟାକରି କହିଥିଲେ ଯେ, ସେମାନେ ତ ଗଲେ, ଲଢ଼େଇବେଳେ ଗୁରୁଙ୍କ ବେତଭୁକ୍ ଗୋଠ କମିତି ଲଢ଼ିବେ, ଦେଖିବାକୁ ବଡ଼ ମଜା ହେବ । କିନ୍ତୁ ଗୁରୁଙ୍କ ଶିଷ୍ୟବର୍ଗ ସହଜାତ ବିଶ୍ୱାସ ଓ ଉତ୍ସାହ ଯୋଗୁ ପଠାଣମାନଙ୍କର ଥଟ୍ଟାର ଉଚିତ ଜବାବ୍ ଦେଇଥିଲେ ।

ଗୁରୁ ଗୋବିନ୍ଦସିଂ ଯମୁନା ଓ ତାର ଉପନଦୀ, ଗିରି,—ଏହି ଦୁଇ ନଦୀ ମଝିରେ ନିଜେ ସୈନ୍ୟ ସମାବେଶ କରିଥିଲେ । ଏହା ତାଙ୍କୁ ଖୁବ୍ ସୁବିଧାଜନକ ହୋଇଥିଲା । ଏହାହିଁ ପ୍ରମାଣକରେ, ତରୁଣ ଓ ଅନଭିଜ୍ଞ ହେଲେହେଁ ରଣ-ଚାତୁର୍ଯ୍ୟ ଗୁରୁଙ୍କର କିପରି ସହଜାତ ଥିଲା । ସେ ପୁଣି ନିଜର ପାଞ୍ଚ କୁଟୁମ୍ବୀ ଭାଇ—ସାଂଗୋ ସା, ଜିତମଲ, ଗୋପାଳ ଚାନ୍ଦ, ଗଙ୍ଗା ରାମ୍ ଶାହ୍ ଚାନ୍ଦ୍ —ମାନଙ୍କୁ ନିଜର ବାହିନୀର ପାଂଚଟି ବିଭାଗର ମୁଖ୍ୟ ଦାୟିତ୍ୱ ଦେଇଥିଲେ ରଣଭୂମିରେ ବିଶ୍ୱସ୍ତତା ପାଇଁ ।

ଲଢ଼ାଇ ଆରମ୍ଭ ହେବାମାତ୍ରେ ଭୀଷଣ ବେଗ ଧାରଣ କଲା । ପଳାତକ ପଠାଣମାନେ ଧ୍ୱଂସ୍ଆଚାର ବନ୍ଦ ଛାଡ଼ିବାକୁ ଲାଗିଲେ । ସେମାନଙ୍କର ଏକ ଦଳପତି ହାୟାତ୍ ଖାନ୍, ଶିଖ୍-ବାହିନୀର ବହୁ ଅନିଷ୍ଟ କରି ପାରିଲା । କିନ୍ତୁ ମହନ୍ତ କୀରପାଲ, ଗଦା ହସ୍ତରେ ବାହାରି ପଡ଼ି ତାର ସମ୍ମୁଖୀନ ହେଲେ ଓ ଦ୍ୱନ୍ଦ୍ୱ ଯୁଦ୍ଧ ପାଇଁ ଆହ୍ୱାନ କଲେ । ହାୟାତ୍ ଖାଁ ଗୋଟାଏ ଯଷ୍ଟିହସ୍ତ ମହନ୍ତଟା ସାଥିରେ କି ଲଢ଼େଇ କରିବ ବୋଲି ଖାତିରଇ କଲାନି । କିନ୍ତୁ ମହନ୍ତ ତାକୁ ଦୁଇଥର ଡାକି ଦେଅନ୍ତେ ସେ ନିଜର ପ୍ରଚଣ୍ଡ ଖଣ୍ଡାରେ ମହନ୍ତ ଉପରେ ଏକ ଦୁର୍ଦ୍ଦାନ୍ତ ଆଘାତ ଛେଚିଲା । କିନ୍ତୁ ଶକ୍ତିମାନ ମହନ୍ତ ନିଜ ଗଦାରେହିଁ ସେ ମାଡ଼ଟାକୁ ସମ୍ଭାଳି ନେଇ, ସହସା ନିଜ ଅଶ୍ୱର ପା-ଦାନ୍‌ରେ ହସ୍ତ-ଶୀର୍ଷରେ ଠିଆ ହୋଇପଡ଼ି ଏବଂ ଉଦାତ୍ତ କଣ୍ଠରେ "ସତଶ୍ରୀ ଅକାଳ" ଧ୍ୱନିରେ ରଣଭୂମି ପ୍ରକମ୍ପିତ କରି, ହାୟାତ୍ ଖାନ୍‌ର ମସ୍ତକରେ ସ୍ୱଗଦାରେ ଏପରି ଏକ ଦୁର୍ଦ୍ଧର୍ଷ ପ୍ରହାର ଦେଲେ ଯେ, ତାହାର ମୁଣ୍ଡଟା ଏକାବେଳକେ ଚୂନା ହୋଇଗଲା । 'ବିଚିତ୍ର ନାଟକ'ରେ ଗୁରୁଗୋବିନ୍ଦ, ଜୀବନ-ରଙ୍ଗରେ ଏହି ଦୃଶ୍ୟ ଚିତ୍ରିତ କରି ଯାଇଛନ୍ତି । ସେ ଲେଖିଛନ୍ତି — "କ୍ରୋଧ ବିକମ୍ପିତ ମହନ୍ତ କିର୍ପାଲ୍ ଗଦା ଉତ୍ତୋଳନ କରି ହାୟାତ୍ ଖାନ୍ ମସ୍ତକରେ ଆଘାତ ବର୍ଷଣ କରନ୍ତେ, ତାର ମୁଣ୍ଡରୁ ମସ୍ତିଷ୍କ ଗୁଡ଼ାକ, କୃଷ୍ଣଙ୍କ ଦୁଷ୍ଟାମିରେ ଗୋପିମାମାନଙ୍କର ହାଣ୍ଡିରୁ ଲହୁଣୀପାକ, ଭାସି ଆସିଲା ପରି, ବୋହି ଚାଲିଗଲା । ରୋଷାନ୍ୱିତ ନାନ୍‌ଚାନ୍ଦ କେତେବେଳେ ବର୍ଚ୍ଛା କେତେବେଳେ ତଲବାର ଚାଳନା କରି ଚାଲିଲେ । ଏହି ଖାଷ୍‌ଣଧାର ହାତିଆର ମଧ୍ୟ ଭାଙ୍ଗିଯାନ୍ତେ ସେ ନିଜ ଯୋଧ-ଗୋଷ୍ଠୀର ଗୌରବ ପାଇଁ ନିଜର ଛୁରୀ ଯେନ ମଧ୍ୟ ଲଢେଇ କରୁଥାନ୍ତି । ମୋର ମାତୁଳ କିର୍ପାଲ ବହୁ ଶରବିଦ୍ଧ ହେଲେହେଁ, ବହୁ ପଠାଣଦଳପତିଙ୍କୁ ସେ ଅଶ୍ୱ-ଚ୍ୟୁତ କରାଇ ନେଇଥିଲେ । ପକ୍କା ସୈନିକ, ସାହେବ ଚାନ୍ଦ ଶତ୍ରୁରକ୍ତପିପାସୁ ବହୁ ଶତ୍ରୁଙ୍କୁ ନାଶକଲେ । ଶତ୍ରୁ ପକ୍ଷର ବହୁ ବୀର ମୃତ ହେଲେ, ଜୀବିତମାନେ ପଳାୟନ କଲେ ସେନାପତି ସାଙ୍ଗୋ ସାହା ବହୁ ପଠାଣଙ୍କୁ ପଦଦଳିତ କରି ନିଜ ପଦର ସମ୍ମାନ ରକ୍ଷା କଲେ ।" ଗୁରୁଜୀ, ତାଂକ ପକ୍ଷରେ ଯୋଗ ଦେଇଥିବା ପାର୍ବତ୍ୟ ରାଜା ହରିଚାନ୍ଦଙ୍କ ସାହସକୁ ମଧ୍ୟ ପ୍ରଶଂସା କରିଛନ୍ତି । "ସାହସିକ ହରିଚାନ୍ଦ ରଣକ୍ଷେତ୍ରରେ ଅଟଳ ହୋଇ ଦଣ୍ଡାୟମାନ ରହିଲେ ଏବଂ ସ୍ୱଶରାଘାତରେ ଗୋଟାକ ପରେ ଗୋଟାଏ ଶତ୍ରୁକୁ ଭୂପତିତ କରି ଚାଲିଲେ ।"

କିନ୍ତୁ ଏହି ହରିଚନ୍ଦ ଓ ଗୁରୁଙ୍କ କୁଟୁମ୍ବିକ ଭାଇ ଜିତମଲ୍, ଦୁହେଁ ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରାଣ ହରାଇଥିଲେ । ଆଜି ଏକ ଦ୍ୱନ୍ଦ୍ୱ ଯୁଦ୍ଧରେ ସାଙ୍ଗୋଶା ଓ ପଠାଣ ଦଳପତି ନଜାବତ୍ ଖାଁ ଉଭୟେ ଜୀବନ ହରାଇଥିଲେ । ଏତିକିବେଳେ ସ୍ୱୟଂ ଗୁରୁଗୋବିନ୍ଦ ଅଶ୍ୱପୃଷ୍ଠରେ ରଣକ୍ଷେତ୍ରରେ ପ୍ରବେଶ କଲେ । ସେ ପ୍ରଥମେ ଆର ପଟର ହରିଚନ୍ଦ ନାମକ ଶତ୍ରୁକୁ ଭେଟିଲେ । 'ବିଚିତ୍ର ନାଟକ'ରେ ସେଇ ଲଢ଼ାଇ ଏହିପରି ବର୍ଣ୍ଣିତ ଅଛି— ହରିଚନ୍ଦ କ୍ରୋଧରେ ଶର ଫିଙ୍ଗିବାକୁ ଲାଗିଲେ । ସେ ପ୍ରଥମେ ମୋ ଅଶ୍ୱକୁ ଓ ପରେ ମତେ ଲକ୍ଷ୍ୟ କରି ଶର ହାଣିଲେ । ଭାଗ୍ୟେ ପ୍ରଥମ ଶରଟି ମୋର କାନ ଦେଇ ଚାଲି ଗଲା ଓ ମତେ ଭଗବାନ ରକ୍ଷା କଲେ । ତାଂକର ତୃତୀୟଶର ମୋର କମରବନ୍ଧ ଭେଦ କରି ମୋର ଶରୀରକୁ ଛୁଇଁଲା, କିନ୍ତୁ ଦେହରେ କୌଣସି ଆଘାତ କରି ପାରିଲା ନାହିଁ । କିନ୍ତୁ ମୋର ଶରୀରରେ ଶର-ମୁନର ସ୍ପର୍ଶ ଲାଗନ୍ତେ ମୋର ରକ୍ତ ଉଷ୍ମ ହୋଇ ଉଠିଲା ଏବଂ ମୁଁ ବର୍ତ୍ତମାନ ଧନୁ ଉଠାଇ ଶର ନିକ୍ଷେପ କରି ଚାଲିଲି । ଏହା ଫଳରେ ମୋର ବୈରୀମାନେ ପଳାୟନ କରିବାକୁ ଲାଗିଲେ । ମୁଁ ଲକ୍ଷ୍ୟ କରି ଶର ମାରନ୍ତେ ତରୁଣ ସାମନ୍ତ ହରିଚନ୍ଦ ପଞ୍ଚତ୍ୱ ପ୍ରାପ୍ତ ହେଲେ ଏବଂ ପାର୍ବତ୍ୟ ସୈନିକମାନେ ପ୍ରାଣ ଭୟରେ ପଳାଇବାକୁ ଲାଗିଲେ । ଅକାଳଂକ ପ୍ରସାଦରୁ ଆମ୍ଭମାନଙ୍କର ବିଜୟ ହାସଲ ହେଲା !"

ଯୁଦ୍ଧ ଶେଷରେ, ସାଙ୍ଗୋସା, ଜିତମଲ ଏବଂ ଅନ୍ୟ ମୃତ ବୀରମାନଙ୍କର ସ୍ୱର୍ଗତ ଆତ୍ମାକୁ, ଗୁରୁଜୀ ଆଶୀର୍ବାଦ କଲେ । ସେ ବିଶେଷ ଭାବରେ ପ୍ରଶଂସା କଲେ ମୁସଲମାନ ବନ୍ଧୁ ପୀର ବୁଧ ସାଙ୍କୁ ଯେ ନିଜେ ରଣରେ ଯୋଗ ଦେଇଥିଲେ ଏବଂ ଲଢ଼ାଇରେ ନିଜର ଦୁଇଟି ପୁତ୍ରଙ୍କୁ ମଧ୍ୟ ହରାଇଥିଲେ । ଗୁରୁଜୀଙ୍କ ଆଦେଶରେ ରଣକ୍ଷେତ୍ରରେ ପଡିଥିବା ଦୁଇ ପକ୍ଷର ଆହତ ସୈନିକମାନଙ୍କର ସେବା ଶୁଶ୍ରୂଷାର ବ୍ୟବସ୍ଥା ହୋଇଥିଲା ଏବଂ ମୃତମାନଙ୍କର ଶବଗୁଡ଼ିକୁ ନିଜ ନିଜ ଧର୍ମାନୁସାରେ, ସତ୍କୃତ କରାଯାଇଥିଲା ।

ଯୁଦ୍ଧବିଦ୍ୟାରେ ଅଶିକ୍ଷିତ ଓ ଅନଭିଜ୍ଞ ହେଲେ ହେଁ ଗୁରୁ ଗୋବିନ୍ଦ ସିଂଙ୍କର ଶିଖ୍ ଅନୁଚରମାନେ କେବଳ ସେମାନଙ୍କର ସାହସ ଓ ଉତ୍ସାହ ଯୋଗୁ ତାଲିମ୍ ପ୍ରାପ୍ତ ଅଭିଜ୍ଞ ବିପକ୍ଷମାନଙ୍କୁ ରଣ କୌଶଳରେ ବଳିଗଲେ ।

ଏହା ସେମାନଙ୍କ ଭିତରେ ଅସୀମ ଆତ୍ମପ୍ରତ୍ୟୟ ସୃଷ୍ଟି କଲା ଏବଂ ତତ୍‌କ୍ଷଣାତ୍ ରାଜପୁତ ସାମନ୍ତମାନେ ଏକ ସାହସିକ ଓ ସାମର୍ଥ୍ୟବାନ ଜାତି ଭାବରେ ସେମାନଙ୍କୁ ସମ୍ମାନ କରିବା ଆରମ୍ଭ କଲେ । ୧୬୮୮, ସେପ୍‌ଟେମ୍ବର ୨ ରେ ଭଙ୍ଗାନି ଯୁଦ୍ଧ ସଂଘଟିତ ହୋଇଥିଲା । ଭଙ୍ଗାନି ବିଜୟ ପରେ, ପାଓନ୍ତା ଛାଡ଼ି ଗୁରୁ ଗୋବିନ୍ଦ ସିଂ ଆନନ୍ଦପୁର ଫେରିଗଲେ ।

ସପ୍ତମ ନାନକ (ବା ଗୁରୁ) ହରି ରାୟଙ୍କର ପୁତ୍ର ଥିଲେ ରାମ ରାୟ । ଏ ଲୋକ ଅତି ବିଚକ୍ଷଣ ଥିଲେ । କିନ୍ତୁ ସେ ଥରେ ଗ୍ରନ୍ଥ ସାହିବ୍‌ର ଏକ ଅଂଶର ବିକୃତ ଆବୃତ୍ତି କରି, ସ୍ତୁତି ସୂତ୍ରରେ ଆଉରଙ୍ଗଜେବଙ୍କୁ ସନ୍ତୁଷ୍ଟ କରିବାକୁ ପ୍ରୟାସୀ ହୋଇ ଥିବାରୁ ସେ ଶିଖ୍-ସଂପ୍ରଦାୟର 'ଗୁରୁତ୍ୱ'ର ଉତ୍ତରାଧିକାର ହରାଇ, ସଂପ୍ରଦାୟରୁ ଦୂରରେ ଆଉରଙ୍ଗଜେବ ଦେଇଥିବା ଭୂସଂପତ୍ତି ଯେଉଁ ଯମୁନା ଆରପଟେ ଡେରାଡୁନ୍‌ରେ ବସବାସ କରୁଥିଲେ କରୁଥିଲେ । କିନ୍ତୁ ଜଣେ ବିଭୂତିଶାଳୀ ଯୋଗୀ ବୋଲି ତାଂକର ଖ୍ୟାତି ଥିଲା । ସେ ଯେତେବେଳେ ଜାଣିବାକୁ ପାଇଲେ ଯେ, ତାଂକର କକା ଗୁରୁ ଗୋବିନ୍ଦ ସିଂ ତାଂକର ଏତେ ନିକଟରେ ଅଛନ୍ତି, ସେ ତାଙ୍କୁ ଦେଖା କରିବାକୁ ଇଚ୍ଛାକଲେ । ପାଓନ୍ତାକୁ ଖବର ଗଲା ଏବଂ ଯମୁନା ନଈ କୂଳରେ ଦୁହିଁଙ୍କର ଭେଟ ହେବା ପାଇଁ ଦିନ ସ୍ଥିରହେଲା । ବାବା ରାମ ରାୟ ପ୍ରଥମ କରି ଗୁରୁଙ୍କୁ ଭେଟିଲେ ଏବଂ ତାଂଗାନିର ସୌଭାଗ୍ୟରେ ଅତ୍ୟନ୍ତ ଆନନ୍ଦ ପ୍ରକାଶ କଲେ । ବାବା ରାମରାୟଂକର ଅନୁଚରମାନେ ଏହା ପସନ୍ଦ ନ କଲେ ମଧ୍ୟ କକା-ପୁତୁରାଂକ ଭିତରେ ବହୁବେଳ ଧରି ହୃଦ୍ୟତାର ସହିତ କଥୋପକଥନ ଚାଲିଥିଲା ।

କିନ୍ତୁ ଗୁରୁଗୋବିନ୍ଦ ସିଂ ପାଓନ୍ତା ଛାଡ଼ିବା ପୂର୍ବରୁହିଁ ଖବର ଆସିଲା ଯେ ବାବା ରାମରାୟ ଇହଧାମ ଛାଡି ଗଲେ । ଏହି ସମ୍ବାଦରେ ଗୁରୁଜୀ ସଙ୍ଗେ ସଙ୍ଗେ ଡେରାଡୁନ୍ ଯାଇ ରାମରାୟଙ୍କର ବିଧବା ପଞ୍ଜାବ କଉର୍‌ଙ୍କୁ ସମବେଦନା ଜଣାଇଥିଲେ । ଶ୍ରୀମତୀ କଉର ଗୁରୁଜୀଙ୍କୁ ତାଙ୍କ ସ୍ୱର୍ଗତ ସ୍ୱାମୀଙ୍କର ଅନୁଚରମାନଙ୍କର ଔଦ୍ଧତ୍ୟ ଓ ଅସାଧୁତା ବିରୁଦ୍ଧରେ ଅଭିଯୋଗ କରି, ସେମାନଙ୍କୁ ସମୁଚିତ ଶିକ୍ଷା ଦେବାପାଇଁ ଅନୁରୋଧ କଲେ । ଗୁରୁଜୀ ଅସାଧୁ ଓ ଅନାଚାରୀମାନଙ୍କୁ ଯଥୋଚିତ ଭାବରେ ଦଣ୍ଡିତ ଓ ସାଧୁ କର୍ମଚାରୀ-ମାନଙ୍କୁ ଯଥୋଚିତ ପୁରସ୍କୃତ କରିଥିଲେ ।

ଗୁରୁ ଓ ପାର୍ବତ୍ୟ ସାମନ୍ତମାନଙ୍କ ଭିତରେ ଘଟିଯାଇଥିବା ଯୁଦ୍ଧରେ ଶିର୍‌ମୁର୍‌ର ରାଜା ନିରପେକ୍ଷ ଥିଲେ । ଗୁରୁଗୋବିନ୍ଦ ପାଓଣ୍ଟା ଛାଡ଼ିବାପୂର୍ବରୁ ସେ ନିଜେ ଆସି ଗୁରୁଙ୍କ ଠାରୁ ବିଦାୟ ନେବାକୁ ଚାହିଁଥିଲେ; କିନ୍ତୁ ଅନ୍ୟ ସାମନ୍ତ ରାଜାମାନଙ୍କୁ ସେଥିପାଇଁ ଭୟ କରୁଥିଲେ । ଗୁରୁ ଗୋବିନ୍ଦ ସିଂ ଏହା ଜାଣିପାରି ଶିର୍‌ମୁର୍‌ ରାଜାଙ୍କୁ ନିଜକୁ ବିପନ୍ନ କରିବାକୁ ମନା କରିଦେଲେ ଏବଂ କାହାକୁ ନ ଜଣାଇ ପାଓଣ୍ଟା ଛାଡ଼ି ଆନନ୍ଦପୁର ବାହାରିଗଲେ ।

ସେ ସାଧୁଓ୍ୟାରା ଓ ଲାହାରପୁର ଦେଇ ଆନନ୍ଦପୁର ଗଲେ । ଏପରି ବଂକେଇ ଯିବାର କାରଣ ତାଂକର ଶିଷ୍ୟ ଓ ବନ୍ଧୁ ପୀରବୁଧୁ ସାହାଂକର ଘର ଥିଲା ସାଧୁଓ୍ୟାରାଠାରେ । ବୁଧୁ ସାହା ବର୍ତ୍ତମାନ ଗୁରୁଂକ ନିକଟକୁ ଧର୍ମୋପଦେଶ ପାଇଁ ବାରମ୍ବାର ଆସିବାର ସୁଯୋଗ ପାଇ ଆନନ୍ଦିତ ହେଲେ । ରାଇପୁରରେ ସେଠାର ରାଣୀ ତାଙ୍କୁ ଅତିଥି ଭାବରେ ଗ୍ରହଣ କଲେ ଏବଂ ନିଜର ପୁତ୍ରକୁ ଆଶୀର୍ବାଦ କରିବାକୁ ଭିକ୍ଷା କଲେ । ଗୁରୁ ତାଙ୍କୁ ଢାଲ ଓ ଖଣ୍ଡା ଉପହାର ଦେଲେ ଏବଂ ସାମରିକ ବିଦ୍ୟା ଅଭ୍ୟାସ କରିବା ପାଇଁ କହିଗଲେ । ଆନନ୍ଦପୁର ନିକଟ ହୁଅନ୍ତେ ବହୁଲୋକ ବାଟଯାକ ତାଙ୍କୁ ପ୍ରଥମଥର ପାଇଁ ସ୍ୱଚକ୍ଷୁରେ ଦେଖି, ଜୀବନର ଅଭିଳାଷ ପୂର୍ଣ୍ଣକଲେ ଏବଂ ଧର୍ମୋପଦେଶ ଶୁଣିଲେ ।

ଗୁରୁ ଗୋବିନ୍ଦ ସିଂଙ୍କ ଅନୁପସ୍ଥିତିରେ ଆନନ୍ଦପୁର ଜନଶୂନ୍ୟ ହୋଇ ପଡିଥିଲା । ବର୍ତ୍ତମାନ ଆନନ୍ଦପୁରକୁ ନୂଆ କରି ଗଢ଼ିବାକୁ ହେଲା । ଗୁରୁ-ଗୋବିନ୍ଦଙ୍କ ଫେରିବାର ଶୁଣି ଯାତ୍ରୀ ଧାଡ଼ି ଲାଗିଲେ ଏବଂ ସେମାନଙ୍କ ମଧ୍ୟରୁ କେତେକ ସେଠି ରହିଗଲେ, ଘରଦ୍ୱାର କରି । ଗୁରୁଗୋବିନ୍ଦ ପାଓଣ୍ଟା ଯିବା ପୂର୍ବରୁ ନଗରଟି ଯେଉଁମିତି ନୂତନ ଜାତୀୟତା ଓ ଧର୍ମ ପାଇଁ ପ୍ରେରଣାର କେନ୍ଦ୍ର ହୋଇଥିଲା, ପୁଣି ସେହିପରି ହୋଇ ଉଠିଲା । ନଗରର ପୁନର୍ଜାଗ୍ରତ ଜୀବନ-ସ୍ରୋତ ଦେଶର ଦୂରଦୂରାନ୍ତ ଅଞ୍ଚଳକୁ ପ୍ରସାରିତ ହୋଇ ପୁଣି ଉର୍ବର କରିବାକୁ ଲାଗିଲା । ଗୁରୁ ଗୋବିନ୍ଦ ଆନନ୍ଦପୁରକୁ ଏକ ସାମରିକ ଘାଟି ଭାବରେ ମଧ୍ୟ ଗଢିବାକୁ ବସିଲେ । ସେ ଆନନ୍ଦପୁରର ଚାରିପଟ ପାହାଡ଼ରେ, ଠିକ ଜାଗା ଦେଖି, ଆନନ୍ଦଗଡ଼, ଲୋହଗଡ, କେଶଗଡ଼ ଓ ଫତେଗଡ଼ ନାମରେ ଚାରିଟି ଗଡ଼ ତିଆରିକଲେ । ଏମାନଙ୍କ ଭିତରେ ଆନନ୍ଦଗଡ଼ ସାମରିକ ଅସ୍ତ୍ରଶସ୍ତ୍ର, ଜଳ-ସରବରାହ ଓ ପାଚେରୀର ଦୃଢତା ଯୋଗୁ ସବୁଠାରୁ ବଡ଼ ଦୁର୍ଗଥିଲା ।

ଇତିମଧ୍ୟରେ, ଆଓ୍ରଙ୍ଗଜେବଂଙ୍କୁ ଦାକ୍ଷିଣାତ୍ୟରେ ବହୁକାଳ ଧରି, ବରାବର ଯୁଦ୍ଧରେ ବ୍ୟସ୍ତ ରହିବାର ଦେଖି, ଆଖପାଖର ପାର୍ବତ୍ୟ ସାମନ୍ତ ରାଜାମାନେ ମୋଗଲଦରବାରକୁ କର ନ ଦେଇ ଏଥର ସ୍ୱାଧୀନ ହେବାର ସ୍ୱପ୍ନ ମଧ୍ୟ ଦେଖିଲେଣି । ଜାମ୍ମୁର ମୋଗଲ ରାଜ୍ୟପାଳ ମିଆଁ ଖାଁ, ଏହା ଜାଣିପାରି, ସେନାପତି ଆଲଫ୍‌ଖାଁଙ୍କୁ ଏହି ବିଦ୍ରୋହୀ ସାମନ୍ତମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବାପାଇଁ ପଠାଇଲେ । କାଂଗ୍ରାର ରାଜା କର୍ପାଲ୍ ଓ ବିଜ୍‌ଓ୍ୟାଲ୍‌ର ରାଜା ଦୟାଲ୍, ବିନାଯୁଦ୍ଧରେ ଶରଣ ଗଲେ ଏବଂ ଆଲଫ ଖାଁଙ୍କୁ କହିଲେ ଯେ, ସେ ଯଦି ବିଳାସପୁର ରାଜା ଭୀମଚନ୍ଦଙ୍କୁ ବଶକୁ ଆଣନ୍ତି ; ତେବେ ସବୁ ପାର୍ବତ୍ୟରାଜା ଆପେ ଆପେ ବଶୀଭୂତ ହୋଇଯିବେ । ସେମାନେ ମଧ୍ୟ ବିଳାସପୁର ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ଆଲଫ୍‌ଖାଁଙ୍କ ସହିତ ହାତ ମିଳାଇ ଦେଲେ ।

ଭୀମଚନ୍ଦ ଇତିମଧ୍ୟରେ ଗୁରୁଙ୍କ ସହିତ ମିଟ୍‌ମାଟ୍ ହୋଇ ଯାଇଥିଲେ । ଗୁରୁ ଆନନ୍ଦପୁର ଫେରି ଆସିଲା ପରେ ସେ ଏହି ଉଦ୍ଦେଶ୍ୟରେ ନିଜେ ଆନନ୍ଦପୁର ଆସିଥିଲେ । ବର୍ତ୍ତମାନ ସେ ମୋଗଲ ସେନାପତି ବିରୁଦ୍ଧରେ ବଳ ଦେବାପାଇଁ ଗୁରୁଙ୍କୁ ସାହାଯ୍ୟ ଭିକ୍ଷା କଲେ । ମହାମନା ଗୁରୁ ଗୋବିନ୍ଦ ସିଂ ମାତ୍ର ନିକଟରେ ଘଟିଯାଇଥିବା ସମସ୍ତ ତିକ୍ତ ଘଟଣା ଭୁଲିଯାଇ, ନିଜ ନେତୃତ୍ୱରେ ଦଳେ ବଛା ବଛା ଶିଖଙ୍କୁ ଘେନି ରାଜାଙ୍କ ସାହାଯ୍ୟାର୍ଥେ ବାହାରି ପଡ଼ିଲେ । ଆଲଫ୍‌ଖାଁ ବିଳସପୁର ପହଁଚିବା ପୂର୍ବରୁ, ଗୁରୁଜୀ-ତାଙ୍କୁ ବେଆସ୍ ନଦୀର ପଶ୍ଚିମ ପଟେ କାଂଗ୍ରାର ୨୦ମାଇଲ୍ ପୂର୍ବ-ପଶ୍ଚିମରେ ନନ୍ଦାଉନ୍‌ଠାରେ ଭେଟିଲେ । ସେହିଠାରେ ଦୁଇପକ୍ଷର ସିଧାସଳଖ ଯୁଦ୍ଧ ହୋଇ ଶୀଘ୍ର ଏକ ପରିଣାମରେ ପହଁଚିଗଲା । 'ବିଚିତ୍ର ନାଟକ'ରେ ଗୁରୁ ଗୋବିନ୍ଦ ସିଂ କହିଛନ୍ତି— "ପରମ ପିତା ଯୁଦ୍ଧକୁ ଶୀଘ୍ର ଶେଷ କରାଇ ଦେଇ, ବିପକ୍ଷ ପକ୍ଷକୁ ଠେଲି ଦେଲେ ନଈ ଭିତରକୁ । ଆଲଫ ଖାଁ ନିଜ ପଟର ଖବର ନେବାକୁ ସମୟ ନ ପାଇ, ପଳାୟନ କରିବାକୁ ବାଧ୍ୟ ହେଲା ।"

ଜାମ୍ମୁର ରାଜ୍ୟପାଳ, ଆଓ୍ରଙ୍ଗଜେବଙ୍କ ନିକଟକୁ ଏହି ପରାଜୟର ସମ୍ବାଦ ପଠାଇଲେ । ସେ ଉତ୍ତରାଞ୍ଚଳରେ ଗୁରୁ ଗୋବିନ୍ଦ ସିଂଙ୍କ ଅଭ୍ୟୁଦୟ ଏବଂ ଆଲଫ ଖାଁର ପରାଭବର କଥା ହବି ହବି ବିବୃତ

ହୋଇ ପଡ଼ ସାଙ୍ଗେ ସାଙ୍ଗେ ପଞ୍ଜାବରେ ଥିବା ତାଙ୍କର ଫଉଜଦାର-ମାନଙ୍କୁ ଆଦେଶ ଦେଲେ ଯେ, ସେମାନେ ଏହି ଗୁରୁ ଯଦି ସାଧାରଣ ଫକୀର ଭାବରେ ଜୀବନଯାପନ ନ କରେ, ଯଦି ତାର ଅନୁଚରମାନେ ତାଙ୍କୁ "ସଚ୍ଚା ପାଡ଼ଶା" (ପ୍ରକୃତ ରାଜା) ବୋଲି କହିବା ବନ୍ଦ ନ କରନ୍ତି, ସେ ଯଦି ଶିଖ୍‌ମେଳା ସବୁ ବନ୍ଦ ନ କରେ, ତେବେ ତାର ଘରଦ୍ୱାର ଜବତ କରି ସେ ଯେପରି ଦେଶରୁ ବହିଷ୍କୃତ ହୁଏ, ତାହା ସେମାନେ ଦେଖିବେ।" ମୋଗଲ ସମ୍ରାଟଙ୍କ ଏହି ଆଦେଶ ୧୬୯୩ଖ୍ରୀ: ଅ: ନଭେମ୍ବର ମାସରେ ଘୋଷିତ ହୋଇଥିଲା। କିନ୍ତୁ ଆନନ୍ଦପୁରରେ ଏ ଘୋଷଣା କୌଣସି ଉଦ୍‌ବେଗ ସୃଷ୍ଟି କରିପାରି ନ ଥିଲା, କି ଯେଉଁ ଉତ୍ସାହର ହୋମାଗ୍ନି ସେଠାରେ ଜଳାଇ ଦିଆ ଯାଇଥିଲା, ତାକୁ ସାମାନ୍ୟ ଭାବରେ ମଧ୍ୟ ଲିଭାଇ ପାରି ନ ଥିଲା; ବରଂ ଗୁରୁଜୀ ଚାରିଆଡ଼େ ଖବର ପଠାଇଲେ ଯେ, ଆଗାମୀ ବୈଶାଖୀ ଉତ୍ସବ ପାଇଁ ଶିଖ୍‌ମାନେ ବହୁ ସଂଖ୍ୟାରେ ଆନନ୍ଦପୁରକୁ ଆସନ୍ତୁ ଏବଂ ଆସନ୍ତୁ ଦାଢ଼ି ଓ କେଶ ବଢ଼ାଇ ଓ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ।

ଗୁରୁଆଦେଶରେ ଶିଖ୍‌ମାନେ ପ୍ରକୃତରେ ସର୍ବାଞ୍ଚଳରୁ ବହୁ ସଂଖ୍ୟାରେ ଆସି ପହଞ୍ଚିଲେ। ସେତେବେଳେ ପଥ ମାତ୍ରେ ବିପଦାକୀର୍ଣ୍ଣ ଥିଲା। ଏଥର କିନ୍ତୁ ସେମାନେ ଅନ୍ୟ ସାଧାରଣ ବିପଦ ସହିତ ଦଳ ଦଳ ମୋଗଲ ସୈନିକ-ମାନଙ୍କର ବିରୋଧ ସ୍ଥାନେ, ସ୍ଥାନେ ଭେଟିଲେ। ଯିଏ ଯେଉଁଠି ସେମାନଙ୍କୁ ଅଟକାଇବାକୁ ଚେଷ୍ଟାକଲା, ତା ସହିତ ଲଢ଼ି, ସେମାନେ କିନ୍ତୁ ସମସ୍ତେ ଆସି ସମବେତ ହେଲେ, ଆକର୍ଷଣକାରୀ ଆନନ୍ଦପୁରରେ, ଗୁରୁ ସନ୍ନିଧିରେ। ୧୬୯୪ ଖ୍ରୀ: ଅ:ର ମାର୍ଚ୍ଚ ୨୯ ତାରିଖରେ ବୈଶାଖୀ ଉତ୍ସବ, ପ୍ରାର୍ଥନା, ଧର୍ମସଭା, ମିଳିତ ଭୋଜନ ଓ ଶାରୀରିକଶକ୍ତି-ପ୍ରତିଯୋଗିତାରେ ସମାରୋହ ସହିତ ଉଦ୍‌ଯାପିତ ହେଲା। ଦାକ୍ଷିଣାତ୍ୟରେ ଥିବା ଆଉରଙ୍ଗଜେବଙ୍କ ନିକଟକୁ ଏହି ସମ୍ମିଳନୀର ସଂବାଦ ମଧ୍ୟ ପଠାଗଲା।

କିଛୁକାଳ ପରେ, ତେଣୁ ସମ୍ରାଟଙ୍କ ନିର୍ଦ୍ଦେଶ ଆସିଲା, ଏଣିକି ପ୍ରତ୍ୟକ୍ଷ ସଂଗ୍ରାମ ପାଇଁ। କାଂଗ୍ରାର ମୋଗଲଶାସକ ଦିଲାୱାର ଖାଁଙ୍କ ପୁଅର ନେତୃତ୍ୱରେ ଏକ ଶକ୍ତିଶାଳୀ ସେନା ପ୍ରଥମେ ଆନନ୍ଦପୁରକୁ ଓ ତା' ପରେ ବିଦ୍ରୋହୀ ପାର୍ବତ୍ୟରାଜ୍ୟମାନଙ୍କୁ ଶିକ୍ଷା ଦେବାପାଇଁ ପଠାଗଲା। ମୋଗଲ ସେନା ଏକ ଅତର୍କିତ ଆକ୍ରମଣ ଚଳାଇବା ପାଇଁ ଆନନ୍ଦପୁର ପାଖରେ ମଧ୍ୟରାତ୍ରିରେ ପହଞ୍ଚିଲେ। 'ବିଚିତ୍ର ନାଟକ'ରେ ଏ ସଂପର୍କରେ ଗୁରୁ ଗୋବିନ୍ଦ

ଲେଖିଛନ୍ତି ଯେ, ମୋଗଲ ସୈନ୍ୟ ନଈ ପାରହେଲା ମାତ୍ରେ, ତାଙ୍କର ବିଶ୍ୱସ୍ତ ସେବକ ଆଲାମ୍‌ଚାନ୍ଦ, ତାଙ୍କୁ ନିଦରୁ ଉଠାଇ ଦେଲେ । ଗୁରୁଆଡ଼େ ଖବର ବାଜିଗଲା । ଶିଖମାନେ ନିଦରୁ ଉଠି ଓ ଅସ୍ତ୍ର-ଶସ୍ତ୍ରରେ ସଜ୍ଜିତ ହୋଇ ଶତ୍ରୁଙ୍କୁ ଆଗଭୁଗ ଭେଟିବା ପାଇଁ ଧାଇଁଲେ । ରଣଜିତ ନାଗରାର ଦୁନ୍ଦୁଭି ଘୋଷ ଓ ଶିଖ୍‌ମାନଙ୍କର ଜଳଦ୍‌ଗମ୍ଭୀର ସମରଧ୍ୱନି ଏକତ୍ର ମିଶି, ସେହି ଶୀତ ରାତିର ଶାନ୍ତିକୁ ବିକ୍ଷୁବ୍‌ଧ କରିବା ସାଥେ ସାଥେ, ଶତ୍ରୁର କଳ୍ପନାରେ ଶିଖ୍‌ମାନଙ୍କର ସଂଖ୍ୟା ମଧ୍ୟ ବଢ଼ାଇ ଦେଲେ । ଶିଖ୍‌ମାନଙ୍କର ଅପ୍ରତ୍ୟାଶିତ ଓଲଟା ଆକ୍ରମଣ ଏବଂ ସେମାନଙ୍କର କଳ୍ପିତ ବହୁଳତା, ଦୁଇ ମିଶି ମୋଗଲ ସୈନ୍ୟଙ୍କର ସ୍ନାୟୁକୁ ଦୁର୍ବଳ କରାଇଦେଲା ଏବଂ ସେମାନେ ବିନାଯୁଦ୍ଧରେ ପଛଘୁଞ୍ଚା ଦେଇ ପଳାଇବାକୁ ଲାଗିଲେ ।

ଦିଲାୱାର ଖାଁ ଏ ସମ୍ବାଦ ପାଇ କ୍ରୋଧରେ କଂପିବାକୁ ଲାଗିଲା । ତାର ପୁଅ ଲଜ୍ଜାରେ ମୁହଁ ତଳକୁ କରି ଠିଆହୋଇ ଥାଏ । ଯାହାହେଉ, ତାର ସେନାପତି ହୁସେନ୍ ଖାଁ, ଏହି ଲଜ୍ଜାକର ପରାଭବର ପ୍ରତିହିଂସାର ଦାୟିତ୍ୱ ନେଇ, ବାହାରି ପଡ଼ିଲା । ୧୬୯୬ ଖ୍ରୀ: ଅ:ର ଆରମ୍ଭରେ ସେ ପୂର୍ବ ଅପେକ୍ଷା ଦୃଢ଼ତର ଏକ ବାହିନୀ ଘେନି ଆନନ୍ଦପୁର ଯାତ୍ରା କଲା । ବାଟରେ ବହୁ ବିଦ୍ରୋହୀ ପାର୍ବତ୍ୟ ରାଜା ତାର ବଶ୍ୟତା ସ୍ୱୀକାର କଲେ । ଯେଉଁ ବିଳାସପୁର ରାଜାଙ୍କୁ ଗୁରୁ ଗୋବିନ୍ଦ ସିଂ ଆଲଫ୍ ଖାଁ ବିରୁଦ୍ଧରେ ଏଇ ସେଦିନ ଯୁଦ୍ଧରେ ବ୍ୟକ୍ତିଗତ ସାହାଯ୍ୟ ଦାନ କରିଥିଲେ, ସେ ମଧ୍ୟ ଗୁରୁଙ୍କ ବିରୁଦ୍ଧରେ, ସେମାନଙ୍କ ଦଳରେ ମିଶିଗଲେ ।

କିନ୍ତୁ ବାଟରେ ଗୁଲେର୍ ରାଜ୍ୟର ରାଜା ଗୋପାଳଙ୍କ ସହିତ ଲଢ଼େଇ ଯୋଗୁଁ, ହୁସେନ୍ ଖାଁଙ୍କର ଆନନ୍ଦପୁର ଅଭିଯାନ ଠିକ୍ ଯୋଜନାନୁଯାୟୀ ହୋଇ ପାରିଲା ନାହିଁ । ହୁସେନ୍ ଖାଁ ଯେତେ କର ଦାବୀ କଲା, ରାଜା ଗୋପାଳ ତାହା ଦେଇ ନ ପାରି, ବରଂ ଯୁଦ୍ଧ ଦେବେ ବୋଲି ସ୍ଥିର କଲେ । ତାଙ୍କର ଶକ୍ତିଶାଳୀ ବନ୍ଧୁ ଜସୱାଲର ରାଜା ରାମ ସିଂ ତାଙ୍କୁ ସହାୟତା କରିବା ପାଇଁ ବାହାରି ପଡ଼ିଲେ । ସେହି ସମୟରେ ଆନନ୍ଦପୁରରୁ ସଙ୍ଗତିଆ ଓ ଆଉ ସାତ ଜଣ ଶିଖ୍, ଗୁଲେର ଦରବାରକୁ କୌଣସି ଶାନ୍ତି-ପୂର୍ଣ୍ଣ ଦୌତ୍ୟରେ ଆସିଥିଲେ । ସେମାନେ ମଧ୍ୟ ଗୁଲେର ରାଜାଙ୍କୁ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ବାହାରି ପଡ଼ିଲେ । ହୁସେନ୍ ଖାଁଙ୍କୁ ସ.ହାୟତ ହେଲେ

କାଟୋର୍ ଓ ବିଲାସପୁରର ରାଜା । ଘମାଘମ ଯେଉଁ ଲଢେଇଟା ହେଲା, ସେଥିରେ ଉଭୟେ କାଟୋଚ୍‌ର ରାଜା କୀର୍ ପାଲ ଓ ହୁସେନ୍ ଖାଁ ପ୍ରାଣ ହରେଇଲେ ଏବଂ ଗୁଲେରର ରାଜା ନିଃସନ୍ଦେହ ବିଜୟ ହାସଲ କଲେ । ସଙ୍ଗତିଆ ଓ ସାତ ଜଣ ଶିଖ ମଧ୍ୟ ମୋଗଲଙ୍କ ସହ ଲଢ଼ି ଲଢ଼ି ରଣ-ଭୂମିରେ ପ୍ରାଣ ଦେଲେ । ଗୁଲେରର ରାଜା ଆଡ଼ମ୍ବର ସହକାରେ ଏହି ବିଜୟ ଘୋଷଣା କଲେ ଏବଂ ଗୁରୁଙ୍କୁ ଉପଢୌକନାଦି ସହ କୃତଜ୍ଞତା ଜଣାଇଲେ ।

କିନ୍ତୁ ଏଥିରେ ଦବି ନ ଯାଇ, ପରେ ପରେ, ଦିଲ୍ଲୱାର ଖାଁ ଗୁରୁ ଗୋବିନ୍ଦ ସିଂଙ୍କ ବିରୁଦ୍ଧରେ ଆଉଥରେ ଏକ ଅଭିଯାନ କଲେ । କିନ୍ତୁ ଏ ଅଭିଯାନ ଆନନ୍ଦପୁର ନପହଁଚୁଣୁ ବାଟରେ ଭଲନ୍‌ଠାରେ ଜସୱାଲର ରାଜା ଗଜ ସିଂଙ୍କ ଦ୍ୱାରା ଅଟକି ଗଲା । ଗଜସିଂଙ୍କ ସେନାପତି ସୁଝାର ସିଂ ଲଢ଼େଇରେ ଗତାୟୁ ହେଲେହେଁ, ମୋଗଲସେନା ପୂର୍ବପରି ଛତ୍ରଭଙ୍ଗ ଦେଇ ପଳାୟନ କଲେ ।

ଏହିପରି ବାରମ୍ବାର ପରାଭବ ପାଇବାରେ ସମ୍ରାଟ ଆଉରଙ୍ଗଜେବ ଅଶାନ୍ତିପରି କ୍ରୁଦ୍ଧ ହେବାକୁ ଲାଗିଲେ । ୧୬୯୭, ଜୁଲାଇ ୧୩ ତାରିଖରେ ସେ ତାଙ୍କର ବଡ଼ ପୁଅ ମୁଆଜ୍ଜାମ୍‌କୁ ପଞ୍ଜାବର ଅବସ୍ଥା ସମ୍ଭାଳିବାକୁ ପଠାଇଲେ । ଏହି ମୁଆଜ୍ଜାମହିଁ ପରେ ବାହାଦୁରସାହା ନାମ ଧରି ଆଉରଙ୍ଗ-ଜେବଙ୍କର ଉତ୍ତରାଧିକାରୀ ହେଲେ । ରାଜକୁମାର ମୁଆଜ୍ଜମ୍ ଲାହୋରରେ ଅବସ୍ଥାନ କରି, ମିର୍ଜାବେଗ ନାମକ ଏକ କର୍ମଚାରୀଙ୍କୁ, ସିୱାଲିକ ପର୍ବତମାଳା ଗିରିପଥର ଅବସ୍ଥା ବୁଝି ବ୍ୟବସ୍ଥା କରିବାକୁ ପଠାଇଲେ । ମିର୍ଜା ବେଗ ପାର୍ବତ୍ୟ ରାଜାମାନଙ୍କୁ, ଗୋଟିକ ପରେ ଗୋଟିକୁ ଘୋର ପ୍ରତିହିଂସା ସହିତ ବଶ୍ୟତାକୁ ଆଣି ଉଚ୍ଚ ହାରରେ କର ଆଦାୟ କଲେ । କେବଳ ଗୁରୁ ଗୋବିନ୍ଦ ସିଂ ଏକା ରହିଲେ । ରାଜକୁମାର ମୁଆଜ୍ଜାମଙ୍କର ଏକ ବିଶ୍ୱସ୍ତ କର୍ମଚାରୀ ଥିଲେ ଭାଇ ନନ୍ଦଲାଲ୍,—ଗୁରୁ ଗୋବିନ୍ଦଙ୍କର ଏକ ବିଶିଷ୍ଟ ଶିଖ୍-ଭକ୍ତ । ଶୁଣାଯାଏ ଯେ, ସେହି ଭକ୍ତ ନନ୍ଦଲାଲଙ୍କର ନିବେଦନ ଫଳରେହିଁ, ରାଜକୁମାର ଗୁରୁଜୀଙ୍କୁ ସ୍ପର୍ଶ କରି ନଥିଲେ । ଅନ୍ୟ କାରଣ ମଧ୍ୟ ଏହିଥିଲା ଯେ, ଶୀଘ୍ର-ଘଟିବାର-ସମ୍ଭାବନାଥିବା ଆଉରଙ୍ଗଜେବଙ୍କ-ପରେ-ଦିଲ୍ଲୀ-ସିଂହାସନ ଯୁଦ୍ଧରେ ସନ୍ତୁଷ୍ଟ ଗୁରୁଜୀ ତାଙ୍କର ଯେ ଉତ୍ତମ ସହାୟ ହୋଇ ପାରନ୍ତି ଏହା ତାଙ୍କୁ ଅଜଣା ନ ଥିଲା ।

ମିର୍ଜା ବେଗର ଅଭିଯାନ-ଆଶଂକାରେ ଗୁରୁଜୀ ଯେଉଁ ସୁଚିନ୍ତିତ ସାବଧାନତା ଅବଲମ୍ବନ କରିଥିଲେ, ତାହା ତାଙ୍କର ଏବେ ମିଳୁଥିବା ହୁକୁମ୍‌ନାମା ବା ଚିଠିପତ୍ରରୁ ସ୍ପଷ୍ଟ ଜଣା ପଡ଼ୁଛି । ସେ ତାଙ୍କର ସର୍ବାଞ୍ଚଳର ଶିଖ ଭକ୍ତମାନଙ୍କୁ ଅଶ୍ୱ ଓ ଅସ୍ତ୍ର-ଶସ୍ତ୍ର ନେଇ ଆନନ୍ଦପୁର ଆସିବାକୁ ବାରମ୍ବାର ତାଗିଦ୍ କରି ରଖିଥିଲେ । ଏହିପରି ଏକ ପତ୍ର ବର୍ତ୍ତମାନର ପାଟିଆଲା-ମହାରାଜାଙ୍କର ଗୌରବମୟ ସମ୍ପତ୍ତି । ଏ ପତ୍ରଟି ପାଟିଆଲା ରାଜବଂଶର ସେକାଳର ପୂର୍ବ-ପୁରୁଷ ତିଲୋକ ଓ ରାମଙ୍କ ନିକଟକୁ ୧୬୯୬ ଖ୍ରୀ: ଅ. ଅଗଷ୍ଟ ମାସରେ ଲେଖା ହୋଇଥିଲା । ଏଥିରେ ସେମାନଙ୍କୁ କୁହାଯାଇଥିଲା, ସେମାନେ ଯେପରି ସେମାନଙ୍କର ଅଶ୍ୱ ସହିତ ଆନନ୍ଦପୁର ଆସନ୍ତୁ । ସେ ତିଲୋକ ଓ ରାମଙ୍କ ଘରକୁ, ଅର୍ଥାତ୍ ଏବର ପାଟିଆଲା-ମହାରାଜାଂକ ପରିବାରକୁ ସେ ପତ୍ରରେ 'ନିଜର' ବର୍ଣ୍ଣନା କରିଛନ୍ତି ।

---

# ସପ୍ତମ ଅଧ୍ୟାୟ

## ସୃଜନ-ମୁହୂର୍ତ୍ତ ।

ଯୁଦ୍ଧ ପରେ, ମୋଗଲ ବା ପାର୍ବତ୍ୟ ରାଜପୁତ ରାଜାମାନଙ୍କ ପକ୍ଷରୁ, କାହାଠାରୁ କିଛିକାଳ ଧରି, ଶିଖ୍‌ମାନଙ୍କ ଉପରେ କୌଣସି ଆକ୍ରମଣ ହୋଇ ନ ଥିଲା । ତେଣୁ ଏହି କାଳକୁ ଗୁରୁ ଗୋବିନ୍ଦ ସିଂ, ମନନ ଓ କାବ୍ୟ-କବିତା ଲିଖନରେ ହିଁ ଲଗାଇ ଦେଇଥିଲେ । ନଇନାଦେବୀ ନାମକ ଉଚ୍ଚ ଙ୍ଗ ପର୍ବତ ଆନନ୍ଦପୁରଠାରୁ ଅଦୂରରେ ଦଣ୍ଡାୟମାନ । ଗୁରୁଜୀ ଅଧିକାଂଶ ସମୟ, ସେହି ପର୍ବତର ଶାନ୍ତିମୟ ଓ ନିର୍ଜନ ପାଦଦେଶରେ କଟାଇ ଦେଉଥିଲେ । ଏହିଠାରେ ହିଁ ସେ ୧୬୯୮ ଖ୍ରୀ: ଅବ୍ଦରେ ତାଙ୍କର ପଦ୍ୟ-ନିବନ୍ଧ ଆତ୍ମ-ଚରିତ 'ବିଚିତ୍ର ନାଟକ' ଶେଷ କରିଥିଲେ । ତେଣେ ତାଙ୍କର ସଭାକବିବୃନ୍ଦ ରାମାୟଣ, ମହାଭାରତର ଅଂଶ ଏବଂ ହିତୋପଦେଶ ଓ ଚାଣକ୍ୟ ପ୍ରଭୃତି ସଂସ୍କୃତଭାଷାର ସୁବିଦିତ ଗ୍ରନ୍ଥମାନଙ୍କର ପଞ୍ଜାବୀ ଅନୁବାଦ କରି ଚାଲିଥିଲେ । କିନ୍ତୁ ଏହି ପ୍ରକାର ଉନ୍ନତ ଆତ୍ମିକ ଓ ବୌଦ୍ଧିକ ସ୍ତରରେ ଅବସ୍ଥିତ ଥିଲାବେଳେ ମଧ୍ୟ ଦୂରଦୃଷ୍ଟିସମ୍ପନ୍ନ ଗୁରୁଜୀ ନିକଟ ଭବିଷ୍ୟତରେ କି କି ଗୁରୁତ୍ୱପୂର୍ଣ୍ଣ ଘଟଣା ସବୁ ଘଟିଯାଇ ପାରେ, ତାହା ଅନୁମାନ କରି ପାରିଥିଲେ । ବହୁକାଳ ଧରି ଜାତି-ଓ-ଧର୍ମ-ସଂରକ୍ଷଣର ଯେଉଁ ଯୋଜନା ତାଙ୍କ ଅନ୍ତରରେ ପାକଳ ହୋଇ ଆସୁଥିଲା, ସେ ତାର ଶେଷ ପରିଣତି ପାଇଁ ବର୍ତ୍ତମାନ ବ୍ୟବସ୍ଥା କରିବାକୁ ଲାଗିଲେ ।

ପୁନର୍ଗଠନର ଆଦ୍ୟତମ ବ୍ୟବସ୍ଥା ରୂପରେ ସେ ହାତକୁ ନେଲେ ଶିଖ-ଧର୍ମ-ସଂସ୍ଥାର ସଂଶୋଧନ । ଭିନ୍ନ ଭିନ୍ନ ଶିଖ୍ ସଂପ୍ରଦାୟର ସ୍ଥାନୀୟ ନେତା ବା ପୁରୋହିତଙ୍କୁ ମସ୍‌ନଦ କୁହାଯାଏ । ଯେଉଁଠି କେତୋଟି ଶିଖ୍, ସେଠି ଜଣେ ମସ୍‌ନଦ । ମସ୍‌ନଦ ଥିଲେ ଶିଖ୍ ଗୁରୁଙ୍କର ସ୍ଥାନୀୟ ପ୍ରତିନିଧି । କିନ୍ତୁ ଏ ଭିତରେ, ମସ୍‌ନଦମାନେ ଉନ୍ନତ ଆଧ୍ୟାତ୍ମିକ ଜୀବନର ଆଦର୍ଶ ଦେଖାଇବା ଦୂରେ ଥାଉ, ନିଜ ନିଜ ପଦବୀର ସୁବିଧା ନେଇ ସେମାନେ ଅଧିକାଂଶ କ୍ଷେତ୍ରରେ ଅସାଧୁ ଓ କର୍ତ୍ତବ୍ୟଚ୍ୟୁତ ହୋଇ ପଡ଼ିଥିଲେ । ଠାଏ

ଠାଏ ସେମାନେ ଅଜ୍ଞ ଜନତା ଉପରେ ଅତ୍ୟାଚାର ମଧ୍ୟ କରିବାକୁ ପଶ୍ଚାଦ୍‌ପଦ ହେଉ ନ ଥିଲେ । ଗୁରୁ ଗୋବିନ୍ଦ ସିଂଙ୍କ ନିକଟକୁ ସେମାନଙ୍କ ବିରୁଦ୍ଧରେ ନାନାଆଡ଼ୁ ସେମାନେ କପରି ନିରୀହ, ଶ୍ରଦ୍ଧାବାନ୍ ଶିଖ୍‌ମାନଙ୍କୁ ଶୋଷଣ କରୁଥିଲେ, ତାର ବହୁ ଅଭିଯୋଗ ଆସୁଥିଲା । ଗୁରୁ ଓ ଜନତାଙ୍କର ମଧ୍ୟବର୍ତ୍ତୀ-ଶ୍ରେଣୀ ଭାବରେ ସେମାନେ ପ୍ରକୃତରେ ଅଜ୍ଞ-ଜନତାକୁ ଶୋଷି ନିଜର ସୁବିଧା କରିବାରେ ଲାଗିଥିଲେ । ଏହି ନ୍ୟସ୍ତସ୍ୱାର୍ଥ-ଗୋଷ୍ଠୀ ପୁଣି ଗୁରୁଙ୍କୁ ସବୁବେଳେ ଉପଦେଶ ଦେଇ ଆସୁଥିଲେ, ଏପରି କିଛି ହେଲେ ନ କରିବାକୁ ଯାହା ମୋଗଲ-ଶାସକଙ୍କୁ ବିରକ୍ତ ଦେବ । ଧନ ଓ ସୁବିଧା ଭୋଗ ସେମାନଙ୍କୁ କରାଇ ପକାଇଥିଲା ଏକାନ୍ତ ଭୀରୁ । ସେମାନେ ସଂଘର୍ଷକୁ ଡରୁଥିଲେ, କାରଣ ସେଥିରେ ସେମାନଙ୍କର ସୁବିଧାଭୋଗରେ ବ୍ୟାଘାତ ଘଟିବାର ପୂରା ଆଶଙ୍କା ଥିଲା । ଗୁରୁ ଗୋବିନ୍ଦ ସିଂ ତେଣୁ ଏହି ମଧ୍ୟବର୍ତ୍ତୀ, ଜନାପକାରକ ସଂପ୍ରଦାୟକୁ ନିଶ୍ଚିହ୍ନ କରିବାପାଇଁ ବହୁକାଳ ଧରି ଭାବୁଥିଲେ । ଏହି ସମୟରେ ଦଳେ ଭ୍ରାମ୍ୟମାଣ ଭାଟ ଆନନ୍ଦପୁରକୁ ଆସି ଗୁରୁଜୀ ଓ ଅନ୍ୟାନ୍ୟ ଶିଖ୍‌ମାନଙ୍କ ଆଗରେ ଲୋକଗୀତ ସବୁ ଗାଇଲେ । ଗୁରୁ ଦେଖି ବିସ୍ମିତ ହେଲେ ଯେ, ସେମାନଙ୍କର ଗୋଟିଏ ଗୀତ କେବଳ ମସନଦ୍‌ମାନଙ୍କ ବିରୁଦ୍ଧରେ, ଉପଭୋଗ୍ୟ କଟୁ ପରିହାସରେ ପୂର୍ଣ୍ଣ ଥିଲା । ଗୁରୁଜୀ ବର୍ତ୍ତମାନ ଅନୁଭବ କଲେ, ମସ୍‌ନଦ୍‌ମାନଙ୍କ ବିରୁଦ୍ଧରେ ଜନମତ କପରି ଜନପ୍ରିୟ ଲୋକଗୀତରେ ଯାଇ କେନ୍ଦ୍ରୀଭୂତ ଆତ୍ମ-ପ୍ରକାଶ କଲାଣି । ତାଙ୍କର ବହୁ କାଳର ଚିନ୍ତା ବର୍ତ୍ତମାନ ଏକାଗ୍ର ହୋଇ ଉଠିଲା । ସେ ଦେଶର ଭିନ୍ନ ଭିନ୍ନ ସ୍ଥାନରୁ ମସନଦ୍‌ମାନଙ୍କୁ ଆନନ୍ଦପୁରକୁ ଡାକିଲେ ଏବଂ ସବୁ କଥା ବୁଝାଇ, ସେମାନଙ୍କଠାରୁ ସକଳ କ୍ଷମତା ଏକାଦିନରେ କାଢ଼ି ନେଲେ । ପୁଣି, ଯେଉଁମାନଙ୍କ ବିରୁଦ୍ଧରେ ଅମାନ୍ତର ଅଭିଯୋଗ ଥିଲା ସେମାନଙ୍କୁ ସେ ଦଣ୍ଡ ଦେଲେ ମଧ୍ୟ ସୁନାମୀମାନଙ୍କୁ ସମ୍ମାନିତ ନ କରି ଛାଡ଼ି ନ ଥିଲେ । ମଧ୍ୟବର୍ତ୍ତୀ ମସ୍‌ନଦ୍ ଶ୍ରେଣୀ ଅପସାରିତ ହୋଇ ଯାଆନ୍ତେ, ଶିଖ୍ ଜନତା ବର୍ତ୍ତମାନ ପ୍ରତ୍ୟକ୍ଷ ଭାବରେ ଆନନ୍ଦପୁର ସହିତ ସଂଯୁକ୍ତ ହୋଇ ମୁକ୍ତିର ନିଶ୍ୱାସ ମାରିଲା ।

## ଖାଲ୍‌ସାର ଜନ୍ମ

ସବୁ ବର୍ଷ ଆନନ୍ଦପୁରରେ ବୈଶାଖୀ ପର୍ବ ଆଡ଼ମ୍ବର ସହକାରେ ଅନୁଷ୍ଠିତ ହୋଇଆଏ । ଏହା ଥିଲା ସମଗ୍ର ଶିଖ୍ ସଂପ୍ରଦାୟର ବାର୍ଷିକ ମିଳନ ।

କିନ୍ତୁ ୧୬୯୯ ଖ୍ରୀ: ଅ:ର ବୈଶାଖୀ-ମେଳା ଐତିହାସିକ ହୋଇ ରହିଛି । ଗୁରୁ ଗୋବିନ୍ଦ ସିଂ ନିଜର ମନ କଥା କାହାକୁ ନ କହି, ଏହି ବର୍ଷର ମେଳା ପାଇଁ ବିଶେଷ ଉଦ୍‌ଯୋଗ ଆରମ୍ଭ କଲେ । ସେ ଚାରିଆଡ଼େ ଖବର ପଠାଇଲେ ଯେ, ଶିଖ୍‌ମାନେ ସେମାନଙ୍କର କେଶ ଓ ଶ୍ମଶ୍ରୁ ଅକର୍ତ୍ତିତ ରଖି ଏବଂ ଅସ୍ତ୍ର-ଶସ୍ତ୍ରରେ ସଜ୍ଜିତ ହୋଇ ବହୁ ସଂଖ୍ୟାରେ ଯେପରି ଆନନ୍ଦପୁରକୁ ଆସନ୍ତି । ଯାତ୍ରୀମାନଙ୍କର ରହିବାର ସୁବ୍ୟବସ୍ଥା ସବୁ କରି ଦିଆଗଲା । କିନ୍ତୁ ଯାତ୍ରୀମାନେ ଆନନ୍ଦପୁର ଆସି ଦେଖନ୍ତି ଯେ, ଅବସ୍ଥା ପୂର୍ବ ପରି ନାହିଁ । ଗୁରୁଜୀ ଦୀର୍ଘ ସମୟ ନିକାଞ୍ଚନ-ସ୍ଥାନରେ ଧ୍ୟାନମଗ୍ନ ରହୁଛନ୍ତି । ବାହାରକୁ ବାହାରିଲା ବେଳେ ମଧ୍ୟ, ତାଂକର ଆଖି ଓ ମୁହଁ କହି ଦେଉଥିଲା ଯେ, ସେ ଯେପରି ଆଗାମୀ କୌଣସି ଘଟଣା ବା କୌଣସି ଅଗାଧ ରହସ୍ୟର ଚିନ୍ତାରେ ବୁଡ଼ି ରହିଛନ୍ତି । ଯେଉଁ ଆନନ୍ଦପୁର ପୂର୍ବେ ବିବିଧ ପୌରୁଷମୟ କର୍ମପ୍ରବାହରେ ମୁଖରିତ ହେଉଥିଲା, ତାହା ଆଜି ଶାନ୍ତ । ସେଠାରେ ପ୍ରତ୍ୟେକେ ଆଜି ଆଗାମୀ କାଲି ଯେଉଁ ବିରାଟ ଘଟଣା ଜନ୍ମ ନେବ, ତାହାଲାଗି ସଚେତନ ରହି ଯେପରି ନିଜ ନିଜ କର୍ମ କରି ଚାଲିଛନ୍ତି ।

ବୈଶାଖୀ ପର୍ବ ନିକଟ ହୋଇ ଆସନ୍ତେ ଆନନ୍ଦପୁରରେ ଯାତ୍ରୀ ସାଲୁବାଲୁ ହେବାକୁ ଲାଗିଲେ । ରେକର୍ଡ଼ରୁ ଜଣାଯାଉଛି ଯେ, ସେଥର ଅନ୍ତତଃ ୮୦ ହଜାର ଶିଖ୍ ସମବେତ ହୋଇଥିଲେ । ବୈଶାଖୀ ପୂର୍ଣ୍ଣିମା ଦିନ (ମାର୍ଚ୍ଚ, ୩୦) ଗୁରୁଜୀ ପ୍ରାତଃକାଳରୁ ଶଯ୍ୟା ତ୍ୟାଗ କରି କିଛିକାଳ ଧ୍ୟାନରେ କଟାଇଲେ । ତା'ପରେ ତାଙ୍କର ସାମରିକ ପୋଷାକ ପରିଧାନ କରି ସେ ବହିର୍ଗତ ହୁଅନ୍ତେ, ସମବେତ ଜନସଂଘ ଆନନ୍ଦ ଧ୍ୱନିରେ ତାଙ୍କର ସମ୍ବର୍ଦ୍ଧନା କଲେ । ଏହି ସମୟରେ ପୂର୍ବ ପୂର୍ବ ବର୍ଷ ଗୁରୁଜୀ ସାଧାରଣତଃ ଜନତାକୁ ଧର୍ମୋପଦେଶ ଦେଇଥାନ୍ତି । ଆଜିର ଜନତା ତାହାହିଁ ଅପେକ୍ଷା କରି ରହିଛନ୍ତି । କିନ୍ତୁ ତା' ନକରି, ତରୁଣ ଗୁରୁ ଗୋବିନ୍ଦ ସିଂ ସହସା ନିଜର କୋଷ ଉନ୍ମୁକ୍ତ କରି ଓ ସର୍ବ ସମକ୍ଷରେ ଜ୍ୱଳଜ୍ୱଳନ୍ତ ତରବାରି ଉତ୍ତୋଳିତ ରଖି ସମଗ୍ର ଜନସଂଘକୁ ସେ ପଚାରିଲେ—"ଏହି ମୋର ତରବାରି ଏକ ମସ୍ତକ ମାଗୁଛି । ମୋର ଶିଖ୍ ଭକ୍ତମାନଙ୍କ ଭିତରୁ ଜଣେ କେହି ବାହାରି ପଡ଼, ଏଥିପାଇଁ । ଗୁରୁ ଓ ଧର୍ମ ପାଇଁ ଜଣେ କେହି ଶିଖ୍ ନିଜକୁ ବଳି ଦେବାକୁ ଏଠାରେ ନାହାନ୍ତି କି ?"

ଗୁରୁଙ୍କର ଏ ଘୋଷଣାରେ ସମଗ୍ର ଜନସଙ୍ଘ ସ୍ତମ୍ଭୀଭୂତ ହୋଇ ରହିଲା । କେହି ଉତ୍ତର ଦେଇପାରିଲେ ନାହିଁ । ଗୁରୁଙ୍କ ଅଭିପ୍ରାୟ କ'ଣ କେହି ବୁଝିପାରୁ ନ ଥାନ୍ତି । ସେମାନଙ୍କର ଚିନ୍ତା ସହସା ବିଶୃଙ୍ଖଳ ହୋଇ ଉଠିଲା । ଗୁରୁ ଗୋବିନ୍ଦ ଉପସ୍ଥିତ ଜନତାକୁ ଦ୍ୱିତୀୟଥର ସେହିପରି ଭାଷଣ ଦେଲେ ଓ ଜିଜ୍ଞାସା କଲେ । ଚିନ୍ତାର ବିଶୃଙ୍ଖଳତା ବର୍ତ୍ତମାନ ଭୟରେ ପରିଣତ ହେଲା । ଗୁରୁ ତୃତୀୟଥର ପାଇଁ ମସ୍ତକ ଭିକ୍ଷା କଲେ ।

ବର୍ତ୍ତମାନ ଦୟାରାମ ନାମକ ଲାହୋରର ଏକ କ୍ଷତ୍ରୀ ନିଜ ଆସନରୁ ଉଠି କମ୍ପିତ କଣ୍ଠରେ କହିଲା—"ହେ ମୋର ସତ୍ୟ ପ୍ରଭୁ ଏ ମସ୍ତକ ଆପଣଙ୍କ ପଦତଳେ ସମର୍ପିତ । ଆପଣଙ୍କ କୃପାଣରେ ଛିନ୍ନ ହେବାଠାରୁ ଅଧିକ ସୌଭାଗ୍ୟ ଏହାର କି ଥାଇ ପାରେ ?"

ଏହା କହି, ସେ ଧୀରେ, ଗୁରୁଙ୍କ ପଛଆଡ଼େ ଥିବା ଏକ ତମ୍ବୁ ଭିତରକୁ ଚାଲିଗଲା ଏବଂ ଗୁରୁ ମଧ୍ୟ ସେହି ତମ୍ବୁ ଭିତରକୁ ପଶିଲେ । କିଛିକ୍ଷଣ ପରେ ଗୁରୁଜୀ ତମ୍ବୁରୁ ବାହାରିଲା ବେଳକୁ ତାଙ୍କର ଉଜ୍ଜ୍ୱଳ ତରବାରିରୁ ସଦ୍ୟ ରକ୍ତ ବୋହି ଚାଲିଛି । ସେହି ରକ୍ତାକ୍ତ ତରବାରିକୁ ଦେଖାଇ ଗୁରୁ ଗୋବିନ୍ଦ ସିଂ ପୁଣି ଆଉ ଏକ ମସ୍ତକ ମାଗି ବସିଲେ ।

ଲୋକେ ଭାବିଲେ ଯେପରିକି ଗୁରୁ ସେମାନଙ୍କର ଶ୍ରଦ୍ଧା ଓ ବିଶ୍ୱାସର ସୀମା ଅତିକ୍ରମ କରୁଛନ୍ତି । କେତେକ ସଭା ଛାଡ଼ି ଅନ୍ୟଆଡ଼େ ଗଲେ, ଗୁରୁଙ୍କ ମାତାଜୀଙ୍କୁ ଏପ୍ରକାର ନିଷ୍ଠୁର ଦାବୀ ବିରୁଦ୍ଧରେ ଅଭିଯୋଗ କରିବା ପାଇଁ ।

କିନ୍ତୁ ଧରମ ଦାସ ନାମକ ଦିଲ୍ଲୀର ଜଣେ ଜାଟ୍ (କୃଷକ) ଠିଆ-ହୋଇ କହିଲା—"ଏହି ଦାସାନୁଦାସ ତାର ମସ୍ତକ ଦେଉଛି । ହେ ମହାପ୍ରଭୁ, ମୁଁ ଯେଉଁଦିନ ଠାରୁ ଆପଣଙ୍କର ଶିଖ୍ (ଶିଷ୍ୟ) ହେଲି, ସେହି-ଦିନଠାରୁହିଁ ଏହି ମସ୍ତକ ଆପଣଙ୍କର ହୋଇ ରହିଛି ।"

ଗୁରୁଜୀ ଏହିପରି ଆଉ ତିନୋଟି, ଅର୍ଥାତ୍ ମୋଟରେ, ପାଞ୍ଚଟି ମସ୍ତକ ଭିକ୍ଷା କଲେ ଓ ସେତିକି ପାଇଲେ । ସେମାନେ ହେଲେ ଉପର୍ଯ୍ୟୁକ୍ତ ରାମ ଦୟାଲ୍ ଓ ଧରମ ଦାସ ପୁଣି ମୁଖମ୍‌ଚନ୍ଦ ନାମକ ଦ୍ୱାରକାର ଏକ ଧୋବା, ପୁରୀର ହିମ୍ମତ ନାମକ ଏକ ପାଣିବାଲା, ସାହିବ୍ ଚନ୍ଦ ନାମକ ବିଦରର ଏକ ନାପିତ । ରାମ ଦୟାଲ୍ ପରି, ଏମାନେ ପ୍ରତ୍ୟେକେ ଜଣକ ପରେ ଜଣେ ଗୁରୁଙ୍କ ପଛରେ ଥିବା ତମ୍ବୁ ଭିତରେ ପଶିଲେ, ନିଜ ନିଜର ମସ୍ତକ ଦେବା ପାଇଁ ।

କିନ୍ତୁ କିଛିକ୍ଷଣ ପରେ, ଗୁରୁ ଗୋବିନ୍ଦ ସିଂ ଆପାତ-ଭୟାବହ ତମ୍ବୁର ଅଭ୍ୟନ୍ତରରୁ, ସେହି ଅପରିତ-ମସ୍ତକ ସେହି ,ପାଞ୍ଚଟି ଶିଖ-ଭକ୍ତଙ୍କୁ ସଶରୀରରେ ପଛରେ ଘେନି ବାହାରିପଡ଼ିଲେ । ଆଗରୁ, ଗୁରୁଙ୍କ ଆଦେଶରେ, ସେହି ତମ୍ବୁଟି ଠିଆ କରାଯାଇଥିଲା ଅଦୂରରେ ଗୋଟିଏ ପାହାଡ଼ ଉପରେ । ସେଠାରେ ପାଞ୍ଚଟି ଛେଳି ମଧ୍ୟ ରଖା ଯାଇଥିଲା, ହତ୍ୟାର ଅଭିନୟ ପାଇଁ । ତମ୍ବୁ ଭିତରେ, ଭିନ୍ନ ଭିନ୍ନ କକ୍ଷରେ, ଅର୍ପିତ-ମସ୍ତକ ଭକ୍ତମାନଙ୍କୁ ରଖା ଯାଇଥିଲା । ପ୍ରତ୍ୟେକ କକ୍ଷରେ ଏକ ରକମ ବିଶେଷ-ଭାବରେ-ପ୍ରସ୍ତୁତ ହରିଦ୍ରା ବର୍ଣ୍ଣର ପୋଷାକ ମଧ୍ୟ ରଖା ଯାଇଥିଲା । ସମଗ୍ର ତମ୍ବୁଟିକୁ ବିଶ୍ୱସ୍ତ-ରକ୍ଷୀମାନେ ଜଗି ରହିଥିଲେ ।

ଏହି ବିଶେଷ ପୋଷାକ ପରିଧାନ କରି ଏବଂ ସେହିବର୍ଣ୍ଣର ପଗଡ଼ିରେ ମସ୍ତକ ଭୂଷଣ କରି, ସେହି ଏକାପରି ପୋଷାକ-ପରିହିତ ଗୁରୁଙ୍କ ପଛେ ପଛେ, ସେହି ପଞ୍ଚ-ବୀର ଯେତେବେଳେ ବାହାରି ପଡ଼ିଲେ, ସେତେବେଳକୁ କ୍ଷୀଣୀଭୂତ ଜନତା ଅଧିକତର ସ୍ତମ୍ଭୀଭୂତ ହୋଇଗଲା । ସେମାନେ ଭାବିଥିଲେ ଯେ, ତରୁଣ ଗୁରୁଙ୍କର ଖିଆଲ ମେଣ୍ଟାଇବା ପାଇଁ ତମ୍ବୁରେ ସେମାନଙ୍କର ରକ୍ତାକ୍ତ ଶବ ଗଡୁଥିବ । କିନ୍ତୁ ଏମାନେ ଯେ ସଗୌରବରେ ଜୀବନ୍ତ ?

ସମବେତ ଜନତାକୁ ଗୁରୁ ଗୋବିନ୍ଦ ସିଂ ସେହି ପାଞ୍ଚଟି ବିଶ୍ୱସ୍ତ ଶିଷ୍ୟଙ୍କୁ "ପାଁଚ୍ ପ୍ୟାରେ" ବା "ପାଞ୍ଚ ପ୍ରିୟଜନ" ବୋଲି ପରିଚିତ କରାଇଲେ । ସେ ଅକାଳପୁରୁଷଙ୍କୁ ଅଶେଷ ଧନ୍ୟବାଦ ଦେଲେ ଯେ, ତାଙ୍କର ଲକ୍ଷ୍ୟ ଓ ଭାବନାକୁ ସେ ଏପରି କୃତକାର୍ଯ୍ୟତାର ସହିତ ପରିପୂର୍ଣ୍ଣ ହେବାକୁ ଦେଲେ । ସେ କହିଲେ ଯେ, ଚରମ ପରୀକ୍ଷାରେ ସହଜରେ ଉତ୍ତୀର୍ଣ୍ଣ ହୋଇ "ପାଁଚ୍ ପ୍ୟାରେ" ସମଗ୍ର ଶିଖ୍-ସଂପ୍ରଦାୟକୁ ଗୌରବ ଆନୟନ କରିଛନ୍ତି । ଶିଖ୍‌ମାନଙ୍କ ଭିତରୁ ଗୁରୁଜୀ ଏକ "ଖାଲ୍‌ସା" ଅର୍ଥାତ୍ ବିଶୁଦ୍ଧ ବା ନିର୍ବାଚିତ ଗୋଷ୍ଠୀ ଗଢ଼ିବାର ଯେଉଁ କଳ୍ପନା କରୁଥିଲେ, 'ପାଁଚ୍ ପ୍ୟାରେ' ଆଜି ତାହାର ଆଦ୍ୟ ଏକକ ଯୋଗାଇଲେ ।

ଗୁରୁଜୀ ବର୍ତ୍ତମାନ ଅଭିଷେଚନ ଅନୁଷ୍ଠାନ ଆରମ୍ଭ କଲେ । ଏକ ଲୌହପାତ୍ର, ଶୁଦ୍ଧ ଜଳଦ୍ୱାରା ଭର୍ତ୍ତି କରାଗଲା । ସେହି ଜଳକୁ ଗୁରୁଜୀ ନିଜେ ସଂଘର୍ଷର ପ୍ରତୀକ ରୂପେ ଦ୍ୱିଧାର ଖଡ୍‌ଗରେ ପବିତ୍ର ମନ୍ତ୍ର ଉଚ୍ଚାରଣ ପୂର୍ବକ ମନ୍ଥିତ କରିବାକୁ ଲାଗିଲେ । ଏହି ସମୟରେ ଗୁରୁ-ଜନନୀ ଜିତୋଜୀ

ବାହାରକୁ ଆସି ସେହି ଜଳରେ ଶର୍କରା ମିଶ୍ରିତ କରି ତାହାକୁ ସମୃଦ୍ଧ-ମନ୍ତ୍ରନୋଭୂତ 'ଅମୃତ'ର ପ୍ରସ୍ତୁତକର୍ତ୍ତା ଦାନ କଲେ । ଗୁରୁଙ୍କ ଆଦେଶରେ 'ପାଁଜ୍ ପ୍ୟାରେ'ଙ୍କର ପ୍ରତ୍ୟେକେ ବୀରାସନରେ ବସିଲେ ଏବଂ ଗୁରୁ ପ୍ରତ୍ୟେକଙ୍କୁ ପାଞ୍ଚଥର "ଅମୃତ" ବିତରଣ କଲେ । ପ୍ରତିଥର ଗୁରୁ ହସ୍ତରୁ ଏହି ଅମୃତ ଗ୍ରହଣ କଲାବେଳେ, ପ୍ରତ୍ୟେକ ବୀର ଉଚ୍ଚାରଣ କଲେ —

"ଓ୍ୟାହି ଗୁରୁଜୀ କା ଖାଲ୍ସା ।
ଓ୍ୟାହି ଗୁରୁଜୀ କି ଫତେ ।"

ସମବେତ ଶିଖ୍ ଜନତା ବର୍ତ୍ତମାନ ପରମ ଉତ୍ସାହରେ ଏହି ବାଣୀଯୁଗ୍ମ ମିଳିତ କଣ୍ଠରେ ଉଚ୍ଚାରିତ କରି ଗୃଳିଲେ । ଗୁରୁଜୀ ଏହିପରି ପ୍ରତ୍ୟେକ ବୀରକୁ ଅମୃତ ପାନ କରିବାକୁ ଦେଇ ସାରିଲା ପରେ, ପ୍ରତ୍ୟେକର ମୁଣ୍ଡମଣ୍ଡଳରେ ତାହା ଛୁଞ୍ଚିଲେ ଏବଂ ଛୁଞ୍ଚି, ପ୍ରତ୍ୟେକର ଚକ୍ଷୁ ସହିତ ନିଜ ଚକ୍ଷୁ ମିଳାଇ କିଛିକାଳ ନିରୀକ୍ଷଣ କରି ଗୃହିଁଲେ, ଯାହା ଫଳରେ ଗୁରୁଜୀ ତାଙ୍କର ଆଭ୍ୟନ୍ତରୀଣ ଆଲୋକ ସେହି ସେହି ପ୍ରିୟ ଶିଷ୍ୟମାନଙ୍କ ଭିତରେ ଗୃଳିତ କରିଦେଲେ ବୋଲି ବୁଝାଗଲା । ତା ପରେ ସେହି ଅମୃତ ଜଳଦ୍ୱାରା ଗୁରୁଜୀ ପ୍ରତ୍ୟେକ ବୀରର କେଶକୁ ମଧ୍ୟ ଆର୍ଦ୍ର କଲେ ଏବଂ ଯାହା ବଳିଲା, ତାକୁ ପଞ୍ଚବୀରଙ୍କୁ ସେହି ଏକ ପାତ୍ରରୁ କିଛି କିଛି ପାନ କରିବାକୁ କହିଲେ । ଏହାହିଁ ନିଃଶେଷ ଭାବରେ ସେମାନଙ୍କର ନୂତନ "ଭ୍ରାତୃତ୍ୱ" ପ୍ରତିଷ୍ଠିତ କଲା । ଏହି ନୂତନ ଭ୍ରାତୃତ୍ୱ ସେମାନଙ୍କର ପୂର୍ବ ଜୀବନର ତିନୋଟି ସଂସ୍କାରକୁ ମଧ୍ୟ ନିଶ୍ଚିହ୍ନ କରି ଦେଲା । ସେଗୁଡ଼ିକ ହେଉଛି,— 'କୁଳନାଶ' ଅର୍ଥାତ୍ ପୂର୍ବର ପାରିବାରିକ ସମ୍ବନ୍ଧ, 'କୃତନାଶ' ଅର୍ଥାତ୍ ପୂର୍ବର କୌଳିକଜୀବିକା ଯାହା ଯୋଗୁଁ ସେମାନଙ୍କର ସାମାଜିକ ସ୍ଥାନ ନିରୂପିତ ହେଉଥିଲା, ପୁଣି 'ଧର୍ମନାଶ', ଅର୍ଥାତ୍ ପ୍ରାଚୀନ ଧର୍ମୀୟ ଓ ସାମାଜିକ ବିଶ୍ୱାସ ସବୁ । ସେମାନେ ବର୍ତ୍ତମାନଠାରୁ ଉପାସନା କରିବେ, କେବଳ 'ଅକାଳ'ଙ୍କୁ ଅର୍ଥାତ୍ ସେହି ପରମେଶ୍ୱର ଯିଏ କାଳାତୀତ; ସେମାନଙ୍କର ପିତା ହେବେ ବର୍ତ୍ତମାନଠାରୁ ଗୁରୁଗୋବିନ୍ଦ ସିଂ ଓ ମାତା ସାହିବ୍ ଦେଓ୍ୟାନ ଏବଂ ଧରିବାକୁ ହେବ ଯେ, ସେମାନଙ୍କର ଜନ୍ମସ୍ଥାନ କେବଳ ଆନନ୍ଦପୁର । ଏହିପରି ଭାବରେ, ମାତ୍ର କେତୋଟି ମୁହୂର୍ତ୍ତରେ ସେମାନେ ସେମାନଙ୍କର ଅତୀତଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ହୋଇଗଲେ ।

ଜଣେ ଜାଠ, ଜଣେ କ୍ଷତ୍ରୀ ଓ ତିନୋଟି ଶୂଦ୍ରଙ୍କ ସମାହାର ଏହି ପଞ୍ଚ ଶିଖ, ଗୁରୁଗୋବିନ୍ଦ-ସୃଷ୍ଟ ଜାତିହୀନ, ଶ୍ରେଣୀହୀନ, ସ୍ୱାର୍ଥହୀନ ଓ ସଂଗ୍ରାମୀ ଖାଲସା ଗୋଷ୍ଠୀର ମୂଳପିଣ୍ଡ ହେଲେ । ଏମାନେ ଏବଠାରୁ ପ୍ରତ୍ୟେକେ ସେମାନଙ୍କ ନାମ ପଛରେ ସିଂହ ବା ସିଂ ସଂଜ୍ଞା ବ୍ୟବହାର କରିବେ ଏବଂ ଆଜନ୍ମ, ସର୍ବଦା ଖାଲସାର ଚିହ୍ନ ରୂପେ ପଞ୍ଚ-'କ' ଧାରଣ କରିବେ—କେଶ, (ମସ୍ତକ ଓ ମୁଖର), କାଙ୍ଘା (ପାନିଆ, ଅଚ୍ଛେଦିତ କେଶକୁ ସୁବିନ୍ୟସ୍ତ ରଖିବା ପାଇଁ) କଡ଼ା (ଲୁହାର ବଳୟ) କଛ୍ (ଅନ୍ତର୍ବାସ) ଓ କର୍ପାଣ (ତଲବାର) । ସେମାନେ ଆଦିଷ୍ଟ ହେଲେ; ଦୀନଜନମାନଙ୍କୁ ସାହାଯ୍ୟ କରିବା ଓ ଅତ୍ୟାଚାରୀ ସହିତ ଲଢ଼ିବା ପାଇଁ, ଏକ ଈଶ୍ୱରଙ୍କଠାରେ ବିଶ୍ୱାସ କରିବା ପାଇଁ ଏବଂ ଧର୍ମ ଓ ଜାତି ନିର୍ବିଶେଷରେ ସବୁ ମନୁଷ୍ୟଙ୍କୁ ସମାନ ଦୃଷ୍ଟିରେ ଦେଖିବା ପାଇଁ । ଶେଷରେ ଗୁରୁ ଗୋବିନ୍ଦ ସିଂ ସେମାନଙ୍କୁ ଏହିପରି ପ୍ରେରଣାଦାୟୀ ବାଣୀ ଶୁଣାଇଲେ—"ମନେ ରଖ ଯେ ତୁମ୍ଭେମାନେ ନାନକଜୀଙ୍କର ସନ୍ତାନ, ତୁମ୍ଭେମାନେ ନିର୍ବାଚିତ, ତେଣୁ ତୁମକୁ ନାମ ଦେଲି 'ଖାଲସା' । ତମେମାନେ ବାଣୀର ଶିଷ୍ୟ ଓ ମାନବର ରକ୍ଷାକର୍ତ୍ତା । ତମେ ସଂପତ୍ତି ସଂଗ୍ରହ କରିବ ନାହିଁ ଏବଂ ଜାତି ଧର୍ମ ନିର୍ବିଶେଷରେ ମନୁଷ୍ୟକୁ ମନୁଷ୍ୟ ବୋଲି ହିଁ ପ୍ରେମ କରିବ । ପ୍ରତ୍ୟହ, ସକାଳେ ଓ ଗଭୀର ଧ୍ୟାନରେ ତମର ସମଗ୍ର ଜୀବନଧାରାକୁ କାଳାତୀତ ଅକାଳଙ୍କ ସହିତ ଏକୀଭୂତ କରିବାକୁ ଚେଷ୍ଟା କରିବ । ଏଧରାରେ ତମେ ତମର ମୁଣ୍ଡ ନୁଆଁଇବ କେବଳ ତମର ଗୁରୁଙ୍କ ନିକଟରେ । ତମେ କେବେ ହେଲେ, କାଠ, ପଥର; ପ୍ରତିମା ବା ସମାଧିକୁ ଉପାସନା କରିବ ନାହିଁ । ଜୀବନର ସଂକଟ ବା ବିପଦରେ ନାନକ, ଅଙ୍ଗଦ, ଅମର ଦାସ, ରାମ ଦାସ, ଅର୍ଜୁନ ଦେବ, ହରଗୋବିନ୍ଦ, ହର ରାୟ, ହରକିଶନ୍ ତେଗ୍-ବାହାଦୁର ପ୍ରଭୃତି ଗୁରୁମାନଙ୍କୁ ସ୍ମରଣ କରିବ । ଏହିମାନଙ୍କ ନାମ ବହନ କରିଥିବା ଏକ ଏକ ଜପମାଳା ମୁଁ ତମ ପ୍ରତ୍ୟେକଙ୍କୁ ଦେବି । କିନ୍ତୁ ତମେ ତା ନେଇ ନିଜ ପାଇଁ କିଛି ପ୍ରାର୍ଥନା ନ କରି, କରିବ ସମଗ୍ର ଖାଲସା ପାଇଁ । ତମ ପ୍ରତ୍ୟେକଙ୍କ ଭିତରେ ଖାଲସା ହିଁ ଯେପରି ମୂର୍ତ୍ତି ପରିଗ୍ରହ କରେ । ତମେମାନେ ଆତ୍ମା ଓ ଶରୀର ଉଭୟରେ ମୋର ପୁତ୍ରବତ୍ ।"

ଏହା କହି ସାରି ଗୁରୁ ଗୋବିନ୍ଦ ସିଂ ଧର୍ମେତିହାସରେ ସବୁଠାରୁ ବିସ୍ମୟକର ଏକ ଘଟଣା ବର୍ତ୍ତମାନ କରି ବସିଲେ ।

ସେ ବର୍ତ୍ତମାନ ସେହି ପଞ୍ଚ ଖାଲ୍‌ସାଙ୍କୁ, ସେ ଯେପରି ସେମାନଙ୍କ ପାଇଁ 'ଅମୃତ' ତିଆରି କରିଥିଲେ, ତାଙ୍କ ପାଇଁ ସେମାନେ ସେହିପରି କରିବାକୁ କହିଲେ । 'ଅମୃତ' ତିଆରି ହୁଅନ୍ତେ ଗୁରୁ ନିଜେ ସେହି ପଞ୍ଚ ଦୀକ୍ଷିତଙ୍କ ଆଗରେ ଯୋଡ଼ହସ୍ତ ହୋଇ ପ୍ରାର୍ଥନା କଲେ ଯେ, ସେମାନେ ତାଙ୍କୁ ଦୟା କରି ଦୀକ୍ଷିତ କରି ଖାଲ୍‌ସାର ନୂତନ ଭ୍ରାତୃତ୍ୱ ଦିଅନ୍ତୁ । ଶିଷ୍ୟମାନଙ୍କୁ, ଗୁରୁଙ୍କର ଏ ପ୍ରକାରର ଅନୁରୋଧ ଅତ୍ୟନ୍ତ ଅଦ୍ଭୁତ ଶୁଣାଗଲା ଏବଂ ଆଦେଶ ପାଳନ ପାଇଁ ସେମାନେ କୁଣ୍ଠିତ ହେଲେ । ଗୁରୁ ଗୋବିନ୍ଦ ସିଂ ସେମାନଙ୍କୁ ବୁଝାଇଦେଲେ ଯେ, ସେ ସ୍ୱୟଂ ଅକାଳଂକ ଆଜ୍ଞାରେ ଖାଲ୍‌ସା ସୃଷ୍ଟି କରିଛନ୍ତି; ଗୁରୁ ସେମାନଙ୍କ ମଧ୍ୟରୁ ଜଣେ ହେବେ; ଖାଲ୍‌ସା ଓ ତାଂକ ଭିତରେ କୌଣସି ପ୍ରଭେଦ ରହିବ ନାହିଁ । ସେ ନିଜ ପ୍ରତିମାନୁଯାୟୀ ଖାଲ୍‌ସାକୁ ସୃଷ୍ଟି କରିଛନ୍ତି । ଖାଲ୍‌ସା ତାଂକ ବ୍ୟକ୍ତିତ୍ୱର ଏବଂ 'ଇଷ୍ଟ ସୁହୃଦ' (ଆଦର୍ଶ)ର ବିଗ୍ରହାନ୍ୱିତ ପ୍ରକାଶ ମାତ୍ର । ଗୁରୁଜୀ କହିଲେ,— "ଗୁରୁ ନାନକ ଯେପରି ଗୁରୁ ଅଙ୍ଗଦଙ୍କୁ ଗାଦିରେ ବସାଇଲେ, ସେହିପରି ମୁଁ ଗୁରୁ ଗାଦିରେ ବସାଇଲି, ଖାଲ୍‌ସାକୁ ।"

ଗୁରୁ ଗୋବିନ୍ଦ ସିଂ ତାଂକର 'ଶିଖ୍' (ଶିଷ୍ୟ)ମାନଙ୍କୁ ମନେ ମନେ ଅତ୍ୟନ୍ତ ସମ୍ମାନ କରୁଥିଲେ । 'ଖାଲ୍‌ସା ମହିମା'ରେ ସେ ଲେଖିଛନ୍ତି :—

"ମୁଁ ମୋର ଶିଖ (ଶିଷ୍ୟ ମାନଙ୍କର ଅନୁଗ୍ରହରୁ ହିଁ ସବୁ ଯୁଦ୍ଧ ଜିଣିଛି । ସେହିମାନଙ୍କ ଅନୁଗ୍ରହ ହିଁ ମତେ ଉଦାର ଭାବରେ ଦାନ କରିବାର ଶକ୍ତି ଦେଇଛି, ସେହିମାନଙ୍କ ସହାୟତାରେ ହିଁ ମୋର କଷ୍ଟଯାକ ଆଡ଼େଇ ହୋଇ ଯାଇଛି ଏବଂ ସେମାନଙ୍କ ସଦିଚ୍ଛା ହିଁ ମୋର ଶ୍ରୀବୃଦ୍ଧି କରିଛି । ତାଂକର ଯୋଗୁଁ ମୁଁ ହୋଇଛି ଜ୍ଞାନବାନ୍, ତାଂକରି ଯୋଗୁଁ ମୁଁ ହୋଇ ପାରିଛି ବିଜୟୀ, ସେହିମାନଙ୍କ ଦୟାରୁ ହିଁ ମୁଁ ଉଠିଛି ସୌଭାଗ୍ୟର ଶିଖରକୁ, ନଚେତ୍, ମୁଁ କି ଲୋକ ?—ମୋ ପରି ସାମାନ୍ୟ ଜନ ଏ ଧରାରେ କୋଟି କୋଟି ସଂଖ୍ୟାରେ ଅଛନ୍ତି ।"

× × × ×

ମୋର ଦେହ, ମୋର ମନ, ମୋର ବୁଦ୍ଧି, ମୋର ଧନ ଏବଂ ଯାହା କିଛି ମୋହର, ସବୁ ହିଁ ମୋର ଶିଖ (ଶିଷ୍ୟ)ମାନଙ୍କ ସେବାରେ ଲାଗୁ ।"

ପଞ୍ଚ ନବ-ଦୀକ୍ଷିତ ଶିଖ୍, ଗୁରୁଂକ ଆଦେଶରେ 'ଅମୃତ' ଛଆଣ କଲେ । ଗୁରୁଜୀ ସ୍ୱଶିଷ୍ୟମାନଙ୍କ ସମ୍ମୁଖରେ ଖାସନରେ ବସିଲେ ଏବଂ ସେମାନଙ୍କଠାରୁ ଦୀକ୍ଷା ଗ୍ରହଣ କରି ଠିକ୍ ସେହିମାନଙ୍କ ପରି

"ଓ୍ୱାହି ଗୁରୁଜୀକା ଖାଲ୍‌ସା
ଓ୍ୱାହି ଗୁରୁଜୀକା ଫଂତେ"

ଉଚ୍ଚାରଣ କଲେ । ପରେ କହିଥିବା ଜଣେ କବିଙ୍କ ଭାଷାରେ "ସେହି ଗୁରୁଙ୍କୁ ଆମ୍ଭେ ବନ୍ଦନା କରୁଛୁଁ, ଯେ ଏକାଧାରରେ ଗୁରୁ ଓ ଶିଷ୍ୟ ।" ଗୁରୁ ଗୋବିନ୍ଦଜୀ ଏଯାବତ୍, ପ୍ରକୃତରେ ଗୋବିନ୍ଦ ଦାସ ନାମରେହିଁ ପରିଚିତ ଥିଲେ । ଏହି ନବଗୀତରେ ଦୀକ୍ଷାପ୍ରାପ୍ତି ପରେହିଁ ସେ ଗୋବିନ୍ଦ ସିଂ ବୋଲାଇଲେ, ତାଙ୍କର ଖାଲ୍‌ସା ଶିଷ୍ୟମାନଙ୍କ ପରି । ସେ ବର୍ତ୍ତମାନ ଖାଲ୍‌ସା ସହିତ ଏକୀଭୂତ ହୋଇଗଲେ । ଖାଲ୍‌ସା ଓ ତାଙ୍କର ବ୍ୟକ୍ତିତ୍ୱ ଏକ୍ ହୋଇଗଲା ।

ଗୁରୁ ଗୋବିନ୍ଦ ସିଂ ବର୍ତ୍ତମାନ ସମବେତ ଶିଖ୍ ଜନତାଙ୍କୁ ସମ୍ବୋଧନ କଲେ । ସେଠାରେ ଉପସ୍ଥିତ ଥିବା ମୋଗଲ-ଦରବାରର ଏକ ଭେଦିଆ ପଠାଇଥିବା ପତ୍ରରୁ ଜଣାଯାଉଛି ଯେ, ଯେଉଁମାନେ ସ୍ତ୍ରୀମାନଙ୍କୁ ସତୀ ଭାବରେ ଭାବରେ ପୋଡ଼ି ମାରନ୍ତି, ପିତୁଳା ପୂଜା କରନ୍ତି ଏବଂ କନ୍ୟାମାନଙ୍କୁ ମାରି-ପକାନ୍ତି ସେମାନଙ୍କ ସହିତ କୌଣସି ପ୍ରକାର ସମ୍ପର୍କ ନ ରଖିବାକୁ ସେ ସେମାନଙ୍କୁ ଉଦ୍‌ବୋଧିତ କରିଥିଲେ । ସେହିପରି ଯେଉଁମାନେ ହିନ୍ଦୁମାନଙ୍କୁ ମୋଗଲମାନେ ବନ୍ଦୀ ହେବା ପାଇଁ ଦେଇ ଦିଅନ୍ତି, ସେମାନଙ୍କ ସହିତ ଯେପରି ସେମାନେ କିଛି ସମ୍ପର୍କ ରଖିବେନ । ତାପରେ ସେ ଶିଖମାନଙ୍କୁ ଉପଦେଶ ଦେଲେ ଯେ, ମଧ୍ୟ ସେମାନେ ଜାତିପ୍ରଥା ସ୍ୱୀକାର ନ କରି ଶିଖମାନେ ଏକତ୍ର ଭୋଜନ କରିବେ, ପ୍ରତ୍ୟେକ ଶିଖ୍ ଅନ୍ୟ ଶିଖ୍‌କୁ ଭାଇ ବୋଲି ଭାବିବ, ପ୍ରତ୍ୟେକ ଶିଖ୍ ବିପଦରେ ପଡ଼ିଥିବା ଅନ୍ୟ ଶିଖ୍‌କୁ ସାହାଯ୍ୟ କରିବେ, କୌଣସି ଶିଖ୍ କେବେହେଲେ ଭିକ୍ଷା କରିବେ ନାହିଁ ଏବଂ ନିଜ ଶ୍ରମ-ଫଳରେହିଁ ବଞ୍ଚିବେ, ପୁଣି ନିଜ ଅର୍ଜନର ଦଶମାଂଶ ସାଧାରଣ ବ୍ୟୟ ପାଇଁ ଦେବେ । ସେମାନେ ପରସ୍ପରର ସମ୍ପତ୍ତି, ପ୍ରତି କ ଧର୍ମ ପାଇଁ-ଉତ୍ସୃଷ୍ଟ-ସମ୍ପତ୍ତି ପ୍ରତି ଲୋଭ କରିବେ ନାହିଁ । ଗୁରୁଜୀ ଧର୍ମୋଦ୍ଦିଷ୍ଟ ସମ୍ପତ୍ତି ପ୍ରତି ଶିଖମାନଙ୍କୁ ବିଶେଷ ଭାବରେ ସାବଧାନ କରାଇ ଦେଇଥିଲେ । ଏ ସମ୍ପର୍କରେ

ପ୍ରାପ୍ୟସ ଗୁରୁ ଅର୍ଜ୍ଜୁନଙ୍କ ସମକାଳୀନ କବି ଭାଇ ଗୁରୁ ଦାସଙ୍କ ନିମ୍ନଲିଖିତ ପଦ୍ୟ-ପଂକ୍ତିଗୁଡ଼ିକୁ ସେ ଉଦ୍ଧାର କରିଥାନ୍ତି —

"ହିନ୍ଦୁ ଯେପରି ଗୋମାଂସକୁ ଦେଖେ,
ମୁସଲମାନ ଦେଖେ ଶୂକର ମାଂସ ଓ କୁଶୀଦକୁ
ଶ୍ୱଶୁର ଯେପରି ଜାମାତା ଘରେ ଟୋପାଏ ପାଣି ମଧ୍ୟ ପିଏନା,
କ୍ଷୁଧାର୍ତ୍ତ ଚମାର ଯେପରି ଶଶକମାଂସ ସ୍ପର୍ଶ କରେ ନାହିଁ,
ମକ୍ଷିକା ଯେପରି ମଧୁ ଲୋଭରେ ପ୍ରାଣହିଁ ହରାଇଥାଏ,
ଶିଖ୍ ପ୍ରତି ସେହିପରି ଧର୍ମ-ସମ୍ପତ୍ତି, ଯାହାକୁ ସେ ମନେ କରିବ,
କେବଳ ଶର୍କରା ବେଷ୍ଟିତ ହଳାହଳ ମାତ୍ର !"

ଏକମାତ୍ର ଏକ-ଈଶ୍ୱରରେ ବିଶ୍ୱାସ ଶିଖ୍‌ମାନଙ୍କର ସକଳ କର୍ମର ମୂଳ ଭିତ୍ତି ହେଲା । ସେହି ବିଶ୍ୱାସ ସେମାନଙ୍କର ପ୍ରତ୍ୟେକ କାର୍ଯ୍ୟକୁ ମର୍ଯ୍ୟାଦା ଯୋଗାଇଲା । ଗୁରୁ ଗୋବିନ୍ଦ ସିଂ ପ୍ରତ୍ୟେକ ଶିଖ୍ ଯାହା କିଛି କରିବା ଆଗରୁ ସେହି ଏକ ଈଶ୍ୱରଙ୍କର ଆଶୀର୍ବାଦ ଭିକ୍ଷା କରି ନିୟମିତ ଭାବରେ ପ୍ରାର୍ଥନା କରିବା ପାଇଁ ଉପଦେଶ ଦେଇଥିଲେ ।

ନିଜ ଜାତିର ଉନ୍ନତି ପାଇଁ ଏହି ଖାଲ୍‌ସା-ସୃଷ୍ଟି ହେଲା, ଗୁରୁ-ଗୋବିନ୍ଦ ସିଂଙ୍କର ଦୈବିକ ଅନ୍ତର୍ଦୃଷ୍ଟି ଓ କବି-କଳ୍ପନାର ମହାନ୍ ପରିଣତି । ସମଗ୍ର ଇତିହାସରେ ଏହା ଏକ ବିଶିଷ୍ଟ ସୃଷ୍ଟି ଓ ଘଟଣା । ଏହା ଶିଖ୍‌ମାନଙ୍କର ସୁପ୍ତ ଶକ୍ତିକୁ ଜାଗ୍ରତ କରାଇ ପରୋପକାର ଅର୍ଥାତ୍ ସମୂହ ଉପକାର ଆଡ଼କୁ ଅଭିମୁଖୀ କରାଇଲା । ସେମାନେ ନିଜର ପତିତ ଅବସ୍ଥା ସମ୍ପର୍କରେ ଗଭୀର ଭାବରେ ସଚେତନ ହେଲେ ଏବଂ ସେଥିରୁ ଉଦ୍ଧାର କେବଳ ସେହିମାନଙ୍କର ଆତ୍ମଚେଷ୍ଟା ଦ୍ୱାରାହିଁ ଯେ ସମ୍ଭବ, ଏହାମଧ୍ୟ ସେମାନେ ବୁଝିଲେ । ବହୁ ଯୁଗର ଯେଉଁ କୁସଂସ୍କାରସବୁ ସେମାନଙ୍କର ସ୍ୱାଧୀନ ଶକ୍ତି ଓ ବୁଦ୍ଧିକୁ ବନ୍ଦୀ ଓ ଭୀରୁ କରି ରଖିଥିଲା, ସେସବୁକୁ ସେମାନେ ପରିତ୍ୟାଗ କଲେ । ବର୍ତ୍ତମାନ ସେମାନେ ନିଜ ନିଜ ଭିତରେ ଏକ ନୂତନ ଅସ୍ମିତା ଅନୁଭବ କଲେ । ସମଗ୍ର ଉତ୍ତର ଭାରତରେ ନବ ଶୌର୍ଯ୍ୟର ଏକ ବନ୍ୟା ବୋହିବାକୁ ଆରମ୍ଭ କଲା, ଯାହା ଅସାଧାରଣ ଓ ବିସ୍ମୟକର ବୀରତ୍ୱ ସୃଷ୍ଟି କଲା କେବଳ ନୁହେଁ ଯାହା ଇତିହାସକୁ ନୂତନ ନିର୍ଦ୍ଦିଷ୍ଟ ମାର୍ଗରେ ଚଳାଇ ପାରିଲା ।

ଯୁଗଯୁଗର ଗୋଟିଏ ନିତାନ୍ତ ଭାଗ୍ୟବାଦୀ, ନିରାଶଚିତ୍ତ, ନିଷ୍କର୍ମା ଜାତିକୁ, ସହସା ଏପରି ବୀର୍ଯ୍ୟବାନ, ଉତ୍ସାହୀ, କର୍ମକୁଶଳ ଯେ କରି ପକାଇଲେ, ଗୁରୁ ଗୋବିନ୍ଦ ସିଂକ ଜୀବନର ତାହାହିଁ ହେଉଛି ସର୍ବଶ୍ରେଷ୍ଠ ବିସ୍ମୟକର କୃତି । ତାଙ୍କର ପୂର୍ବଶତ୍ରୁ, ଗୁରୁ ପାଖରେ ପାର୍ବତ୍ୟ ରାଜାମାନଙ୍କୁ ଖାଲ୍‌ସାରେ ଯୋଗ ଦେଇ, ଏକତ୍ର ଅତ୍ୟାଚାରୀ ମୋଗଲ ବିରୁଦ୍ଧରେ ଲଢ଼ାଇ କରିବାପାଇଁ ଗୁରୁଜୀ ଡାକନ୍ତେ ସେମାନେ ଉତ୍ତର ଦେଇଥିଲେ— "ବାପ୍‌ରେ ! ଘରଚଟିଆ କି ଛଞ୍ଚାଣ ସାଙ୍ଗେ ଲଢ଼ି ପାରେ, କିମ୍ବା ଶୃଗାଳ, ବାଘ ସାଥିରେ ? ଜଣେ ତୁର୍କ (ମୋଗଲ ବା ମୁସଲମାନ) ଏକା ଏକା ଗୋଟାଏ ପୂରା ଛେଳି ଖାଇଦେବ ; ଆମେ ଭାତ-ଖିଆ ଲୋକ; ସେପରି ଦୈତ୍ୟମାନଙ୍କ ସାଥିରେ ପାରି ଉଠିବା ନା ?"

ଗୁରୁଗୋବିନ୍ଦ ସିଂଙ୍କର ସ୍ୱପ୍ନ ହେଲା ସେ ଏହି ଭୀରୁତା, ଏହି ପରାଜୟ-ମନୋବୃତ୍ତିକୁ ଜାତିର ଚେତନାରୁ ପୋଛି ଦେଇ ତା ଜାଗାରେ ରୋପିବେ ସାହସ, ବୀର୍ଯ୍ୟ ଓ ଉତ୍ସାହ । ସେ ବର୍ତ୍ତମାନ ଖାଲ୍‌ସାର 'ଅମୃତ' ଦୀକ୍ଷା ଦେଇ ଜାତିକୁ ଏହି ମରଣ-ଜୟ ମନ୍ତ୍ର ଦେଇ ପାରିଲେ । ସେ ସେହି ମନ୍ତ୍ରବଳରେ ଜଣେ ଶିଖ୍‌କୁ "ସଓ୍ୱା ଲାଖ୍‌" ଲୋକଙ୍କ ସମାନ କରାଇ ପାରିଲେ ଏବଂ ସତ୍ୟରେ ତଥାକଥିତ ଘରଚଟିଆ ଦ୍ୱାରା ଛଞ୍ଚାଣର ବେକ ଚିପି ପାରିଲେ । କ୍ଷତ୍ରୀମାନଙ୍କ କଥା ଛାଡ଼ିଦିଅ, ଚମାର, ନାପିତ, ତନ୍ତୀ ପ୍ରଭୃତି ସେ ଯାବତ୍ ଅବହେଳିତ ନିମ୍ନ ଶ୍ରେଣୀର ଲୋକେ ଯେଉଁମାନେ ରକ୍ତ ଦେଖିଲେ ପୂର୍ବେ ଛୁଆଁ ହୋଇ ଯାଉଥିଲେ, ଏବଂ ତରବାରି ଆଗରେ ମୁଣ୍ଡ ନୁଆଁଇବା ଛଡ଼ା ଯାହାଙ୍କର ଅନ୍ୟ ପନ୍ଥା ନଥିଲା, ଗୁରୁ ଗୋବିନ୍ଦ ସିଂଙ୍କ 'ଅମୃତ'-ମନ୍ତ୍ର ସେମାନଙ୍କୁ ମଧ୍ୟ ଦେଇ ପାରିଲା ବୀରତ୍ୱ-ଗୌରବ ଓ ଯୋଦ୍ଧାର ଯଶ । ଭାରତର ଖଞ୍ଜ, ଭଗ୍ନ-ଜାନୁ ଶରୀରରେ ଗୁରୁ ଗୋବିନ୍ଦ ସିଂ ନୂତନ ଜୀବନ ଓ ଉତ୍ସାହ ଭର୍ତ୍ତି କରିଦେଇ ଗଲେ ।

କି ଦୂରଦୃଷ୍ଟି ବଳରେ ଗୁରୁଜୀ ଶିଖ୍‌ମାନଙ୍କୁ କେଶ ଓ ଶ୍ମଶ୍ରୁ ନ କାଟିବାକୁ ଉପଦେଶ ଦେଲେ, କେଜାଣି; ସେହି ଗୋଟିକ ଆଦେଶ ସମଗ୍ର ଜାତିର ଚେହେରା ବଦଳାଇ ଦେଲା । ପ୍ରତ୍ୟେକ ପୁରୁଷ ଶିଖ୍, 'ସିଂ' ସଂଜ୍ଞା ସାର୍ଥକ, ପ୍ରକୃତରେ ଦିଶିଲେ ଏକ ଏକ ସିଂହ ପରି । ସରଳ ଓ ଶକ୍ତିମନ୍ତ ଶିଖ୍-ଧର୍ମ ଆତ୍ମାକୁ ଉଦାର, ଉନ୍ନତ ଓ ପ୍ରସାରିତ କରିବା ସାଥେ ସାଥେ, ଶିଖ୍ ସଂପ୍ରଦାୟର ଶାରୀରିକ ଗଠନରେ ମଧ୍ୟ ବିସ୍ମୟକର ପରିବର୍ତ୍ତନ ଆଣିଲା ।

ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀର ଶିଖ ଯୋଦ୍ଧାମାନେ ଶରୀର ଓ କର୍ମ, ଉଭୟରେ ବିଶାଳ ଥିଲେ । ସେ କାଳର ଜାସାସିଂ ଆଲୁଓ୍ୱାଲିଆ, ନବାବ କାପୂରସିଂ, ସାମ୍‌ସିଂ ଅଟାରଓ୍ୱାଲି ଏବଂ ମହାରାଜ ସେର ସିଂ ପ୍ରଭୃତିଙ୍କର ଖ୍ୟାତିତ କର୍ମ, ସମସାମୟିକ କାଳରେ ଅଲିଭା ରେଖା ଆଙ୍କି ଯାଇଛୁ । ଏମାନେ, ଅସାଧାରଣ ଶୌର୍ଯ୍ୟ ସହିତ ଅସାଧାରଣ ଶାରୀରିକ ପ୍ରସ୍ଥ ଓ ଉଚ୍ଚତା ଏବଂ ଅସାଧାରଣ ଶାରୀରିକ ସୌନ୍ଦର୍ଯ୍ୟର ମଧ୍ୟ ଅଧିକାରୀ ଥିଲେ ।

ଏହିପ୍ରକାରେ, ଗୁରୁ ଗୋବିନ୍ଦ ସିଂଙ୍କର ଖାଲ୍‌ସା-ସର୍ଜନାକୁ ନାନକଜୀ-ପ୍ରବର୍ତ୍ତିତ ଶିଖ୍‌ଧର୍ମର ୨୩୦ ବର୍ଷର ଇତିହାସର ପରିଣତି କହିଲେ ଚଳେ । ନାନକଙ୍କ ସମୟଠାରୁ ଆରମ୍ଭ କରି, ଦଶ ଗୁରୁଂକ ଜୀବନ ଓ ନିର୍ଦ୍ଦେଶ ଏବଂ ସମସାମୟିକ ଘଟଣାମାନଙ୍କର ଉପରେ ଯେଉଁ ବିବର୍ତ୍ତନ ଚାଲିଥିଲି, ଗୁରୁ ଗୋବିନ୍ଦ ସିଂଙ୍କ ଶିକ୍ଷା ଓ କର୍ମରେ ତାହା ପରିପକ୍ୱତା ଲାଭ କଲି । ପୂର୍ବେ ଯାହା ଏକ ଧର୍ମ-ସାଧନା ମାତ୍ର ଥିଲି; ବର୍ତ୍ତମାନ ତାହା ହୋଇ ଉଠିଲି ଏକ ରାଜନୈତିକ ଶକ୍ତି । କିନ୍ତୁ ମହାନ୍ ସ୍ଥାପୟିତାଙ୍କର ମୂଳ ଉପଦେଶ ଠିକ ପରି ପୂର୍ବ ଜୀବନ୍ତ ଓ କାର୍ଯ୍ୟକାରୀ ରହିଲି । ବସ୍ତୁତଃ ଗୁରୁ ଗୋବିନ୍ଦ ସିଂ ପ୍ରବର୍ତ୍ତିତ ଖାଲ୍‌ସାର ସକଳ କଠୋର ବିଧିବିଧାନର ମୂଳ, ଆମେ ପୂର୍ବ ଗୁରୁମାନଙ୍କର ଉପଦେଶାବଳୀରେ ନିମ୍ନୋକ୍ତରେ ଖୋଜିପାଇବା । ପ୍ରଥମରେ, ଗୁରୁ ଗୋବିନ୍ଦ ସିଂକର ପୌତ୍ତଳିକତା ବିରୋଧ ଏବଂ ଏକେଶ୍ୱରବାଦ ଉପରେ ଜୋର, ନାନକଜୀଂକ ଠାରୁ ହିଁ ଆରମ୍ଭ । ଦ୍ୱିତୀୟରେ ନାନକ ଜୀ କେବେହେଲେ ମୋକ୍ଷ ପ୍ରଭୃତି ବ୍ୟକ୍ତିଗତ ଉପକାରକୁ ଧର୍ମ ସାଧନାର ଏକାନ୍ତ ଲକ୍ଷ୍ୟ ବୋଲି କହି ନ ଥିଲେ । ନାନକ-ପ୍ରବର୍ତ୍ତିତ ଧର୍ମର ପ୍ରଧାନ ଲକ୍ଷ୍ୟ ମଧ୍ୟ ଥିଲି ସାମାଜିକ ଉନ୍ନତି ଦେଇ ହିଁ ବ୍ୟକ୍ତିର ଉନ୍ନତି । ତୃତୀୟରେ ନାନକଜୀ ଜାତିପ୍ରଥା ଇତ୍ୟାଦି କୁସଂସ୍କାରର ମଧ୍ୟ ବିରୋଧ କରିଥିଲେ । ଚତୁର୍ଥରେ, ନାନକଜୀ ମଧ୍ୟ ବୈଦେଶିକ ଆକ୍ରମଣ ଓ ସମସାମୟିକ ଶାସକମାନଙ୍କର ଅନ୍ୟାୟ ଓ ନୃଶଂସତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଏହିପରି ଭାବରେ ଗତ ଦୁଇ ଶତ ବର୍ଷ ଧରି ପ୍ରତି ଗୁରୁଙ୍କୁ କେନ୍ଦ୍ର କରି ଶିଖ-ସଂଗତ ଗୋଟିଏ ନିବିଡ଼, ସଂହତ ସଂପ୍ରଦାୟ ଭାବରେ ଗଢ଼ି ହୋଇ ଆସୁଥିଲି । କେବଳ ସେତିକ ନୁହେଁ, ପ୍ରତ୍ୟେକ ଗୁରୁ, ନିଜ ଅପେକ୍ଷା ସଂଗତକୁ ବଡ଼ ଆସନ ଦେଇ ଆସୁଥିଲେ । 'ଗୁରୁ ଯଦି କୋଡିଏ, ତେବେ ସଂଗତ ଏକୋଇଶ ।'—ଏହିପରି ଏକ ପ୍ରବାଦ ସୃଷ୍ଟି ହୋଇ ଯାଇଥିଲି, ଶିଖମାନଙ୍କ ଭିତରେ ।

କୁସଂସ୍କାରଯୁକ୍ତ, ଏକେଶ୍ୱରବାଦୀ, ହିନ୍ଦୁ ଧର୍ମର ନାନା-ଅର୍ଥହୀନ-ଯୁକ୍ତି-ହୀନ-କ୍ରିୟା କାଣ୍ଡରୁ-ଉଦ୍ଧାର-ପାଇଥିବା, ନବ ଗୁରୁଙ୍କ ନିର୍ଦ୍ଦେଶରେ ଗଢ଼ି ହୋଇ ଆସୁଥିବା ଏହିପରି ଏକ ଶିଖ ସଂପ୍ରଦାୟ, ଗୁରୁ ଗୋବିନ୍ଦ ସିଂହ-ପ୍ରେରଣାରେ-ସୃଷ୍ଟ ଖାଲସାର ମୂଳ ପତ୍ତନ ହେଲା । ଏହି ଗୋଷ୍ଠୀର ସାମରିକ ଚେତେନା ମଧ୍ୟ ପୂର୍ବତନ ଗୁରୁମାନଙ୍କ ସମୟରୁ ଆସ୍ତେ ଆସ୍ତେ ଦେଖା ଦେଇଥିଲା । ଖାଲସା ଏକାବେଳକେ ନୂତନ ନୁହେଁ । ଷଷ୍ଠ ନାନକ ହରିଗୋବିନ୍ଦ, ଗୁରୁ ଗାଦିରେ ବସିଲାବେଳେ, ଜପାମାଳ ପ୍ରଭୃତି ସାଧୁ-ଚିହ୍ନ ପରିତ୍ୟାଗ କରି, କ୍ଷତ୍ରିୟର ବେଶ ଧାରଣ କରିଥିଲେ । ଦୁଇହାତରେ ଦୁଇଟି ଖଣ୍ଡା ଧରି ସେ କହିଥିଲେ, ଗୋଟିଏ ତାଂକର ଧର୍ମୀୟ ଏବଂ ଆରଟି ତାଂକର ପାର୍ଥିବ ଅଧିକାରର ପ୍ରତୀକ । ଗୁରୁ ଗୋବିନ୍ଦ ସିଂହ ପ୍ରେରଣା ଓ ପରିଚାଳନାରେ, ଅସଂପୃକ୍ତ ଭାବରେ ଦେଖା ଦେଇଥିବା ଧର୍ମ-ସାଧନା ଓ ସମର-ସାଧନା, ଆଧ୍ୟାତ୍ମିକତା ଓ ପାର୍ଥିବତା ବର୍ତ୍ତମାନ ଖାଲସା-ଅନୁଷ୍ଠାନରେ ଏକୀଭୂତ ହୋଇ ଏକ ଶକ୍ତିଶାଳୀ ଯନ୍ତ୍ର ରୂପେ ଠିଆହେଲା, ମନୁଷ୍ୟର କଲ୍ୟାଣ ପାଇଁ ଖଡ଼୍‌ଗ, ଖାଲ୍‌ସାର ପ୍ରତୀକ ଥିଲା ସତ, କିନ୍ତୁ ଶ୍ରଦ୍ଧାବାନ୍ ଶିଖ ଏକ ହାତରେ ଖଡ଼୍‌ଗ ଧରି, ଆରହାତ ମୁକ୍ତ ରଖିଲା ଜପାମାଳୀ ପାଇଁ । ଏହା ହିଁ ଖାଲ୍‌ସାର ପ୍ରକୃତ ଛବି ।

---

# ଅଷ୍ଟମ ଅଧ୍ୟାୟ

## ଚଟିଆ ଓ ଛଞ୍ଚାଣ ମୁଖାମୁଖି ହେଲେ

ଗୁରୁ ଗୋବିନ୍ଦ ସିଂ ବର୍ତ୍ତମାନ ୩୩ ବର୍ଷ ବୟସ୍କ । ତାଙ୍କର ଶାରୀରିକ ଓ ମାନସିକ ଶକ୍ତି ମାଧ୍ୟନ୍ଦିନ ପ୍ରଚଣ୍ଡତା ଯେନ ବିରାଜିତ । ତାଙ୍କର ଭକ୍ତ, ସମର୍ଥକ, ଅନୁଗାମୀ ଓ ଅନୁଚରଙ୍କ ବୃନ୍ଦ ପ୍ରତ୍ୟହ ବଢ଼ି ଚାଲିଛି । ଯେପରି ନାଟକୀୟ ରୀତି ଓ ଆଧ୍ୟାତ୍ମିକ ରହସ୍ୟରେ ଆବୃତ କରି ସେ 'ଖାଲ୍‌ସା' ସୃଷ୍ଟି କଲେ ଏବଂ ଯେପରି ଭାବରେ ସେ ପରିପୂର୍ଣ୍ଣ ଭାବରେ ନିଜକୁ ଖାଲ୍‌ସା ସହିତ ମିଶାଇଦେଲେ, ତାହା ନିଃଶେଷ ଭାବରେ ଜନତାର ଶ୍ରଦ୍ଧା ଓ ବିଶ୍ୱାସ ତାଙ୍କ ପ୍ରତି ଓଟାରି ଆଣିଲା ଏବଂ ସେ ଖାଲ୍‌ସାକୁ ନିଜ ଅଭିଳାଷର ପରିପୂର୍ତ୍ତି ପାଇଁ ଏକ ସହଜ ବ୍ୟବହାର୍ଯ୍ୟ, ଆତ୍ମ-ସମ୍ପୂର୍ଣ୍ଣ ଯଥାଯୋଗ୍ୟ ଯନ୍ତ୍ର ରୂପେ ଗଢ଼ି ଚାଲିଲେ । ସେ ବର୍ତ୍ତମାନ ଏକ ଆତ୍ମ-ସମ୍ମାନ-ସଚେତନ ଓ ଦୃଢ଼-ସଂହତି-ସମ୍ପନ୍ନ ଗୋଷ୍ଠୀର ଶ୍ରଦ୍ଧା ଓ ବିଶ୍ୱାସର ଏକମାତ୍ର କେନ୍ଦ୍ର ହୋଇ ଉଠିଲେ । ଏପରିକି, ତାଙ୍କର ଆଦେଶ ପରିପାଳନ କରିବାକୁ ପ୍ରତ୍ୟେକେ ବର୍ତ୍ତମାନ ପରମ ଓ ଦୁର୍ଲଭ ସୌଭାଗ୍ୟ ବୋଲି ମନେ କଲେ ।

ଏଥରର ବୈଶାଖୀ ଉତ୍ସବରେ ଯୋଗ ଦେଇ ଶିଖ୍‌ମାନେ ଯେତେବେଳେ ନିଜ ନିଜ ଘରକୁ ଫେରିଲେ, ସେମାନେ ଏପରି ଉତ୍ସାହିତ ଓ ଉଦ୍‌ବୁଦ୍ଧ ହୋଇ ଯାଇଥିଲେ ଯେ, ସେମାନେ ଆପେ ଆପେ ଗାଁଏ ଗାଁଏ ଇଚ୍ଛୁକ ଅନ୍ୟମାନଙ୍କୁ ଖାଲ୍‌ସାର ଦୀକ୍ଷା ଦେବାକୁ ଲାଗିଲେ । ଗୁରୁଜୀଙ୍କ ଦ୍ୱାରା ଆନନ୍ଦପୁରରେ ଅନୁଷ୍ଠିତ ପ୍ରଥା ଅନୁସାରେ ଯେ କୌଣସି ପୂର୍ବରୁ-ଦୀକ୍ଷିତ ପାଞ୍ଚଜଣ ଶିଖ୍ ଏକାଠି ବସି ଅନ୍ୟମାନଙ୍କୁ ଅମୃତ-ମନ୍ତ୍ର ଦେଇ ପାରିବେ । ଏହାର ଅନ୍ୟ ତାତ୍ପର୍ଯ୍ୟ ଏହି ହେଲା ଯେ, ଯେଉଁଠି ପାଞ୍ଚଜଣ ଶିଖ୍ କୌଣସି ଧର୍ମାନୁଷ୍ଠାନ ପାଇଁ ଏକାଠି ହେବେ, ମନେ କରାଯିବ ଯେ, ଗୁରୁଙ୍କର ଆତ୍ମିକ ପ୍ରତିନିଧି ସେଠାରେ ଉପସ୍ଥିତ । ଆନନ୍ଦପୁରରୁ ଫେରିଥିବା ଶିଖ୍‌ମାନେ ଗାଁଏ ଗାଁଏ ପ୍ରଚାର କଲେ— ସେମାନେ ଏଥରର ବୈଶାଖୀ ଉତ୍ସବରେ କି ଦୃଶ୍ୟ ଦେଖିଲେ, କି ଅଭିଜ୍ଞତା ଗ୍ରହଣ କଲେ । ନଯାଇଥିବା ଲୋକେ ବର୍ଣ୍ଣନାକାରୀମାନଙ୍କର

ପରିବର୍ତ୍ତିତ ଜୀବନ ଓ ନୂତନ ଉତ୍ସାହରେ ତାହା ପ୍ରତ୍ୟକ୍ଷ କଲେ । ନବ-ଦୀକ୍ଷାର ପ୍ରତୀକ ସବୁ (ପାଂଚ 'କ') ସେମାନଙ୍କୁ ଉନ୍ମାଦିତ କଲା । ଅନେକେ ଉତ୍ସାହିତ ହୋଇ ନିଜେ ନିଜେ ଗୁରୁଙ୍କଠାରୁ ପ୍ରତ୍ୟକ୍ଷ ଦୀକ୍ଷା ନେବାପାଇଁ ଆନନ୍ଦପୁର ଧାଇଁଲେ । ପରବର୍ତ୍ତୀମାନଙ୍କରେ ତେଣୁ ଆନନ୍ଦପୁରରେ ଯାତ୍ରୀସଂଖ୍ୟା ଉତ୍ତରୋତ୍ତର ବୃଦ୍ଧି ପାଇଲା । ବିଶେଷକରି ବହୁ ସଂଖ୍ୟାରେ ଆସିଲେ ହିନ୍ଦୁ-ସମାଜର ପତିତ-ଗୋଷ୍ଠୀ ସବୁ; ଯେଉଁମାନେ ଯୁଗ ଯୁଗ ଧରି ଅମାନୁଷିକ ହୀନତା ଭିତରେ କାଳଯାପନ କରୁଥିଲେ, ଗୋଟାଏ ଧର୍ମର ବିଧିବିଧା ନାମରେ । ସେମାନେ ବର୍ତ୍ତମାନ ଯୁଗ ଯୁଗର ହୀନମନ୍ୟତା ପରିତ୍ୟାଗ କରି, ସମାଜର ସର୍ବୋଚ୍ଚଶ୍ରେଣୀ ସହିତ ସମାନ ହେବାର ଆସ୍ପର୍ଦ୍ଧା ରଖିଲେ । ସେହିପରି ଉତ୍ସାହୀ ହୋଇ ଉଠିଲେ ପଞ୍ଜାବର କୃଷକ ସମାଜ, ଯେ କି ଗୁରୁଗୋବିନ୍ଦ ସିଂଙ୍କଠାରେ, ସେମାନଙ୍କ ରୁଚି ଅନୁଯାୟୀ ପ୍ରଚୁର ଶାରୀରିକ ଶକ୍ତିଶାଳୀ ଓ ସାହସୀ ଏକ ନେତା ପାଇଲେ । ଭାରତର ସୀମାନ୍ତବାସୀ ଭାବରେ ପଞ୍ଜାବର କୃଷକସମାଜ ସେ ପର୍ଯ୍ୟନ୍ତ ଶତ ଶତ ବର୍ଷ ଧରି ଇତିହାସର ନିପୀଡ଼ନକ ହୋଇ ଆସିଥିଲେ । କିନ୍ତୁ ସେମାନେ ପ୍ରାଣେ ପ୍ରାଣେ ଲୋଡ଼ୁଥିଲେ କୌଣସି ଏକ ନାୟକ ଯାହାର ଉନ୍ମାଦନୀ ବାଣୀରେ ସେମାନେ ଲଙ୍ଗଳ ଲୁହାକୁ ପୁଣି ଖଡ଼୍ଗରେ ପରିଣତ କରି ବାହାରି ପଡ଼ନ୍ତେ ନିଜ କ୍ଷେତର ରକ୍ଷାର୍ଥେ, ଶତ୍ରୁର ସମ୍ମୁଖୀନ ହେବାକୁ । ସେମାନେ ଗୁରୁ ଗୋବିନ୍ଦ ସିଂଙ୍କ ଭିତରେ ସେହିପରି ଏକ ନେତା ଏତେ ଯୁଗ ପରେ ଯେପରି ପାଇଲେ । ଗୋବିନ୍ଦ ସିଂଙ୍କ ବାଣୀ ଓ ଆଦର୍ଶରେ ସେମାନେ ଶୁଣି ପାରିଲେ ମୁକ୍ତିର ଆଶ୍ୱାସ ଓ କର୍ମର ଉନ୍ମାଦକ ଆହ୍ୱାନ । ଅବଶ୍ୟ, ପୂର୍ବ ପୂର୍ବ ଗୁରୁମାନଙ୍କର ଉପଦେଶ ସେମାନଙ୍କ ଚିତ୍ତକୁ ଉପଯୁକ୍ତ କର୍ଷଣ ଦେଇ ଏପରି କରିଆରି ରଖିଥିଲା ଯେ, ଦଶମ ଗୁରୁଙ୍କ ନୂତନ ଆହ୍ୱାନ ଦ୍ୱାରା ତାଠାରୁ ଉର୍ବରତର କ୍ଷେତ୍ର ପାଇବାର ଆଶା କରାଯାଇ ପାରି ନ ଥାନ୍ତା । ଫଳରେ ଦଳ ଦଳ ପଞ୍ଜାବୀ କୃଷକ ଗୁରୁ ଗୋବିନ୍ଦ ସିଂଙ୍କର ଦ୍ୱି-ଧାର-ତରବାରୀ-ମନ୍ତ୍ରରେ ଦୀକ୍ଷିତ ହେବାପାଇଁ ଉତ୍ସାହର ସହିତ ଧାଇଁଲେ । ସେହି ଶକ୍ତିମାନ୍ ଗୋଷ୍ଠୀ ଭିତରେ ଯେଉଁ ସାମରିକ ରୁଚି ଏଯାବତ୍ ସୁପ୍ତ ଥିଲା ତାହାକୁ ବର୍ତ୍ତମାନ ଜାଗରିତ ଓ ଫଳପ୍ରଦ ଭାବରେ ନିୟୋଜିତ କରାଯାଇ ପାରିଲା । ଯୁଦ୍ଧକର୍ମପାଇଁ ଅଯୋଗ୍ୟ ବିବେଚିତ ଏହି ଅବହେଳିତ କୃଷକ ସଂଘକୁ ଏବଂ ହିନ୍ଦୁ ସମାଜର ଦୂରେ-ଘୃଣାରେ-ନିକ୍ଷିପ୍ତ ପତିତ-ଅସ୍ପୃଶ୍ୟମାନଙ୍କୁ ନୂତନ ଜୀବନ ଦେଇ, ସେମାନଙ୍କ ଅନ୍ତରେ

ଭିତରେ ଯେ କରି ଦିଆଗଲା ସମର-ଗୌରବ-ମଣ୍ଡିତ ଏକ ବିରାଟ ବିପ୍ଳବର ଅଗ୍ରଦୂତ, ତାହାହିଁ ଶିଖଧର୍ମ ଓ ଗୁରୁଗୋବିନ୍ଦ ସିଂଙ୍କର ଶ୍ରେଷ୍ଠ ବିସ୍ମୟକର ସିଦ୍ଧି । ଶିଖ୍ ହୋଇ ସାରିଲା ପରେ ପୂର୍ବର ସେହି ଅପାଂକ୍ତେୟ ଅବହେଳିତ ଜନତା ଯେଉଁ ବୀରତ୍ୱ ଓ ମାନବିକତାର ଦୃଷ୍ଟାନ୍ତ ଦେଖାଇ ଗଲେ, ସମଗ୍ର ମାନବ ଇତିହାସରେ ତାହା ଦୁର୍ଲଭ ।

ଆନନ୍ଦପୁର ବର୍ତ୍ତମାନ ଖାଲ୍ସା-ଜନିତ ନୂତନ ଉତ୍ସାହର ଛନ୍ଦରେ କଂପିତ । ଦୀକ୍ଷା ପାଇଁ ଆସୁଥିବା ପ୍ରତି ଯାତ୍ରୀଦଳ ଆନନ୍ଦପୁରରେ ନୂତନ ଆନନ୍ଦ ସଞ୍ଚାରିତ କରୁଥିଲେ ଏବଂ ଦୀକ୍ଷାର ସେହି ଉଲ୍ଲାସ, ନବଦୀକ୍ଷିତବୃନ୍ଦ, ଆନନ୍ଦପୁରର ପ୍ରାଚୀନ ଅଧିବାସୀ ଓ ସ୍ୱୟଂ ଗୁରୁଜୀ, ସମସ୍ତେ ସମଭାବରେ ଉପଭୋଗ କରୁଥିଲେ । ଏହି ସମାନୁଭବ ହିଁ କ୍ରମେ ଏକ ସ୍ୱାଧୀନ, ଅଥଚ ଘନସନ୍ନିବଦ୍ଧ ଏବଂ ଗଣତାନ୍ତ୍ରିକ ସମାଜ ଠିଆ କଲା । କାହାର କି ଜାତି, ବା ପିତାମାତା ବା ବ୍ୟବସାୟ ସମ୍ପର୍କରେ, ଏହି ନବ-ସମାଜରେ, କେହି ପ୍ରଶ୍ନ ହିଁ କରିବାର ଅବକାଶ ନ ଥିଲା । ଏହି ସମାଜର ମିଳିତ ପିତା ଥିଲେ ଗୁରୁ ଗୋବିନ୍ଦ ସିଂ, ମିଳିତ ଜନନୀ ଥିଲେ ମାତା ସାହିବ୍ ଦେଓ୍ୟାନ ଏବଂ ମିଳିତ ଜନ୍ମସ୍ଥାନ ହେଲା ଆନନ୍ଦପୁର । ଏହି ସମାଜ, ଉଚ୍ଚତମ ପରୋପଚିକୀର୍ଷା ଦ୍ୱାରା ଉଦ୍‌ବୁଦ୍ଧ ହୋଇ ରହିଥିଲା ଏବଂ ବିରାଟ ମାନବିକ ଭ୍ରାତୃତ୍ୱର ଥିଲା ଏକ କ୍ଷୁଦ୍ର ପ୍ରତିବିମ୍ବ । ଏ ସମାଜରେ କୌଣସି ଶ୍ରେଣୀ ବିଭାଗ ବା ସୁବିଧାର ବିଣ୍ଟନ ଶୁଣା ନ ଥିଲା । ଏପରିକି ଏ ସମାଜରେ ପଣ୍ଡା, ପୁରୋହିତ ବି ନ ଥିଲେ । ଗୁରୁଙ୍କ ସେନାବାହିନୀ ମଧ୍ୟ ଉଚ୍ଚନୀଚ-ବୋଧକ ପଦ ପଦବୀ ଶୂନ୍ୟ ଥିଲା । ଏହି ଉଦାର ସ୍ୱରାଜ୍ୟରେ ଗୁରୁ ନିଜେ ଜଣେ ସାଧାରଣ ନାଗରିକ ମାତ୍ର ଥିଲେ ଏବଂ ସେହି ନାଗରିକତା ସେ ପାଇଥିଲେ, ଅନ୍ୟମାନଙ୍କ ଦ୍ୱାରା ଦୀକ୍ଷିତ ହୋଇ । ଅନ୍ୟମାନଙ୍କୁ ଯେଉଁ ବିଧିବିଧାନ ପାଳିବାକୁ ହେଉଥିଲା, ସେ ନିଜେ ସେସବୁ ପାଳୁଥିଲେ । ଥରେ ଶିକାର କରିବା ଭିତରେ ଗୁରୁ ଏକ ସମାଧିକୁ ଭକ୍ତି ପ୍ରଦର୍ଶନ କରିବାର ଛଳନା କଲେ । ଏହା, କିନ୍ତୁ, ଶିଖ୍ ଧର୍ମର ବିରୋଧୀ ଥିଲା, ଯାହାକି ଗୁରୁ ଗୋବିନ୍ଦସିଂ ସ୍ୱୟଂ ଶିକ୍ଷା ଦେଇ ଆସିଛନ୍ତି । ବର୍ତ୍ତମାନ ଶିଖ୍ ଅନୁଚରମାନେ ଗୁରୁଙ୍କୁ ତାଙ୍କ ବ୍ୟବହାରର କାରଣ ପଚାରିବାକୁ ଲାଗିଲେ । ଗୁରୁ ଗୋବିନ୍ଦ ସିଂ, ଏଥିରେ ନିଜ ଶିଷ୍ୟମାନେ ଯେ ତାଙ୍କୁ ସେଇମାନଙ୍କ ଭିତରୁ ଜଣେ ମାତ୍ର ପରି ଦେଖୁଛନ୍ତି, ସେ ଯେ ସେମାନଙ୍କର ପ୍ରଶ୍ନର ଉପରେ ନାହାନ୍ତି, ଏହା ଜାଣିପାରି ଭାରି ଖୁସୀ ହେଲେ ।

ଏଣିକି ଆନନ୍ଦପୁରରେ, ସମସ୍ତ ଦ୍ରବ୍ୟ ଇଜମାଲି ଭାବରେ ଖାଲ୍‌ସାର ହିଁ ବୋଲି ଧରା ଯାଉଥିଲା । ବ୍ୟକ୍ତିଗତ ସମ୍ପତ୍ତି ବୋଲି କାହାର କିଛି ନ ଥିଲା । ସମସ୍ତେ ସାଧାରଣ ଖାଦ୍ୟ ଗୁରୁ-କା-ଲଙ୍ଗରରେ ଖାଉଥିଲେ । ପ୍ରତ୍ୟେକ ସମବେତ ଜୀବନ ପାଇଁ ନିଜର ଶ୍ରମ ବା ଅନ୍ୟପ୍ରକାରର ସେବା ଅକୁଣ୍ଠିତ ଭାବରେ ଦାନ କରୁଥିଲେ । ଶିଖ ସମାଜର ଅଧିକାଂଶ ଆସିଥିଲେ ଶ୍ରମିକ ଶ୍ରେଣୀମାନଙ୍କରୁ, ଯିଏକି, ପୃଥିବୀର ସବୁଠାରୁ ବାଞ୍ଛନୀୟ ଜନଗୋଷ୍ଠୀ । ଗୁରୁ ଗୋବିନ୍ଦ ସିଂ ଅନ୍ୟମାନଙ୍କ ଅପେକ୍ଷା ଏହି କୃଷକମାନଙ୍କ ମଧ୍ୟରେ ନିଜକୁ ଅଧିକ ପରିମାଣରେ ହଜାଇ ଦେଇ ପାରୁଥିଲେ । ଥରେ ସେମାନଙ୍କ ଭିତରେ ବସି କଥା ହେଉଥିଲା ବେଳେ, ସେ ପିଇବା ପାଇଁ ପାଣି ମାଗିଲେ । ତାଙ୍କ ଭିତରେ ଥିଲା ଜଣେ ବଣିକ-ପୁତ୍ର, ଯେ ଆସିଥିଲା ଗୁରୁଜୀଙ୍କୁ ଭକ୍ତି ଜଣାଇବାକୁ । ସେ ବର୍ତ୍ତମାନ ଉଠିଯାଇ ଏକ ଗ୍ଲାସ ପାଣି ବେଶ୍ ଆଦବ୍ କାଇଦା ସହ ଗୁରୁଜୀଙ୍କ ଆଡ଼କୁ ବଢ଼ାଇ ଠିଆ ହେଲା । ଗୁରୁ ତାର ତତ୍ପରତା ଓ ଆଜ୍ଞାନୁବର୍ତ୍ତିତାର ପ୍ରଶଂସା କଲେ, କିନ୍ତୁ କହିଲେ ଯେ, ତାର ସୁକୁମାର କରପଲ୍ଲବ ପରିଶ୍ରମରେ ଅନଭ୍ୟସ୍ତ ଥିଲା ପରି ଜଣାଯାଉଛି ଏବଂ ସେ ଏପରି ହାତରୁ ପାଣି ନେବା ଉଚିତ ମନେ କରୁନାହାନ୍ତି ।

ଆନନ୍ଦପୁରର ବାୟୁମଣ୍ଡଳ ବର୍ତ୍ତମାନ ଗୁରୁଙ୍କ ପ୍ରତି ଭକ୍ତି ଏବଂ ଅଭୂତପୂର୍ବ ଆନନ୍ଦାନୁଭବ, ଏହି ଦୁଇଟି ନୈତିକ ଧାରାରେ ଅଭିଷିକ୍ତ ରହିଥିଲା, ଯେପରି । ଗୁରୁ ଗୋବିନ୍ଦ ସିଂ ପୌରୁଷ, ବୀରତ୍ୱ, କରୁଣା, ମାନବିକତା, ଆଧ୍ୟାତ୍ମିକତା—ସବୁଥିରେ ସମସ୍ତଙ୍କର ଆଦର୍ଶ ଓ ପ୍ରେରଣାର ଉତ୍ସ ଥିଲେ । ସେ ଥିଲେ ମଧ୍ୟ ସର୍ବ-ହୃଦୟର ପ୍ରିୟଜନ ଓ ପ୍ରିୟ ଦେବତା । ଖାଲ୍‌ସା ମନେ କଲା ଯେ, ଏପରି ଗୁରୁ ପଛରେ ଥିଲେ ସେମାନେ ସ୍ୱୟଂ ମୃତ୍ୟୁ ସହିତ ଅକୁଣ୍ଠିତ ଭାବରେ ଲଢ଼ିବେ ଏବଂ ପୃଥିବୀର ପ୍ରବଳତମ ଶତ୍ରୁକୁ ମଧ୍ୟ ପରାଜିତ କରିପାରିବେ । ଶ୍ରଦ୍ଧା, ବିଶ୍ୱାସ, ନିର୍ଭରତା ଏବଂ ଗୌରବମୟ ଭବିଷ୍ୟତ—ଏହି ସବୁ ଖେଳି ବୁଲୁଥିଲା ଆନନ୍ଦପୁରର ବାୟୁମଣ୍ଡଳରେ । ପ୍ରତ୍ୟେକ ଶିଖ୍ ଭାବିଲେ ଯେ ସେ ଏକା ସଓ୍ୟାଲାଖ ଶତ୍ରୁ ସହିତ ସମାନ । ନବଜାଗ୍ରତ ଶିଖ୍‌ମାନେ ଆପଦ-ବିପଦକୁ ଏବଂ ସାଂସାରିକ ସୁଖ-ସୁବିଧାକୁ ଥଟ୍ଟା କରିବାକୁ ଲାଗିଲେ । ମୃତ୍ୟୁକୁ ସେମାନେ ଭାବିଲେ ଖାଲ୍‌ସାର ସ୍ୱର୍ଗକୁ ଅଭିଯାନ ମାତ୍ର । ଯିଏ ବାଘହୋଇ ବୁଲି ଖାଉଥିଲା, ସେ

ମନେକଲ ଯେ; ସେ ବାଦାମ ଖାଉଛୁ; ଶିଖମାନଙ୍କର ନୂତନ ସାମରିକ ଭାଷାରେ, 'ସାମାନ୍ୟ ପିଆଜକୁ ସେମାନେ ଦେଲେ ରୁପାର ମୂଲ୍ୟ, ରୁପକୁ ଭାବିଲେ ଗୋଡ଼ି ବୋଲି ଏବଂ ଠେଙ୍ଗାକୁ ଭାବିଲେ ବଞ୍ଚିବାର ଆକର।'

ସ୍ୱାଧୀନତାର ଏହି ନୂତନ ଉତ୍ସାହ ଓ ଅଭିଳାଷ, ଏକ ବିରାଟ ଜନଗୋଷ୍ଠୀରେ ଏହି ପରିବ୍ୟାପ୍ତ ଜୀବନାନନ୍ଦ, କ୍ରମେ ବହିର୍ଜଗତକୁ ବ୍ୟାପିଲା। ନବ ଆନ୍ଦୋଳନର ଧକ୍କା ପଞ୍ଜାବର ଚାରିଆଡ଼େ ଅନୁଭୂତ ହେଲା। ଯେଉଁମାନେ ଶାସକମାନଙ୍କର ଅନ୍ୟାୟ-ଅତ୍ୟାଚାର ବିରୁଦ୍ଧରେ ବିଦ୍ରୋହ କରିବାକୁ ଇଚ୍ଛୁକ ଏବଂ ଯେଉଁମାନେ ସମ୍ମୁଖୀନ ହୋଇ ନପାରି ସେହି ଅନ୍ୟାୟରୁ ପଳାତକ,—ଏହି ଉଭୟ ଶ୍ରେଣୀର ଲୋକଙ୍କ ପାଇଁ ଆନନ୍ଦପୁର ହୋଇଉଠିଲା ପବିତ୍ର ମେକ୍କା। ଏହି ପଳାତକମାନଙ୍କ ଭିତରେ ଥିଲେ ଦୁଇ ଜଣ ଲବ୍ଧପ୍ରତିଷ୍ଠ କବି, କାଓ୍ୱାର ଓ ଭାଇ ନନ୍ଦଲାଲ୍। କାଓ୍ୱାର ଥିଲେ ପ୍ରସିଦ୍ଧ ହିନ୍ଦୀ କବି କେଶୋ ଦାସଙ୍କ ପୁତ୍ର। ଇସ୍‌ଲାମ୍ ଗ୍ରହଣ କରିବାକୁ ତାଙ୍କୁ ବାଧ୍ୟ କରାଯିବାରୁ, ସେ ଜନ୍ମସ୍ଥାନ ବୁନ୍ଦେଲ୍‌ଖଣ୍ଡରୁ ଗୁରୁଙ୍କଠାରେ ଆଶ୍ରୟପ୍ରାର୍ଥୀ ହୋଇ ପଞ୍ଜାବକୁ ପଳାଇ ଆସିଲେ। ଆନନ୍ଦପୁରରେ ପହଞ୍ଚି, ସେ ଗୁରୁଙ୍କୁ ଏକ ପଦ୍ୟରେ ଆଶ୍ରୟ ପାଇଁ ଆବେଦନ କଲେ। ଗୁରୁ ତାଙ୍କର ଆବେଦନ ଗ୍ରହଣ କରି ଉଚ୍ଚ ଦରମାରେ ତାଙ୍କୁ ଏକ ସଭାକବି ଭାବରେ ନିଯୁକ୍ତ କଲେ। ଭାଇ ନନ୍ଦ-ଲାଲ୍‌ଙ୍କର ଜନ୍ମ ଆନନ୍ଦପୁରରେ। ସେ ଜନ୍ମତଃ ଶିଖ୍। କିନ୍ତୁ ଯୌବନ-କାଳରେ ଜୀବିକା ପାଇଁ ଦିଲ୍ଲୀ ଚାଲିଯାଇ ସେଠାରେ ନିଜ ଗୁଣରେ, ଆଉରଙ୍ଗଜେବଙ୍କ ଜ୍ୟେଷ୍ଠ ପୁତ୍ର, ରାଜକୁମାର ମୁଆଜ୍ଜିମଙ୍କର ବିଶ୍ୱସ୍ତ ସଚୀବ (ସେକ୍ରେଟାରୀ) ପଦକୁ ଉଠି ପାରିଥିଲେ। ଏ ଭିତରେ ସେ ରାଜ-ଭାଷା ପାର୍ସିରେ ଅସାଧାରଣ ଦକ୍ଷତା ଅର୍ଜନ କରି ପାରିଥିଲେ। ଥରେ ପାରସ୍ୟର ରାଜାଙ୍କଠାରୁ ଆଗତ ଏକ ଉତ୍ତରର ଚିଠାପାଇଁ ମୋଗଲ ଦରବାର ଏକାଧିକ ସଭାସଦଙ୍କୁ ବରାଦ୍ ଦେଲେ। କିନ୍ତୁ ସବୁ ଚିଠା ଭିତରେ ଭାଇ ନନ୍ଦଲାଲ ଲିଖିତ ଚିଠାଟିହିଁ ସର୍ବୋତ୍କୃଷ୍ଟ ବିବେଚିତ ହେଲା। ଧର୍ମାନ୍ଧ ଆଉରଙ୍ଗଜେବ ଭାବିଲେ, ଏପରି ଏକ ଯୋଗ୍ୟ ଲୋକ ଅ-ମୁସଲ୍‌ମାନ ରହିବା ଉଚିତ ନୁହେଁ। ତେଣୁ ଭାଇ ନନ୍ଦଲାଲ୍‌ଙ୍କ ଉପରେ ଚାପ ପ୍ରୟୋଗ କରାଗଲା, ସେଥିପାଇଁ। ଭାଇ ନନ୍ଦଲାଲ ଠିକ୍ କଲେ, ଚାକିରି ଛାଡ଼ି ଆନନ୍ଦପୁର ପଳେଇବେ। ମୋଗଲ ଦରବାରରେ ଉଚ୍ଚସ୍ତରର ମୁସଲମାନ

କର୍ମଚାରୀମାନଙ୍କ ମଧ୍ୟରେ ଗିଆସୁଦ୍ଦିନ ବୋଲି ତାଙ୍କର ଜଣେ ବିଶ୍ୱସ୍ତ ବନ୍ଧୁ ଥିଲେ । ନନ୍ଦଲାଲ୍ କେବଳ ତାଙ୍କୁହିଁ ପଳାୟନର କଥା କହିଥିଲେ । ଗିୟାସୁଦ୍ଦିନ୍ ଗୁରୁ ଗୋବିନ୍ଦ ସିଂଙ୍କ ନିକଟରୁ ଆଧ୍ୟାତ୍ମିକ ଶିକ୍ଷା ପାଇବା ପାଇଁ ନନ୍ଦଲାଲଙ୍କ ସାଥିରେ ଆନନ୍ଦପୁର ଚାଲି ଆସିବାକୁ ସ୍ଥିର କଲେ । ଗୁରୁ ସେ ଦୁହିଁଙ୍କଯାକୁ ଅତ୍ୟନ୍ତ ସୌଜନ୍ୟର ସହିତ ଆନନ୍ଦପୁରରେ ଗ୍ରହଣ କରିଥିଲେ ।

ଏହି ଭାଇ ନନ୍ଦଲାଲ, ଲେଖନୀ-ନାମ "ଗୋୟା" ବ୍ୟବହାର କରି, ପାର୍ଶି ପଦ୍ୟରେ ଜିନ୍ଦଗୀନାମା, ତାଉସିଫ୍-ଓ-ସାନା, ଗଞ୍ଜନାମା, ଜୋତ-ବିକାଶ, ଦିୱାନ୍-ଇ-ଗୋୟା, ଇନ୍‌ଶା-ଦସ୍ତୁର, ଆର୍ଜ୍-ଉଲ୍-ଇଲ୍‌ଫାଜ୍, ଇତ୍ୟାଦି ଗ୍ରନ୍ଥ ଲେଖି ଯାଇଛନ୍ତି । ଶିଖ୍ ସାହିତ୍ୟରେ ଗ୍ରନ୍ଥସାହେବର ଠିକ୍ ତଳକୁ, ଭାଇ ନନ୍ଦଲାଲ୍ ଓ ପଞ୍ଚମ ଗୁରୁଙ୍କ ସମସାମୟିକ କବି ଭାଇ ଗୁରୁ ଦାସଙ୍କ ରଚନାବଳୀ । ଗୁରୁ-ରଚିତ ଭଜନମାନଙ୍କ ପରି ଏମାନଙ୍କର ଭଜନ ସବୁ ମଧ୍ୟ ପ୍ରତ୍ୟେକ ଶିଖ ଗୁରୁଦ୍ୱାରରେ ଗୀତ ହୋଇଥାଏ । ଭାଇ ନନ୍ଦଲାଲଙ୍କ ରଚନାବଳୀରେ ଆମେ ଗୁରୁଜୀଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ତାଙ୍କ ସମ୍ପର୍କରେ ନିଜର ପ୍ରାଣ-ସ୍ପର୍ଶି ଅନୁଭବ ମଧ୍ୟ ଦେଖିବାକୁ ପାଉଁ ।

ଏହି କାଳରେ ଆନନ୍ଦପୁରରେ ଆଉ ଏକ ଅତ୍ୟନ୍ତ ସୁଖାବହ ପୁନର୍ମିଳନ ଘଟିଲା । ଗୁରୁ ଗୋବିନ୍ଦ ସିଂ ପିଲାଦିନେ ପାଟନା ସହରରେ ଯେଉଁ ପଣ୍ଡିତ ଶିବଦତ୍ତ ଏବଂ ରାଜା ଫତେଚାନ୍ଦ ମଇନି ଓ ତାଙ୍କ ରାଣୀଙ୍କି ଜାଣିଥିଲେ, ସେମାନେ ବର୍ତ୍ତମାନ ଆନନ୍ଦପୁର ଆସୁଥିବାର ଶୁଣି, ଗୁରୁଜୀ ଭାରି ଖୁସୀ ହେଲେ । ଗୁରୁ ସ୍ୱୟଂ ସେମାନଙ୍କୁ ସହର ବାହାରେ, ବାଟରୁ ପାଛୋଟି ନେଲେ । ଅତୀତରେ ପଣ୍ଡିତ ଶିବଦତ୍ତ ପାଟନାର ଗଙ୍ଗାକୂଳରେ ଧ୍ୟାନସ୍ଥ ଥିଲାବେଳେ, ପିଲା-ଗୋବିନ୍ଦ, କୌତୁକରେ ହୁପ୍ ହୁପ୍ କରି ତାଙ୍କ ଧ୍ୟାନ ଭାଙ୍ଗିବାକୁ ଚେଷ୍ଟା କରୁଥିଲେ । ବର୍ତ୍ତମାନ ସେ ଅତିଥିମାନଙ୍କର ଧାଡ଼ିକୁ ଅଦୂରରେ ଦେଖିପାରି ଏକ ଜାଗାରେ ଲୁଚି ରହିଲେ ଏବଂ ଯାତ୍ରୀମାନଙ୍କ ପାଲିଂକି ଅତିକ୍ରମ କରିଗଲା ମାତ୍ରେ, ପଛରୁ ସେହିପରି ପୂର୍ବପରି ହୁପ୍ ହୁପ୍ କରି ପାଟି କଲେ । ଅତିଥିମାନେ ପ୍ରଥମେ ଭୟରେ ଚମକିଆ ହୋଇଗଲେ । କିନ୍ତୁ ସେମାନେ ଯେମିତି ଜାଣିଲେ କିଏ ତାଙ୍କୁ ଡରାଉଛି ଓ କିଏ ତାଙ୍କୁ ପାଛୋଟି ଆସିଛି, ସେତେବେଳେ ସେମାନଙ୍କର ଆନନ୍ଦ ସୀମା ଟପିଗଲା । ସେମାନେ ସମ୍ଭାଳି ନ ପାରି ଆନନ୍ଦାଶ୍ରୁ ମୋଚନ କରି ଲାଗିଲେ । ସେମାନଙ୍କ ହୃଦୟ ପରି ଉଠିଲା, ପୁଣି ଦେଖି, ସେ ଦିନର

ପାଟନାର ସେହି ଶିଶୁଟିକୁ ଯେ ଆଜି କି ସୁନ୍ଦର, ସୁଠାମ ବଳବାନ ସୁପୁରୁଷରେ ପରିଣତ ହୋଇପାରିଛି । ଗୁରୁଜୀ ସେମାନଙ୍କୁ ଆନନ୍ଦପୁରରେ ବହୁ ସମ୍ମାନ ରଖାଇଲେ ଏବଂ ବହୁ ସମୟ ଧରି ପାଟନାର ସ୍ମୃତିପୂର୍ଣ୍ଣ ଦିନ-ଗୁଡ଼ିକର ଆଲୋଚନା କଲେ ।

ଗତ କେତେବର୍ଷ ଧରି ଗୁରୁ ଗୋବିନ୍ଦ ସିଂକର ପାର୍ଶ୍ୱବର୍ତ୍ତୀ ପାର୍ବତ୍ୟ ରାଜାମାନଙ୍କଠାରୁ କୌଣସି ଆଶଙ୍କା ନଥିଲା । ଥରେ କିନ୍ତୁ ଗୁରୁଜୀ ସେମାନଙ୍କୁ ଖାଲ୍‌ସାରେ ଯୋଗ ଦେବାପାଇଁ ନିମନ୍ତ୍ରଣ କରିଥିଲେ । ଏହି ମହତ୍ ଆହ୍ୱାନ ସେମାନେ କିନ୍ତୁ ସମସ୍ୱରରେ ପ୍ରତ୍ୟାଖ୍ୟାନ କରିଥିଲେ, କାରଣ ସେମାନେ ପ୍ରାଣେ ପ୍ରାଣେ ଭୟ କରୁଥିଲେ, ଏକାଧାରରେ ମୋଗଲ ଶାସକର କ୍ରୋଧକୁ, ଅନ୍ୟ ପକ୍ଷରେ ଶିଖ୍‌ଧର୍ମର ଓ ବିଶେଷ କରି ଖାଲ୍‌ସାର ଜାତିହୀନ ଉଦାର ସାମ୍ୟକୁ । ସେହି ସୁବିଧାବାଦୀ ସାମନ୍ତମାନଙ୍କ ପ୍ରାଣରେ ଗୁରୁ ଗୋବିନ୍ଦଙ୍କର ମାନବିକ ସମତା ବିଦ୍ୱେଷିକା ସୃଷ୍ଟି କରୁଥିଲା । ସେମାନଙ୍କର ଏହି ଧାରୁ ପ୍ରତ୍ୟାଖ୍ୟାନ ପାଇଁ ଗୁରୁଜୀ ସେମାନଙ୍କ ପ୍ରତି ସାମାନ୍ୟତମ ମନ୍ଦଭାବ ପୋଷଣ କରି ନ ଥିଲେ, ବରଂ ସେମାନଙ୍କ ସହିତ ସମ୍ପୂର୍ଣ୍ଣ ସଖ୍ୟଭାବ ପ୍ରଦର୍ଶନ କରି ଚାଲିଥିଲେ । ସେମାନେ କିନ୍ତୁ ସେମାନଙ୍କର ନ୍ୟସ୍ତସ୍ୱାର୍ଥ ପ୍ରତି ଉଦ୍‌ବେଗ, ଗୁରୁ ଗୋବିନ୍ଦ ଓ ଶିଖ ସମ୍ପ୍ରଦାୟ ହୋଇ ଆସୁଥିବା ବିଦ୍ୱେଷିକା, ଏବଂ ଗୁରୁ ଓ ଶିଖ୍‌ମାନଙ୍କ ହାତରେ ସେମାନଂକର ବାରମ୍ବାର ପରାଜୟକୁ, କେବେହେଲେ ଭୁଲି ପାରୁ ନଥିଲେ । ସେମାନେ ଜଗି ବସିଥାନ୍ତି କୌଣସି ଏକ ସୁଯୋଗକୁ, ଯାହା ସେମାନଙ୍କୁ ପ୍ରତିହିଂସାର ସ୍ୱାଦ ଦେବ ଏବଂ ସେମାନେ ଆନନ୍ଦପୁରକୁ ନଷ୍ଟଭ୍ରଷ୍ଟ କରିଦେବେ । ଥରେ ଗୁରୁଜୀ ଅଳ୍ପ କେତେମାତ୍ର ଅନୁଚର ନେଇ ଶିକାର କରୁଥିବାର ଶୁଣିପାରି ବାଲିଆଚାନ୍ଦ ଓ ଆଲମଚାନ୍ଦ ନାମକ ଦୁଇଟି ସାମନ୍ତରାଜା ତାଙ୍କୁ ବନ୍ଦୀ କରି ନେଇଯିବା ପାଇଁ, ତାଙ୍କ ଉପରେ ଆକସ୍ମିକ ଆକ୍ରମଣ କଲେ । ଅଳ୍ପ ସଂଖ୍ୟକ ହେଲେହେଁ ଶିଖ୍‌ମାନେ ଏପରି ଶୌର୍ଯ୍ୟସହିତ ଲଢ଼ିଲେ ଯେ, ଗୁରୁଜୀଙ୍କୁ ବନ୍ଦୀ କରିବା ଦୂରେ ଥାଉ, ବିଚରା ବାଲିଆଚାନ୍ଦ ପ୍ରାଣ ହରେଇଲା, ଏବଂ ଆଲମ୍‌ଚାନ୍ଦ ହରାଇ ବସିଲା, ଗୋଟାଏ ହାତ ।

କିନ୍ତୁ ଏହି ସାମାନ୍ୟ ଘଟଣାଟି ପାର୍ବତ୍ୟ ରାଜାମାନଙ୍କୁ ବିଶେଷ ଭାବରେ ଉତେଇଦେଲା ଏବଂ ସେମାନେ ବର୍ତ୍ତମାନ ମିଳିତ ଭାବରେ ମୋଗଲ ଦରବାରକୁ ସାହାଯ୍ୟ ପାଇଁ ଲେଖି ବସିଲେ । ସେତେବେଳେ ମଧ୍ୟ

ଆଉରଙ୍ଗଜେବ ଥାଆନ୍ତି ଦାକ୍ଷିଣାତ୍ୟରେ । ଏହା ଜାଣିବାକୁ ପାଇ ଏବଂ ଆଜ୍ଞା ଅପେକ୍ଷା କରିବା ଅସହ୍ୟ ହେବାରୁ, ସେମାନେ ଦିଲ୍ଲୀର ସ୍ଥାନୀୟ ସୁବାଦାରଙ୍କୁ ମଧ୍ୟ ଦରଖାସ୍ତ କରିବାକୁ ପଶ୍ଚାତ୍ପଦ ହେଲେ ନାହିଁ । ଇଂରେଜ ଲେଖକ ଏମ୍. ଏ. ମାକଲିଫେ, ତାଙ୍କର 'ଶିଖ୍ ଧର୍ମ' ଗ୍ରନ୍ଥରେ ଗୁରୁ ଗୋବିନ୍ଦ ସିଂଙ୍କ ଏକ ପ୍ରାଚୀନ ଜୀବନୀ 'ଗୁରୁ ବିଳାସ'ରୁ ଉଦ୍ଧାର କରି ଏ ସମ୍ପର୍କରେ କହିଛନ୍ତି—

"ରାଜାମାନେ ସେହି ଦରଖାସ୍ତରେ ଏହିପରି ଜଣାଇଥିଲେ—; ଗୁରୁ ଗୋବିନ୍ଦ ସିଂ ପରିବ୍ରାତ୍ମା ଗୁରୁ ନାନକଙ୍କର ଉତ୍ତରାଧିକାରୀ ଜାଣି, ଆମ୍ଭମାନଙ୍କ ମଧ୍ୟରେ ତାଂକର ଅବସ୍ଥାନକୁ ଆମ୍ଭେମାନେ ଆଦୌ ଆପତ୍ତି କରି ନ ଥିଲୁ । କିନ୍ତୁ ସେ ସାମରିକ ଶକ୍ତି ସଂଗ୍ରହ କରନ୍ତେ, ଆମେ ତାହା ନିୟନ୍ତ୍ରିତ କରିବାକୁ ଚେଷ୍ଟା କଲୁ । ସେ ତାର ଉତ୍ତରରେ ନାହାନ୍‌କୁ ଯାଇ ସେଠାରେ ସ୍ଥାନୀୟ ରାଜାଙ୍କ ସହିତ ଏକ ସାମରିକ ଚୁକ୍ତି କଲେ । ତା'ପରେ ଶ୍ରୀନଗରର ରାଜା ଫତେ ସାଙ୍କ ସହିତ ତାଙ୍କର ବିବାଦ ହୋଇ ତାହାର ପରିଣତି ହୁଏ, ଭଙ୍ଗାନି ଯୁଦ୍ଧରେ ଯେଉଁଠି ବହୁ ମନୁଷ୍ୟ ପ୍ରାଣ ହରାଇଲେ । ଆନନ୍ଦପୁରକୁ ଫେରିଯାଇ ଗୁରୁ ଉଭୟ ହିନ୍ଦୁ ଓ ମୁସଲମାନମାନଙ୍କ ଠାରୁ ସମ୍ପୂର୍ଣ୍ଣ ଭିନ୍ନ ଏକ ସଂପ୍ରଦାୟ ଠିଆକଲେ, ଯାହାର ସେ ନାମ ଦେଇଛନ୍ତି ଖାଲ୍‌ସା । ସେ ହିନ୍ଦୁର ଚାରି ଜାତିକୁ ଏକ୍ କରି ଦେଇଛନ୍ତି ଏବଂ ତାଙ୍କୁ ଗ୍ରହଣ କରିଥିବା ଅନେକ ଅନୁଗତ ଲୋକ ମଧ୍ୟ ସେ ସଂଗ୍ରହ କରି ପାରିଛନ୍ତି । ସେ ଆମ୍ଭମାନଙ୍କୁ ତାଂକ ସହ ଯୋଗ ଦେବାକୁ ଆମନ୍ତ୍ରଣ କରିଥିଲେ ଏବଂ କଲେ, ଆମେ ଏ ଜୀବନରେ ସାମ୍ରାଜ୍ୟ ଓ ପର ଜୀବନରେ ମୁକ୍ତି ପାଇବୁ ବୋଲି, ପ୍ରତିଶ୍ରୁତି ଦେଇଥିଲେ । ସେ ମଧ୍ୟ ସୂଚନା ଦେଇଥିଲେ ଯେ ଆମ୍ଭେମାନେ ଯଦି ମୋଗଲ ସମ୍ରାଟଙ୍କ ବିରୁଦ୍ଧରେ ବିଦ୍ରୋହ କରିବୁ; ତେବେ ସେ ଆମ୍ଭମାନଙ୍କୁ ସବୁ ପ୍ରକାରର ସାହାଯ୍ୟ ଦେବେ, କାରଣ ସମ୍ରାଟ ତାଙ୍କ ପିତାଙ୍କୁ ହତ୍ୟା କରିଥିଲେ ଏବଂ ସେ ତାର ପ୍ରତିହିଂସା ଚାହାନ୍ତି । ଯେହେତୁ ଆମ୍ଭେମାନେ ସମାଟଙ୍କ ବିରୁଦ୍ଧରେ ବିଦ୍ରୋହ କରିବା ଉଚିତ ମନେ କଲୁ ନାହିଁ; ଗୁରୁ ଆମ ଉପରେ ଅସନ୍ତୁଷ୍ଟ ହୋଇ ବର୍ତ୍ତମାନ ଆମକୁ ସବୁପ୍ରକାରେ ହଇରାଣ କରିବାରେ ଲାଗିଛନ୍ତି । ତାଙ୍କୁ ପ୍ରତିରୋଧ କରିବା ଆମ ଶକ୍ତିର ବାହାରେ ଏବଂ ସେହି କାରଣରୁ ଆମେ ଏହି ନ୍ୟାୟପରାୟଣ ସର୍କାରଙ୍କର ହାରସ୍ଥ ହେଉଛୁଁ, ଆତ୍ମରକ୍ଷା ପାଇଁ । ସର୍କାର ଯଦି ଆମ୍ଭମାନଙ୍କୁ ତାଂକର

'ପ୍ରଜା ବୋଲି ମନେ କରୁଛନ୍ତି; ତେବେ ସେ ଗୁରୁଙ୍କୁ ଆନନ୍ଦପୁରରୁ ବହିଷ୍କାର କରିବା ବିଷୟରେ ଆମକୁ ସବୁପ୍ରକାର ସାହାଯ୍ୟ ଦେବା ଉଚିତ୍। ତାଙ୍କୁ ଦଣ୍ଡ ବା ନିୟନ୍ତ୍ରିତ କରିବାରେ ସର୍କାର ଯଦି ବିଳମ୍ବ କରନ୍ତି; ତେବେ ତାଙ୍କର ଆଗାମୀ ଅଭିଯାନ ବୋଧହୁଏ ଚାଲିବ ସାମ୍ରାଜ୍ୟର ରାଜଧାନୀ ଆଡ଼କୁ।"

ରାଜାମାନଙ୍କର ଏହି ଆବେଦନ ଦାକ୍ଷିଣାତ୍ୟରେ ଥିବା ଆଉରଙ୍ଗଜେବଙ୍କ ନିକଟକୁ ପଠାଇ ଦିଆଗଲା। ଯଥାସମୟରେ ସମ୍ରାଟଙ୍କ ଆଦେଶାନୁଯାୟୀ ପଇନ୍ଦା ଖାଁ ଓ ଦିନ୍ ବେଗ୍ ନାମକ ଦୁଇ ଜଣ ପାଞ୍ଚହଜାରୀ ମୋଗଲ ସେନାପତି ବାହାରିପଡ଼ିଲେ ଗୁରୁ ଗୋବିନ୍ଦ ସିଂଙ୍କୁ ଉପଯୁକ୍ତ ଶିକ୍ଷା ଦେବାକୁ। ପାର୍ବତ୍ୟ ରାଜାମାନେ ରୋପାର ନାମକ ସ୍ଥାନରେ ମୋଗଲ ବାହିନୀ ସହିତ ଯୋଗ ଦେଲେ।

ଗୁରୁ ଗୋବିନ୍ଦ ସିଂ ଏ ସବୁ ଘଟଣା ଯଥାକାଳରେ ଜାଣିପାରି ଆନନ୍ଦପୁରର ପାର୍ବତ୍ୟାଞ୍ଚଳରୁ ନିମ୍ନଭୂମିକୁ ଖସିଲେ। ଯେଉଁ ପଞ୍ଚ ଶିଖ୍ ବୀର, ତାଙ୍କର ମରଣ-ମନ୍ତ୍ରକୁ ସ୍ୱେଚ୍ଛାରେ ପ୍ରଥମେ ବରଣ କରି ନେଇଥିଲେ, ଅଭିଯାନୀ ବାହିନୀରେ ସେମାନଙ୍କ ଉପରେହିଁ ସମସ୍ତ ଗୁରୁ ଭାର ନ୍ୟସ୍ତ କରା-ଯାଇଥିଲା। ଯୁଦ୍ଧ ଲାଗିଗଲା ଗୋଟିଏ ଛୋଟ ନଈର କୂଳରେ।

ଶିଖ୍‌ମାନେ ସାହସ ଓ କୌଶଳର ସହିତ ଯୁଦ୍ଧ କଲେ। ସେମାନଙ୍କର ବଦ୍ଧପରିକରତା ଦେଖି ପଇନ୍ଦା ଖାଁ; ନିଜର ସୈନ୍ୟମାନଙ୍କୁ ଲଢ଼େଇକୁ ଅଧିକ ଉତ୍ସାହର ସହିତ ଚଳେଇବା ପାଇଁ କାଫେର-ହନନ ଫଳରେ ସେମାନେ କିପରି ଆଲ୍ଲାର ପ୍ରସାଦ ପାଇବେ ତାହା ବର୍ଣ୍ଣନା କରିବାକୁ ଲାଗିଲା। କିନ୍ତୁ କୌଣସି ପ୍ରକାରେ ଶିଖ୍‌ମାନଙ୍କୁ ସେମାନଙ୍କର ସ୍ଥାନରୁ ଘୁଞ୍ଚାଇ ହେଲା ନାହିଁ। ପଇନ୍ଦା ଖାଁ ବର୍ତ୍ତମାନ ଗୁରୁ ଗୋବିନ୍ଦ ସିଂଙ୍କୁ ଦ୍ୱନ୍ଦ୍ୱ ଯୁଦ୍ଧକୁ ଆହ୍ୱାନ କଲା, ଯାହା ଦେଇ ଯୁଦ୍ଧର ନିଷ୍ପତ୍ତି ଘୋଷିତ ହେବ। ସେ ଲଘୁ ଭାବରେ ଗୁରୁଙ୍କୁ ଦୟାକରି କହିଲା ଯେ ସେ ଆଗ ଆକ୍ରମଣ କରନ୍ତୁ, ଯେପରି ପରେ ସେ ଅନୁତାପ ନ କରନ୍ତି, ଉତ୍ତମ ସୁଯୋଗ ନ ପାଇଲେ ବୋଲି। କିନ୍ତୁ ଗୁରୁ ସେ ସୁବିଧା ଗ୍ରହଣ କଲେ ନାହିଁ। ପଇନ୍ଦାହିଁ ଆଗ ଆକ୍ରମଣ କଲା। ପଇନ୍ଦା ଖାଁ ଦୁଇଥର ଭାଗ୍ୟ ପରୀକ୍ଷାର ସୁଯୋଗ ଦାବୀ କରି ପ୍ରଥମେ ଏକ ଶର ନିକ୍ଷେପ

କଲା, ଯାହା ଗୁରୁଙ୍କ ପଗଡ଼ିରେ ବାଜି ନ ବାଜି ଚାଲିଗଲା, ସେହିପରି ମଧ୍ୟ ବିଷ୍ଫଳ ଶର । ବର୍ତ୍ତମାନ ଗୁରୁଙ୍କ ପାଳି ପଡ଼ିଲା । ପଇନ୍ଦା ଗୋଡ଼ରୁ ମୁଣ୍ଡ-ପର୍ଯ୍ୟନ୍ତ ସାଂଜୁ ପିନ୍ଧି ସୁରକ୍ଷିତ ହୋଇଥିଲେ ହେଁ, ଗୁରୁଙ୍କ ପ୍ରଥମ ଶର ତାର ସମସ୍ତ ଶରୀରରେ ଏକମାତ୍ର ଭେଦ୍ୟସ୍ଥଳ କାନ ପାଖରେ ଏପରି ଭାବରେ ବାଜିଲା ଯେ, ବିଚରା ସାଙ୍ଗେ ସାଙ୍ଗେ ଘୋଡ଼ାରୁ ତଳେ ମୁହଁମାଡ଼ି ପଡ଼ିଗଲା । ପଇନ୍ଦାର ଏ ପ୍ରକାର କରୁଣ ମୃତ୍ୟୁରେ ତାର ସୈନ୍ୟମାନେ ଭୀଷଣ ହିଂସ୍ର ହୋଇ ଉଠି, ଶିଖ୍‌ମାନଙ୍କ ଉପରକୁ ପ୍ରଚଣ୍ଡ ଆକ୍ରମଣ ଆରମ୍ଭ କରିଦେଲେ । କିନ୍ତୁ ଶିଖ୍ ସୈନ୍ୟମାନେ ଦୃଢ଼ ହୋଇ ନିଜ ନିଜ ଆସ୍ଥାନରେ ରହିଲେ ଏବଂ ଶତ୍ରୁପକ୍ଷର ଭୀଷଣ କ୍ଷତି ଘଟାଇଲେ । ବର୍ତ୍ତମାନ ଯୁଦ୍ଧର ଶେଷ କ'ଣ ହେବ ତାହା ପରିଷ୍କାର ଦେଖିପାରି, ପାର୍ବତ୍ୟରାଜାମାନେ ରଣଭୂଇଁ ଛାଡ଼ି ପଳାଇଗଲେ । ଖାନ୍ ବେଗ୍ ଯଦିଓ ହେଲେ, ତଥାପି ଯୁଦ୍ଧକୁ ଚାଲୁ ରଖିଲା; କିନ୍ତୁ ସେ ନିଜେ ଆହତ ହୁଅନ୍ତେ, ମୋଗଲ ସୈନ୍ୟ ପଳାୟନପର ହେବାକୁ ବାଧ୍ୟ ହେଲେ । ପଳାୟମାନ ଶତ୍ରୁଙ୍କୁ ଶିଖ୍‌ମାନେ ଖିଦ୍‌ଡ଼ିବା ଦ୍ୱାରା ଘଉଡ଼ି ନେଲେ । ଏହି ଶିଖ୍-ବିଜୟର ସ୍ମାରକ ସ୍ୱରୂପ ସେଠାରେ ଏପର୍ଯ୍ୟନ୍ତ ଏକ ମନ୍ଦିର ଦଣ୍ଡାୟମାନ ଅଛି । ଶିଖ୍‌ମାନେ ଆହୁରି ଆଗକୁ ଯାଇଥାନ୍ତେ; କିନ୍ତୁ ଗୁରୁ ପଳାତକ ଶତ୍ରୁଙ୍କୁ ମାରିବା ଉଚିତ ନୁହେଁ କହି, ସେମାନଙ୍କୁ ଲେଉଟାଇ ଆଣିଲେ । ସେ ରଣକ୍ଷେତ୍ରରେ ଦେଖାଇଥିବା ଅସାଧାରଣ ସାହସ ପାଇଁ ଶିଖ୍‌ମାନଙ୍କୁ ଧନ୍ୟବାଦ ଦେଲେ ଏବଂ ଆନନ୍ଦପୁରକୁ ଫେରି ଶ୍ରୀଅକାଳଙ୍କ ନିକଟରେ କୃତଜ୍ଞ ପ୍ରାର୍ଥନା ଜଣାଇଲେ ।

କିନ୍ତୁ ପାର୍ବତ୍ୟ ରାଜାମାନେ ସେମାନଙ୍କର ଏହି ବିଷ୍ଫଳ ପରାଭବ ପରେ ମଧ୍ୟ ଗୁରୁଙ୍କ ବିରୁଦ୍ଧରେ ପୁଣି ଷଡ଼ଯନ୍ତ୍ରରେ ଲାଗି ରହିଲେ । ଇତି-ମଧ୍ୟରେ ବିଳାସପୁରର ରାଜା ଭୀମଚନ୍ଦ୍ରଙ୍କ ମୃତ୍ୟୁ ହୋଇଗଲା । ତାଂକ ପୁଅ ଆଜମେରଚନ୍ଦ୍ର ବିଳାସପୁରର ରାଜା ହେଲେ । ପାର୍ବତ୍ୟ ରାଜାମାନେ ବ୍ୟକ୍ତିଗତ ଭାବରେ ଆଉରଙ୍ଗଜେବଂକ ସହିତ ସାମରିକ ସାହାଯ୍ୟ ସମ୍ପର୍କରେ କଥାବାର୍ତ୍ତା କରିବା ପାଇଁ, ତାଂକୁ ନିର୍ବାଚିତ କଲେ ଏବଂ ସେଥିପାଇଁ ମହାର୍ଘ ଉପଢ଼ୌକନ ସବୁ ସମସ୍ତଙ୍କଠାରୁ ସଂଗୃହୀତ ହେଲା । କିନ୍ତୁ ଆଜମେରଚନ୍ଦ୍ ଯାତ୍ରାରମ୍ଭ କରିବା ପୂର୍ବରୁ ହାନ୍ଦୁରର ଭାବପ୍ରବଣ ତରୁଣ ରାଜା ଭୂପ୍‌ଚନ୍ଦ୍ର, ସଙ୍ଗେ ସଙ୍ଗେ ଗୁରୁଙ୍କୁ ଆକ୍ରମଣ କରିବା ପାଇଁ ଧରି ବସିଲେ । ସେ ଯୁକ୍ତି କଲେ ଯେ, ଦିଲ୍ଲୀ ବା ଲାହୋରରୁ ସାହାଯ୍ୟ ଆସିବା

ପର୍ଯ୍ୟନ୍ତ ଅପେକ୍ଷା କରି ଲାଭ ନାହିଁ । କାରଣ ପ୍ରତ୍ୟେକ ଦିନର ବିଳମ୍ବ ମାନେ, ଗୁରୁର ଶକ୍ତି ବୃଦ୍ଧି । ଯଦି ସେମାନେ ସମସ୍ତେ ଏକତ୍ର ହୋଇ ଆକ୍ରମଣ କରନ୍ତି, ତେବେ ଶିଖ୍‌ମାନଙ୍କୁ ନିଶ୍ଚୟ ପରାସ୍ତ କରି ହେବ । ସେ ତାଙ୍କର ଭାଷଣର ଶେଷାଂଶରେ କହିଲେ—"ନଳ ଉପରେ ଭାର ଦେଇ ହେବ ନାହିଁ । କିନ୍ତୁ ଗୁଡ଼ାଏ ନଳ ଏକାଠି ହୋଇଗଲେ, ସେମାନଙ୍କୁ ଭାଙ୍ଗିବା ସହଜ ନୁହେଁ । ଆମେ ସମସ୍ତେ ଏକାଠି ହେଲେ, ଶିଖ୍‌ମାନେ ଆମର ପ୍ରତିରୋଧ ସମ୍ଭାଳି ପାରିବେ ନାହିଁ ।"

ଭୂପ୍‌ଚନ୍ଦଙ୍କର ଏହି ଭାବପ୍ରବଣ ଭାଷଣରେ ସମସ୍ତେ ଅଭିଭୂତ ହୋଇ, ସମ୍ରାଟଙ୍କ ନିକଟକୁ ଦୂତ ପଠାଇବା ପ୍ରସ୍ତାବ ତ୍ୟାଗ କରି, ଗୁରୁଙ୍କୁ ଆଉ ଏକ ଆକ୍ରମଣ କରିବାର ଆୟୋଜନରେ ଲାଗିଗଲେ । ଜାମ୍ମୁ, ନୁର୍‌ପୁର, ମଣ୍ଡି, କୁଲ୍ଲୁ, କଓଣ୍ଠାଲ, ଗୁଲେର୍, ଚମ୍ବା, ଶ୍ରୀନଗର, ଦଧୱାଲ୍ ଓ ଅନ୍ୟ ରାଜ୍ୟର ରାଜାମାନେ ଏକତ୍ର ହୋଇ, କ୍ଷିପ୍ର ଗତିରେ ଆନନ୍ଦପୁରର ବାହାରେ ଆସି ପହଞ୍ଚିଗଲେ । ସେମାନେ ଏଥର ଯୁଦ୍ଧକରି ଯେତେ ନୁହେଁ, ଆନନ୍ଦପୁରକୁ ଅବରୋଧ ଦ୍ୱାରା, ତାକୁ ଚତୁଃପାର୍ଶ୍ୱ ବିଚ୍ଛିନ୍ନ କରିଦେଇ, ଶିଖ୍‌ମାନଙ୍କର ପରାଜୟ ଆଣିବେ ବୋଲି ଯୋଜନା କରିଥିଲେ ।

ଆକ୍ରମଣ ଆରମ୍ଭ ହେବା ପୂର୍ବରୁ ରାଜାମାନଙ୍କ ନେତା ଆଜମେର ଚନ୍ଦ୍ ଗୁରୁଙ୍କ ନିକଟକୁ ଏହି ମର୍ମରେ ଏକ ପତ୍ର ଦେଲି ଯେ, ସେ ଆତ୍ମସମର୍ପଣ କରନ୍ତୁ, ଆନନ୍ଦପୁର ଯେଉଁ ଜମି ଉପରେ ଗଢ଼ା ଯାଇଛି, ତା ପାଇଁ ସେ ବାର୍ଷିକ ଖଜଣା ଦିଅନ୍ତୁ, ନଚେତ୍ ଆନନ୍ଦପୁରକୁ ଛାଡ଼ିବାକୁ ଓ ଅନ୍ୟାନ୍ୟ ଫଳ ଭୋଗିବାକୁ ସେ ପ୍ରସ୍ତୁତ ହୁଅନ୍ତୁ ।

ଗୁରୁ ଉତ୍ତର ଦେଲେ ଯେ, ତାଙ୍କର ପିତା ସମ୍ପୃକ୍ତ ଜମି ବାଧ୍ୟବାଧକ ଭାବରେ କିଣି ସବୁ ପାଉଣା ଦେଇ ଦେଇଛନ୍ତି । ଅଧିକା ପାଉଣା କେବଳ ବନ୍ଧୁତ୍ୱ ମୂଳରେ ଆଦାୟ ହୋଇପାରିବ । ସେ ସେମାନଙ୍କୁ କହିଲେ ଯେ, ଔଦ୍ଧତ୍ୟ ପରିତ୍ୟାଗ କରି, ଯାହା ତାଙ୍କର ପାଇବାର ଥିଲେ ତାକୁ ସେ ସୁହୃଦ ସୂତ୍ରରେ ନିଅନ୍ତୁ । ଗୁରୁଙ୍କ ଗୃହ ସମସ୍ତଙ୍କ ପାଇଁ ମୁକ୍ତଦ୍ୱାର । ସେମାନେ ଖାଲ୍‌ସା ସହିତ ସନ୍ଧି କରନ୍ତୁ । ସେ ନିଜେ ମଧ୍ୟସ୍ଥତା କରିବେ ।

କିନ୍ତୁ ରାଜାମାନେ ଶିଖ୍‌ମାନଙ୍କୁ ଧ୍ୱଂସ କରିବା ଇଚ୍ଛାରେହିଁ ଆସି ଥିବାରୁ, ଶାନ୍ତିର ପ୍ରସ୍ତାବରେ କର୍ଣ୍ଣପାତ କଲେ ନାହିଁ । ଇତିମଧ୍ୟରେ ମାଝାରୁ ବକ୍‌ସ୍ ସିଂ, ଗୁରୁବକ୍‌ସ୍ ସିଂ, କଲାଲ୍ ସିଂ ଓ ଦୁନଗିରିଙ୍କ ଅଧୀନରେ ୫୦୦ ଶିଖ୍ ଆନନ୍ଦପୁରରେ ଯୋଗ ଦେଲେ । ସେର ସିଂ ଓ ନାହାର ସିଂ ଲୋହଗଡ଼ର ଦାୟିତ୍ୱରେ ରହିଲେ । ଧନୁ, ଶର କଟାରି, ଜାମଦାର୍, ସାରୋହୀ, ସାଂଗ ବର୍ଚ୍ଛା, ବିଚୁଆ, ଶେଲ, ବନ୍ଧୁକ ପ୍ରଭୃତି ଅସ୍ତ୍ରଶସ୍ତ୍ରମାନ ଶିଖ୍‌ମାନଙ୍କ ଭିତରେ ବାଣ୍ଟି ଦିଆଗଲା । ତେଣେ ପାର୍ବତ୍ୟ ରାଜାମାନଙ୍କର ସୈନ୍ୟମାନେ ଆସ୍ତେ ଆସ୍ତେ ଆନନ୍ଦପୁରକୁ ଚାରିପଟୁ ଘେରିଗଲେ ।

ଅବରୋଧ ବହୁଦିନ ଚାଲିଲା । କିନ୍ତୁ ସେଥିରେ ଶିଖ୍‌ମାନଙ୍କର କ୍ଷତି ସାଧିତ ହେଲା ନାହିଁ । ବରଂ ପ୍ରତି ରାତିରେ ସେମାନେ ଦୁର୍ଗମାନଙ୍କରୁ ବହିର୍ଗତ ହୋଇ ଅବରୋଧୀମାନଙ୍କୁ ନିହତ କରି ସେମାନଙ୍କର ଖାଦ୍ୟ ଓ ଅସ୍ତ୍ରଶସ୍ତ୍ର ନେଇ ଚାଲି ଆସୁଥିଲେ । ରାଜସୈନ୍ୟମାନଂକର ଦୁର୍ଗପ୍ରାଚୀର-ମାନଙ୍କୁ ଭାଙ୍ଗି ଦୁର୍ଗ ଭିତରେ ପଶିବାର ଚେଷ୍ଟା ବାରମ୍ବାର ପ୍ରତିରୋଧ ପାଇ ବ୍ୟର୍ଥ ହେଲା କେବଳ ନୁହେଁ, ସେମାନଙ୍କ ନିଜର କ୍ଷତିର ପରିମାଣ ବଢ଼ାଇଲା । ଶିଖ୍‌ମାନଙ୍କର ନୈଶ ଆକ୍ରମଣରେ ଗୁରୁ ଗୋବିନ୍ଦଙ୍କ ଚତୁର୍ଦ୍ଦଶ ବର୍ଷ ବୟସ୍କ ଜ୍ୟେଷ୍ଠପୁତ୍ର ଅଜିତ୍ ସିଂ, ନିଜର ସାହସ ଓ ବିକ୍ରମ ପାଇଁ ସମସ୍ତଙ୍କର ପ୍ରଶଂସାଭାଜନ ହେଲେ । ଶେଷରେ ରାଜାମାନେ ଏକ ଦନ୍ତା-ହାତୀକୁ ମଦ ପିଆଇ ଲୋହଗଡ଼ର ଦୁର୍ଗକବାଟ ଭାଙ୍ଗିବାକୁ ଶେଷ ଚେଷ୍ଟା କଲେ । ଗୁରୁ ଗୋବିନ୍ଦ ସିଂ ସେହି ହାତୀକୁ ଅଟକାଇବା ପାଇଁ ବିଚିତ୍ର ସିଂ ନାମକ ଏକ ଅସାଧାରଣ ସାହସୀ ଶିଖ୍‌କୁ ପଠାଇଲେ । ଗୁରୁଙ୍କର ଏହି ନିର୍ବାଚନରେ ବିଚିତ୍ର ସିଂର ଆନନ୍ଦ ଦେଖେ କିଏ ? ସେ ଜଗି ରହି ଠିକ୍ ବେଳେ ଆକ୍ରମଣକାରୀ ହାତୀକୁ ତାର ବର୍ଚ୍ଛାରେ ଏପରି ଆଘାତ କଲା ଯେ, ତାର ମସ୍ତକତ୍ରାଣ ଭେଦ କରି, ତାର କପାଳକୁ ଗଭୀର ଆଘାତ କଲା । ଜାନୋଆରଟା ବେଦନାରେ ଅସ୍ଥିର ହୋଇ ପଛକୁ ପଳେଇ ଲାଗିଲା ଏବଂ ନଷ୍ଟକରି ଚାଲିଲା ରାଜାମାନଙ୍କର ବହୁ ସୈନ୍ୟଙ୍କୁ, ତାର ଅସ୍ଥିର ପଦା-ଘାତରେ ।

ସ୍ଥାପରେ ଦୁଇପଟ ଉନ୍ମୁକ୍ତ ଯୁଦ୍ଧକୁ ବାହାରି ପଡ଼ିବାକୁ ବାଧ ହେଲେ । ଉଭୟ ପଟର ବହୁ କ୍ଷତି ହେଲା । କିନ୍ତୁ ରାଜାମାନଙ୍କ ପକ୍ଷରେ

ରଜା କେଶରୀ ଚନ୍ଦ, ଏବଂ ଗଙ୍ଗାର ଓ ବଦ୍ଧାର ଉପଜାତିମାନଙ୍କର ନେତା ଜଗାଜିଲ୍ଲା ମରିଗଲେ । ହୁଣ୍ଡୁରର ଓ କାଙ୍ଗ୍ରାର ରଜାମାନେ ଗୁରୁତର ଭାବରେ ଆହତ ହେଲେ । ଏହିପରି ଭାବରେ ରଜାମାନଙ୍କର ମିଳିତବାହିନୀ ଫଙ୍ଗୁ ଓ ଛିନ୍ନଭିନ୍ନ ହୋଇ ଅବରୋଧ ପରିତ୍ୟାଗ କରି ପଳାୟନ କଲେ ।

ଏହି ପ୍ରକାର ବାରମ୍ବାର ପରାଭବରେ ବିଳାସପୁରର ରଜାଙ୍କର କ୍ରୋଧ ବଢ଼ିବାକୁ ଲାଗିଲା । ସେ ପୁଣି ଆଉଥରେ ଗୁରୁଙ୍କୁ ବିନାଶ କରିବା ପାଇଁ ଷଡ଼ଯନ୍ତ୍ର କଲେ । ଏଥର ସେ ସନ୍ଧି କଲେ, ସିର୍ହିନ୍ଦ୍ ଓ ଲାହୋରର ସୁବେଦାରମାନଙ୍କ ସାଥିରେ । ଏମାନଙ୍କର ମିଳିତ ସୈନ୍ୟ ପୁଣି ଆନନ୍ଦପୁର ଆକ୍ରମଣ କଲେ । ଗୁରୁ ନିକଟସ୍ଥ ନମୋ ନାମକ ସ୍ଥାନରେ ସେମାନଙ୍କୁ ଭେଟିଲେ । ପ୍ରଥମେ ମନେ ହେଲା ଯେପରି ମିଳିତବାହିନୀ ଜିଣିଯିବ । କିନ୍ତୁ ଶିଖ୍‌ମାନେ ଏପରି ଓଲଟା ଆକ୍ରମଣ ଆରମ୍ଭ କରିଦେଲେ ଯେ, ମିଳିତ ବାହିନୀ ଛିନ୍ନଭିନ୍ନ ହୋଇଗଲେ, ଯଦିଓ ଶିଖ୍‌ମାନଙ୍କର କ୍ଷତି ବି କମ ହୋଇ ନ ଥିଲା । ଗୁରୁ ନିଜେ ପଳାୟମାନ ମିଳିତ-ବାହିନୀର ପଛେ ପଛେ ବାସାଲି ପର୍ଯ୍ୟନ୍ତ ଗଲେ । ସେଠାର ରଜା ଗୁରୁଙ୍କୁ ସର୍ବଦା ସମ୍ମାନ ପ୍ରଦର୍ଶନ କରୁଥିଲେ ଏବଂ ବିଳାସପୁରସ୍ଥ ଆନନ୍ଦପୁରରୁ ଚାଲି ଆସି, ତାଂକ ରଜ୍ୟରେ ବାସ କରିବା ପାଇଁ ବାରମ୍ବାର ଅନୁରୋଧ କରିଥିଲେ । ତେଣୁ ସେ ସେଠାରେ କିଛିଦିନ ରହିଗଲେ । କିନ୍ତୁ ଏହା ଜାଣିପାରି ବିଳାସପୁରର ପରାଜିତ ତରୁଣ ରଜା ଆଜମେର ଚନ୍ଦ, ବାସାଲି ଆକ୍ରମଣ କଲେ । ଶିଖ୍‌ମାନେ ଏଠି ମଧ୍ୟ ଆଛା ମାଡ଼ ଦେଅନ୍ତେ, ସେ ପୁଣି ପଳାଇଗଲେ । କିନ୍ତୁ ଏହି ଖଣ୍ଡ-ଯୁଦ୍ଧରେହିଁ ଏଯାବତ୍ ଗୁରୁଂକର ସକଳ ଯୁଦ୍ଧରେ ଅଂଶ ଗ୍ରହଣ କରି ଅସୀମ ସାହସ ପ୍ରଦର୍ଶନ କରି ଆସିଥିବା, ସାହେବ ସିଂ, ପ୍ରାଣ ହରାଇଲେ ।

ଗୁରୁ, ଯୁଦ୍ଧ ପରେ, ବାସାଲୀରୁ ଆନନ୍ଦପୁରକୁ ଫେରି ଆସିଲେ । କିନ୍ତୁ ବେଶି କାଳ ଆଉ ସେ ଶାନ୍ତିରେ ରହିପାରି ନ ଥିଲେ ।

—o—

# ନବମ ଅଧ୍ୟାୟ

## ପରିତ୍ୟକ୍ତ ଆନନ୍ଦପୁର ।

ଗୁରୁ ଯେଉଁ କେତେ ଦିନ ଶାନ୍ତି ପାଇଲେ, ସେ ତାହା ଶିଖ୍‌ମାନଙ୍କୁ ଧର୍ମ-ଶିକ୍ଷାରେ ବ୍ୟୟିତ କଲେ । ଯୁଦ୍ଧ ସେମାନଙ୍କର ଲକ୍ଷ୍ୟ ବା ଜୀବିକା ନ ଥିଲା ! ଏପର୍ଯ୍ୟନ୍ତ ଯେଉଁସବୁ ଯୁଦ୍ଧରେ ସେମାନେ ଯୋଗଦାନ କରିଥିଲେ, ସେ ସବୁ ତାଙ୍କ ଉପରେ ବାହାରୁ ଲଦି ଦିଆ ଯାଇଥିଲା; ସେମାନେ ଆଗଭର ହୋଇ କାହା ସହିତ ଲଢ଼ିବାକୁ ଯାଇ ନ ଥିଲେ, କି ପ୍ରତ୍ୟେକଟି ଯୁଦ୍ଧରେ ଜୟଲାଭ କଲେ ମଧ୍ୟ ସେଥିରୁ ନିଜ ଗୋଷ୍ଠୀର ଗୌରବ ବା ଅନ୍ୟର ରାଜ୍ୟାଧିକାର ମଧ୍ୟ ଗ୍ରହି ନ ଥିଲେ । ଶିଖମାନଙ୍କର ପ୍ରେରଣାର ଉତ୍ସ ଥିଲା ଆଭ୍ୟନ୍ତରୀଣ । ଗୁରୁ, ସେମାନଙ୍କୁ ମୁଖ୍ୟତଃ ଆତ୍ମରକ୍ଷା ପାଇଁ ସାମରିକତାରେ ଗଢ଼ିଲେ ମଧ୍ୟ,ସେମାନଙ୍କର ନବଜୀବନର ମୂଳପତ୍ତନ ଯେ ଆଧ୍ୟାତ୍ମିକତା, ସେ ତାହା ସେମାନଙ୍କୁ ବାରମ୍ବାର ସ୍ମରଣ କରାଇବାକୁ ଭୁଲୁ ନ ଥିଲେ । ସେମାନଙ୍କର ଆଧ୍ୟାତ୍ମିକ ସାଧନାକୁ ନିରୁପଦ୍ରବ ରଖିବା ପାଇଁ କେବଳ ଥିଲା ସାମରିକତାର ଅଭ୍ୟାସ । ସାମରିକତା ଯେ ନୈତିକ ଓ ଧର୍ମୀୟ ଜୀବନର ଭୃତ୍ୟ ମାତ୍ର, ଗୁରୁଜୀ ସେମାନଙ୍କ ଚିତ୍ତରେ ତାହା ସୁପ୍ରତିଷ୍ଠିତ କରିବାକୁ ସର୍ବଦା ଜାଗ୍ରତ ଥିଲେ ।

ଗୁରୁଜୀ ବର୍ତ୍ତମାନ ଖାଲ୍‌ସାମଣ୍ଡଳରେ ଦୀକ୍ଷା ନେଇଥିବା ଶିଖ୍‌ମାନଙ୍କର ଚିତ୍ତବୃତ୍ତିକୁ ପର୍ଯ୍ୟବେକ୍ଷଣ ଓ ବିଚାର କରିବାକୁ ସମୟ ପାଇଲେ । ସେମାନେ ଯେ ରଣଭୂମିରେ ଓ ଅନ୍ୟତ୍ର ସର୍ବୋତ୍ତମ ବୀରତ୍ୱ ଦେଖାଇ ପାରିଥିଲେ, ବା ଘୋର ସଙ୍କଟକାଳ ଓ ଅବସ୍ଥାରେ ମଧ୍ୟ ଯେ ସେମାନେ ଗୁରୁଙ୍କ ପ୍ରତି ବିଶ୍ୱାସରେ ଅଟଳ ରହିଥିଲେ, ଏଥିରେ ମଧ୍ୟ ଗୁରୁ ଯଥେଷ୍ଟ ସନ୍ତୁଷ୍ଟ ହୋଇ-ଥିଲେ । ସେମାନେ ପରାଜୟରେ ଉତ୍ସାହ ହରାଉ ନ ଥିଲେ, କି ବିଜୟରେ ହରାଉ ନ ଥିଲେ ନମ୍ରତା । ଗୁରୁଜୀ ବର୍ତ୍ତମାନ ସମସ୍ତଙ୍କ ଆଗରେ ଶିଖ୍ ଆଲମ୍ ସିଂଙ୍କର ଦୃଷ୍ଟାନ୍ତ ବର୍ଣ୍ଣନା କରିଥାନ୍ତି । ଉଚ୍ଚ ବର୍ଣ୍ଣରେ ଓ ଅଭିଜାତ ବଂଶରେ ତାଂକର ଜନ୍ମ ହୋଇଥିଲା । କିନ୍ତୁ ଦୀକ୍ଷା ନେବାମାତ୍ରେ ସେ ସମସ୍ତ ଅତୀତକୁ ପଛକୁ ଫିଙ୍ଗିଦେଇ ଏପରି ଉତ୍ସାହର ସହିତ ଧର୍ମର ସେବକ

ହୋଇପଡ଼ିଲେ, ଯେପରି ମନେ ହେଲା, ସେ ଜନ୍ମ ହୋଇଥିଲେ ସେଇଥିପାଇଁ ଏବଂ ପ୍ରତି ଯୁଦ୍ଧରେ ନିଜକୁ ଜୟଶ୍ରୀମଣ୍ଡିତ କଲେ । ଗୁରୁ ବର୍ତ୍ତମାନ କହିବାକୁ ଲାଗିଲେ, ଶିଖ୍ ହୋଇ ଅମୃତ-ମନ୍ତ୍ରରେ ଦୀକ୍ଷିତ ନ ହେବାଟା ସନ୍ତୋଷଜନକ ଅବସ୍ଥା ନୁହେଁ । ସେହିପରି ମଧ୍ୟ ଶିଖ୍ ହୋଇ ଯେଉଁମାନେ ଜ୍ୟୋତିଷ ପାଖକୁ ଧାଆଁନ୍ତି ନିଜର ଭବିଷ୍ୟତ ଜାଣିବା ପାଇଁ, ବା ଯେଉଁମାନେ ମୃତଜନଙ୍କ ସମାଧି ବା ମିଥ୍ୟା ପୀର ବା ଦେବାଦେବୀଙ୍କ ପୂଜା କରନ୍ତି, ସେମାନେ ପୁଣ୍ୟ ସଂଗ୍ରହ କରିବେ ବୋଲି ସେ ଆଶା କରୁ ନ ଥିଲେ । ଯେକୌଣସି ଶିଖ୍ ଗ୍ରନ୍ଥସାହେବର ନକଲ ବିକି ବା ଅନ୍ୟକୁ ଶୁଣାଇ ଯଦି କିଛି ଅର୍ଥ ସଂଗ୍ରହ କରେ, ତାହା ଆପତ୍ତିଜନକ ନୁହେଁ; ଯଦି ସେହି ଅର୍ଥଦ୍ୱାରା ସେ ଆଗ ଦରିଦ୍ରଙ୍କୁ ଖୁଆଇ, ପରେ ଯାଇ ନିଜେ ଭୋଜନ କରେ । ଜନ୍ମ ବା ବଂଶର ଉଚ୍ଚତା ବା ନୀଚତା ନ ବିଚାରି, ଯେ କୌଣସି ଶିଖ୍, ଅନ୍ୟ ଯେ କୌଣସି ଶିଖଠାରୁ ଧର୍ମଜ୍ଞାନ ଲାଭ କରିପାରେ । ଗୁରୁ ବର୍ତ୍ତମାନ କହି ଆରମ୍ଭ କଲେ ଯେ, ଯିଏ ତାଙ୍କର ଶିଖ୍ (ଶିଷ୍ୟ) ବୋଲି ମନେ କରନ୍ତି, ସେ ଅମୃତ-ମନ୍ତ୍ରରେ ନିଜକୁ ଦୀକ୍ଷିତ କରାଇ ନେବା ଏବଂ ସର୍ବଦା କୁଶଳ କର୍ମ କରିବାରେହିଁ ନିଜକୁ ନିଯୁକ୍ତ କରିବା ଆଶା କରାଯାଏ । ଗୁରୁ ବରାବର କହୁଥିଲେ ଯେ, ଯେପର୍ଯ୍ୟନ୍ତ ଶିଖମାନେ କର୍ମ ଓ ଆକୃତିରେ ନିଜର ଅନନ୍ୟତା ଅବ୍ୟାହତ ରଖିଥିବେ, ସେପର୍ଯ୍ୟନ୍ତ ସେମାନେ ପ୍ରଭାବ ଓ କ୍ଷମତା ଭୋଗ କରି ଚାଲିବେ ।

ବିଳାସପୁରର ତରୁଣ ରାଜା ଆଜମେର ଚାନ୍ଦ ଇତି ଭିତରେ ବନ୍ଧୁତାର ଚୁକ୍ତି କରିବା ଓ ତାକୁ ସହଜରେ ଭାଙ୍ଗିବାରେ, ବେଶ୍ କୁଖ୍ୟାତି ଅର୍ଜନ କରି ସାରିଥିଲେଣି । ବାରମ୍ବାର ପରାଭବ ପରେ, ସେ ବର୍ତ୍ତମାନ ଗୁରୁଙ୍କ ନିକଟକୁ, ସନ୍ଧି ପାଇଁ ଲୋକ ପଠାଇଲେ । ଗୁରୁ ସଙ୍ଗେ ସଙ୍ଗେ ତାଙ୍କର ପ୍ରସ୍ତାବ ଗ୍ରହଣ କରି, ଆନନ୍ଦପୁରରେ ରାଜା ପକ୍ଷର ଏକ ଦୂତ ଅବସ୍ଥାନ କରିବାରେ ମଧ୍ୟ ରାଜି ହୋଇଗଲେ । କିନ୍ତୁ ପରେ ଜଣାପଡ଼ିଲା ଯେ, ସେହି ଦୂତ, ଦୌତ୍ୟ ଅପେକ୍ଷା ଗୁପ୍ତଚୌର୍ଯ୍ୟରେହିଁ ଅଧିକ ବ୍ୟସ୍ତ ଥିଲା । ଏହା ଜାଣି ମଧ୍ୟ ଗୁରୁ ତାହାପ୍ରତି କେବେ ହେଲେ ସୌଜନ୍ୟରେ ତ୍ରୁଟି କରି ନ ଥିଲେ । ନିକଟସ୍ଥ ରାୱାଲ୍‌ପୁର ଗ୍ରାମରେ ଏକ ବାର୍ଷିକ ମେଳା ହୁଏ । ଗୁରୁ ସପରିବାର ସେଠାକୁ ଯାଇଥିଲେ । ସେଠାରେ ଅନ୍ୟ ସମସ୍ତ ପାର୍ବତ୍ୟ ରାଜାମାନେ, ଆଜମେର ଚାନ୍ଦଙ୍କ ପଦାଙ୍କାନୁସରଣ କରି,

ଗୁରୁଙ୍କର ପୂର୍ବ ଅପରାଧ ସବୁ ଭୁଲିଯାଇ, କ୍ଷମା ଦେବାକୁ ଗୁରୁଙ୍କୁ କହିଲେ ଏବଂ ଶାନ୍ତି ପ୍ରାର୍ଥନା କଲେ । ସରଳ ବିଶ୍ୱାସୀ ଗୁରୁଙ୍କର କାହାରି ପ୍ରତି ବ୍ୟକ୍ତିଗତ ବିଦ୍ୱେଷ ନ ଥିଲା । ସେ ସେମାନଙ୍କୁ ବନ୍ଧୁଭାବରେ ଗ୍ରହଣ କରିନେଇ ଓ ନିଜ ଆସ୍ଥାନକୁ ଅଣାଇ, ସେମାନଙ୍କୁ ହୃଦ୍ୟତାର ସହିତ ନାନା ଭାବରେ ଆପ୍ୟାୟିତ କରାଇଥିଲେ ।

କିନ୍ତୁ ସ୍ୱ-ସ୍ୱଭାବାନୁଯାୟୀ, ବିଳାସପୁରର ତରୁଣ ରାଜା ଆଜମେର ଚନ୍ଦ୍ର ପ୍ରଥମ ସୁବିଧା ପାଇଲା ମାତ୍ରେ, ଶାନ୍ତି ଓ ବନ୍ଧୁତାର ମୁଖାକୁ ଅକୁଣ୍ଠିତ ଭାବରେ ଫିଙ୍ଗି ଦେଇ, ଗୁରୁଙ୍କୁ ଆକ୍ରମଣ କରି ବସିଲା । ଠିକ୍ ଏହି ସମୟରେ, ସଇଦ୍ ବେଗ ଓ ଆଲିଫ୍ ଖାଁ ନାମକ ଦୁଇଟି ମୋଗଲ ସେନାପତି ପ୍ରତ୍ୟେକେ ପାଂଚ ହଜାର ଲେଖାଏଁ ସୈନ୍ୟ ନେଇ ଲାହୋରରୁ ଦିଲ୍ଲୀ ଯାତ୍ରା କରୁଥିଲେ । ଆଜମେର ଚନ୍ଦ୍ର ତାଂକୁ ପ୍ରତ୍ୟହ ହଜାରେ ଟଙ୍କା ହିସାବରେ ପାରିତୋଷିକ ଦେବାର ପ୍ରତିଶ୍ରୁତି ଦେଇ, ସେମାନଙ୍କୁ ମଂଗାଇ ନେଲା ଗୁରୁଙ୍କୁ ଆକ୍ରମଣ କରିବାକୁ । ଦୁଇ ସେନାପତି ତାଂକ କଥାରେ ପଡ଼ି, ବାଟ ଭାଂଗି ଆନନ୍ଦପୁର ଆଡ଼କୁ ଯାତ୍ରା କଲେ । କିନ୍ତୁ ସଇଦ୍ ବେଗ ବାଟରେ ଗୁରୁ ଗୋବିନ୍ଦ ସିଂ ଉଚ୍ଚକୋଟିର ଆଧ୍ୟାତ୍ମିକତାର ଅଧିକାରୀ ଥିବାର ଜାଣି, ଅଭିଯାନରୁ ନିଜକୁ ବିଚ୍ଛିନ୍ନ ରଖିଲେ କେବଳ ନୁହେଁ, ପରେ ଖବର ଶୁଣିପାରି, ଏକ ସଂକଟପୂର୍ଣ୍ଣ ମୁହୂର୍ତ୍ତରେ ସୈନ୍ୟ ଗୁରୁଂକ ପକ୍ଷରେ ଆସି ଯୋଗ ଦେଲେ ଲଢ଼ାଇରେ । ସଇଦ୍ ବେଗଂକୁ ଆରପଟେ ଦେଖି, ଆଲିଫ୍ ଖାଁ ଉତ୍ସାହ ହରାଇଲେ, ଏବଂ ରଣକ୍ଷେତ୍ର ଛାଡ଼ି ଚାଲିଗଲେ । ସଇଦ୍ ବେଗ୍ ଆଉ ଦିଲ୍ଲୀ ନ ଯାଇ ଏବଂ ମୋଗଲ ସମ୍ରାଟଙ୍କ ନୌକରୀ ମଧ୍ୟ ଛାଡ଼ି ଦେଇ ଗୁରୁଂକ ପାଖରେହିଁ ରହିଗଲେ । ସେ ତାଙ୍କର ସମସ୍ତ ସମ୍ପତ୍ତି ଶିଖ୍ ସମ୍ପ୍ରଦାୟର କଲ୍ୟାଣ ପାଇଁ ଦେଇଦେଲେ ଏବଂ ପରେ ଗୁରୁଙ୍କ ପକ୍ଷରେ ରହି ମୋଗଲମାନଙ୍କ ବିରୁଦ୍ଧରେ ଲଢ଼ିଲେ ।

କିନ୍ତୁ ମାତ୍ର ଅଳ୍ପକାଳ ପରେ ଆନନ୍ଦପୁର ଆଉ ଏକ ଆକ୍ରମଣର ସମ୍ମୁଖୀନ ହେଲା । ସମସ୍ତ ପାର୍ବତ୍ୟ ରାଜାମାନଙ୍କଠାରୁ ବଚ୍ଛା ବଚ୍ଛା ୧୦୦୦୦ ପାଇକ ସଂଗ୍ରହ କରି, ଆଜମେର ଚନ୍ଦ୍ର ପୁଣି ଆନନ୍ଦପୁର ଚଢ଼ାଉ କଲା । ସେତେବେଳେ ଆନନ୍ଦପୁରରେ ୮୦୦ରୁ ବେଶୀ ଶିଖ ନ ଥାନ୍ତି । ସେମାନେ ବର୍ତ୍ତମାନ ଧରିନେଲେ ଯେ ଶତ୍ରୁ ନ ଆସୁଣୁ, ସେମାନଙ୍କର ଆକସ୍ମିକ ଆଗୁଆ ଆକ୍ରମଣହିଁ ଆନନ୍ଦପୁରର ପ୍ରତିରକ୍ଷାର ଏକମାତ୍ର ଉପାୟ ।

ଶିଖମାନଙ୍କର ଏହି ଆକସ୍ମିକ ଆକ୍ରମଣ ଶତ୍ରୁ ସ୍କନ୍ଧାବାରରେ ଘୋର ବିଶୃଙ୍ଖଳା ସୃଷ୍ଟି କରିଦେଲା ଏବଂ ଅସ୍ଥିରଚିତ୍ତ ଆଜମେର ବୃନ୍ଦ ପ୍ରଥମ କରି ରଣକ୍ଷେତ୍ରରୁ ପଳାୟନ କଲା । କିନ୍ତୁ ଯାହାହେଉ, ଅନ୍ୟ ରାଜାମାନେ ନିଜ ନିଜ ପାଇକଙ୍କ ପାଖେ ଦୃଢ଼ ହୋଇ ଠିଆ ରହିଲେ ଏବଂ ଅନେକ ସମୟ ଧରି ଭୀଷଣ ଯୁଦ୍ଧ ଚାଲିଲା । ତଥାପି ପାର୍ବତ୍ୟ ରାଜାମାନେ ଏକେ ଏକେ ପରାସ୍ତ ହେଲେ । ଆଲମ ସିଂ ଓ ଉଦେ ସିଂ ସେମାନଙ୍କର ବୀରତ୍ୱର ପୂର୍ବ ଗୌରବକୁ ଏଥର ମଧ୍ୟ ଉଜ୍ଜ୍ୱଳତର କଲେ । କବି ସଇନ ପାଠ ଗାଇଲେ—"ଦେବ-ପ୍ରେରିତ ଜନକୁ ବିଜୟ-ଲକ୍ଷ୍ମୀ ବରଣ କଲେ, ରାଜାମାନେ ସମସ୍ତେ ପଶିଲେ ତାଙ୍କର ଶରଣ ।"

ଆନନ୍ଦପୁର ବର୍ତ୍ତମାନ ସବୁଆଡ଼ୁ ସମସ୍ତଙ୍କର ଏପରି ଦୃଷ୍ଟି ଆକର୍ଷଣ କଲା ଯେ, ରାଜାମାନଙ୍କ ମିଳିତ ଆକ୍ରମଣର ପରେ ପରେ ପୁଣି ଆଉ ଏକ ଆକ୍ରମଣ ମାଡ଼ି ଆସିଲା । ଏଥର ମୋଗଲ ଦରବାରର ଆଦେଶ ଘେନି ସଇଦ୍ ଖାଁ ନାମକ ସେନାପତି ଆନନ୍ଦପୁର ଆକ୍ରମଣ କଲେ । କିଛି କାଳର ଅନୁପସ୍ଥିତି ପରେ, ଅଧିକାଂଶ ଶିଖ୍ ଗତ ଯୁଦ୍ଧ ପରେ, ନିଜ ନିଜ ଘରକୁ ଚାଲି ଯାଇଥିଲେ । ଗୁରୁଙ୍କ ପାଖରେ ଥିଲେ ମୋଟେ ୫୦୦ ଶିଖ୍ । ତଥାପି ଏହି ଅଳ୍ପସଂଖ୍ୟକ ଲୋକ ସେମାନଙ୍କର ପୂର୍ବାଚରିତ ସାହସ ଓ ଉତ୍ସାହରେ ଏକ ବୃହତ୍ତର ବାହିନୀ ମଝିକି ପ୍ରାଣମୂର୍ଚ୍ଛା କରି ଡେଇଁ ପଡ଼ିଲେ । ଦୁଇଜଣ ବିଶ୍ୱସ୍ତ ମୁସଲମାନ ମଇମୁନ୍ ଖାଁ ଓ ସଇଦ୍ ବେଗ୍ ଯୁଦ୍ଧର ଭୀଷଣତମ ଅବସ୍ଥାରେ ଗୁରୁଙ୍କ ପଟେ ଆସି ଲଢ଼ିଲେ ଏବଂ ସେମାନଙ୍କ ଭିତରୁ ସଇଦ ବେଗ୍ ପ୍ରାଣ ମଧ୍ୟ ହରାଇଲେ । ଗୁରୁ ନିଜେ ନିଜର ନୀଳବର୍ଣ୍ଣର ଅଶ୍ୱ ଆରୋହଣ କରି ସାହସର ସହିତ ମଧ୍ୟ ନିଜର ସୈନିକମାନଙ୍କର ରେଖା ଭେଦ କରି ମୋଗଲ ସେନାପତି ସଇଦ୍ ଖାଁର ସମ୍ମୁଖୀନ ହେଲେ । ସଇଦ ଖାଁର ସ୍ତ୍ରୀ ଥିଲେ ଗୁରୁଙ୍କ ବିଶ୍ୱସ୍ତ ଭକ୍ତ ପୀର ବୁଧୁ ସାହାଙ୍କ ଭଗିନୀ । ସଇଦ୍ ଖାଁ ତେଣୁ ସ୍ତ୍ରୀ ମୁଖରୁ ଗୁରୁଙ୍କ ସମ୍ବନ୍ଧରେ ବହୁ ଗଳ୍ପ ଶୁଣିଥିଲେ । ସେ ତେଣୁ ପୂର୍ବେ କେବେ ଭେଟ ନ ହୋଇ ଥିଲେ ମଧ୍ୟ, ବର୍ତ୍ତମାନ ଗୁରୁ ଗୋବିନ୍ଦ ସିଂଙ୍କୁ ସାଙ୍ଗେ ସାଙ୍ଗେ ଚିହ୍ନି ନେଲେ । ତାଙ୍କ ଚିତ୍ତରୁ ସହସା ଯୁଦ୍ଧ-ଭାବ ଉଭେଇ-ଗଲା ଏବଂ ସେ ନିଜ ଘୋଡ଼ାରୁ ଓହ୍ଲାଇ ଗୁରୁଙ୍କ ଘୋଡ଼ାର ପାଦାନ ସ୍ପର୍ଶ କଲେ, ଗୁରୁଙ୍କୁ ଭକ୍ତି ଜଣାଇବା ଲାଗି । ଆଉ ଲଢ଼େଇ ହୋଇ

ପାରିଲେ ନାହିଁ ଏବଂ ସଇଦ୍ ଖାଁ । ରଣକ୍ଷେତ୍ର ତ୍ୟାଗ କରି ଚାଲିଗଲେ । ତା' ପରଠାରୁ, ସଇଦ ଖାଁ ସେନାବାହିନୀ ଛାଡ଼ି ଚାଲିଗଲେ ଏବଂ ଶେଷ ଜୀବନ କଟାଇଲେ ଧ୍ୟାନ-ପ୍ରାର୍ଥନାରେ ।

ହୋସିୟାର୍‌ପୁର ନିକଟସ୍ଥ ବାସ୍‌ସୀ ନାମକ ଏକ ଗ୍ରାମର ଏକ ବ୍ରାହ୍ମଣ ଦିନେ ଆସି ଗୁରୁଙ୍କ ନିକଟରେ ବିଳାପ କଲେ ଯେ, ପଠାଣମାନେ ତା' ସ୍ତ୍ରୀକୁ ନେଇ ପଳାଇଗଲେ ଏବଂ ସେ କପରି ତା' ସ୍ତ୍ରୀକୁ ଫେରି ପାଇବ । ଗୁରୁ ନିଜ ପୁତ୍ର ଅଜିତ୍ ସିଂଙ୍କୁ ୧୦୦ ପାଇକ ନେଇ ସେହି ଅପହୃତା ବ୍ରାହ୍ମଣୀଙ୍କୁ ଉଦ୍ଧାର କରି ଆଣିବା ପାଇଁ ପଠାଇଲେ । ପ୍ରଶଂସନୀୟ କ୍ଷିପ୍ରତା ଓ ସାହସର ସହିତ ତରୁଣ ଅଜିତ୍ ସିଂ ପଠାଣମାନଙ୍କ ଗାଁକୁ ଘେରାଉ କରି, ବ୍ରାହ୍ମଣୀଙ୍କୁ ଉଦ୍ଧାର କରି ଆଣିଲେ ଏବଂ ବିଚାରା ବ୍ରାହ୍ମଣ ଅଜିତ୍ ସିଂଙ୍କୁ ପ୍ରଚୁର କୃତଜ୍ଞତା ଜଣାଇ ନିଜ ଗାଁକୁ ଫେରିଗଲା ।

ତେବେ କିନ୍ତୁ ବିଳାସପୁରର ତରୁଣ ରାଜା ଆଜମେର୍ ଚାନ୍ଦ ଗୁରୁ ବିରୁଦ୍ଧରେ ଶେଷ ରଣରୁ ପଳାୟନ କରି, ଶେଷ ପ୍ରତିହିଂସା ପାଇଁ ନିଜେ ଚାଲିଗଲା ସୁଦୂର ଦାକ୍ଷିଣାତ୍ୟକୁ, ସ୍ୱୟଂ ଆଉରଙ୍ଗଜେବଙ୍କୁ ସାକ୍ଷାତ୍ କରି, ସାହାଯ୍ୟ ଭିକ୍ଷା କରିବାକୁ । ଆଉରଙ୍ଗଜେବ, ଉତ୍ତରଭାରତରେ ଶିଖ୍‌ଧର୍ମର ଓ ଶିଖ୍ ଗୁରୁଙ୍କ ନେତୃତ୍ୱରେ ଶିଖ୍ ସଂପ୍ରଦାୟର କ୍ରମାଭ୍ୟୁଦୟର ଗଳ୍ପ ସବୁ ଶୁଣି ଶୁଣି, ଆଗରୁ କ୍ରୋଧରେ ଥରୁଥିଲେ । ବର୍ତ୍ତମାନ ଆଜମେର ଚାନ୍ଦଙ୍କ ବର୍ଣ୍ଣନା ଓ ସାହାଯ୍ୟ ପ୍ରାର୍ଥନାରେ, ସେ ସଙ୍ଗେ ସଙ୍ଗେ ଲାହୋର ଓ ସିର୍‌ହିନ୍ଦର ମୋଗଲ ସୁବାଦାରମାନଙ୍କୁ ହୁକୁମ୍ ଦେଲେ, ଶିଖ୍‌ମାନଙ୍କ ବିରୁଦ୍ଧରେ ବ୍ୟାପକ ଅଭିଯାନ ଆରମ୍ଭ କରିବାକୁ ଏବଂ ଶିଖ୍-ଗୁରୁଙ୍କୁ ବନ୍ଦୀ କରି ଆଣିବାକୁ । ମୋଗଲ ସୈନ୍ୟମାନଙ୍କ ସହିତ ଏଥର ମଧ୍ୟ ପାର୍ବତ୍ୟ ରାଜାମାନେ ଯୋଗଦେଲେ । ସବୁ ମିଶି, ଆନନ୍ଦପୁର ବିରୁଦ୍ଧରେ, ଏହି ଆକ୍ରମଣ ହୋଇ ଉଠିଲା ବୃହତ୍ତମ ।

ଏହି ସମୟରେ ଆନନ୍ଦପୁର ଦୀପାବଳି ଉତ୍ସବ ପାଳନ କରୁଥିଲା । ଅନେକ ଶିଖ୍ ଏଥିପାଇଁ ଆନନ୍ଦପୁରରେ ଉପସ୍ଥିତ ଥିଲେ । ଏକ ବିରାଟ ମିଳିତ ବାହିନୀ ଆନନ୍ଦପୁର ଆକ୍ରମଣ କରୁଥିବାର ଖବର ଯେତେବେଳେ ପହଞ୍ଚିଲା, ଉତ୍ସବକାରୀମାନେ କିଞ୍ଚିତ୍ ମାତ୍ରାରେ ହେଲେ ଦବି ନ ଯାଇ, ବରଂ ଉତ୍ସାହିତ ହୋଇ ଉଠିଲେ ଯେ, ଗୁରୁ ଓ ଶହୀଦ୍ ହେବାର ଏକ ସୁବର୍ଣ୍ଣ-ସୁଯୋଗ ପୁଣି ଆସି ଦେଖାଦେଲା । ଅନେକଙ୍କୁ ଘରକୁ ଯାଇ ଫେରିବାକୁ

ଅନୁମତି ଦିଆଗଲେ ମଧ୍ୟ, କାଳେ ଗୁରୁଙ୍କ ପାଇଁ ମୁଣ୍ଡ ଦେବାର ସୁବର୍ଣ୍ଣ-ସୁଯୋଗ ହାତରୁ ଖସିଯିବ, ଏହି ଆଶଂକାରେ, ନ ଯାଇ, ସେହିଠି ପଡ଼ି ରହିଲେ ।

ସିର୍‌ହିନ୍ଦ୍‌ର ସୁବାଦାର ଓ୍ୱାଜିର୍ ଖାଁଙ୍କ ଅଧିନାୟକତ୍ୱରେ ଚେପାର-ଠାରେ ମୋଗଲ ବାହିନୀକୁ ଶିଖ୍‌ମାନେ ଭେଟିଲେ । ମୁସଲମାନମାନଙ୍କର ଯୁଦ୍ଧାହ୍ୱାନରେ ଚତୁର୍ଦ୍ଦିଗର ଗିରିମାଳା ପ୍ରତିଧ୍ୱନିତ ହେବାକୁ ଲାଗିଲା । ଏଣେ ଅସ୍ତ୍ର-ଶସ୍ତ୍ର-ସଜ୍ଜିତ ଶିଖ୍‌ମାନଙ୍କୁ ଗୁରୁ ଗୋବିନ୍ଦ ସିଂ ନିଜ-ରଚିତ କବିତା ଶୁଣାଇ ଏହିପରି ଭାବରେ ଉଦ୍‌ବୋଧିତ କଲେ—

"ଯିଏ ହରିଙ୍କ ନାମ ନେବା ସାଥେ ସାଥେ
ଧ୍ୟାନରେ ଯୁଦ୍ଧପାଇଁ ପ୍ରସ୍ତୁତ ରହିଥାଏ
ସେହି ଧନ୍ୟ ।
ଦେହ ଓ ତନୁ ଏ ଜଗତରେ ଅନିତ୍ୟ,
ତେଣୁ ଏ ଦେହକୁ ଅନାସକ୍ତିର ଆବାସ କର,
ସୁବୁଦ୍ଧିର ପ୍ରଦୀପକୁ ସେଠାରେ ପ୍ରଜ୍ୱଳିତ ରଖ,
ଈଶ୍ୱର-ଭକ୍ତିର ସମାର୍ଜନୀ ହାତକୁ ନେଇ,
ଭୀରୁତାରୂପକ ମଇଳାକୁ ହୃଦୟରୁ ସମ୍ପୂର୍ଣ୍ଣ ରୂପେ
ନିକାଇ ଦିଅ ।"

ଶିଖ୍‌ମାନଙ୍କ ମଧ୍ୟରେ ଅସୀମ ଉତ୍ତେଜନା ଦେଖା ଦେଇଥିଲା । ସେମାନଙ୍କ ଭିତରୁ ଅନେକେ ଆମରଣ ଯୁଦ୍ଧର ପ୍ରତୀକ ରୂପେ ଜାଫରାନ ରଙ୍ଗର ପୋଷାକ ପରିଧାନ କରି ରଣଭୂମି ପାଇଁ ପ୍ରସ୍ତୁତ ହେଲେ । ସେମାନେ କୁହାକୋହି ହେଲେ—'ଏ ଜୀବନ ଗୁରୁଦେବ ପାଇଁ । ତା'ଠୁ ବେଶୀ ତ ଏଠି ରହି ପାରିବାନି ? ତେବେ ଗଳାବେଳକୁ ଶହୀଦ୍‌ର ତିଳକ ମୁଣ୍ଡରେ ମାରି ନ ଯିବା କାହିଁକି ?'

ଶିଖ୍‌ମାନେ ପର୍ବତ ଉପରେ ଦୁର୍ଗମାନଙ୍କରେ ଅବସ୍ଥାପିତ ଥିଲେ । ରାଜା-ମୋଗଲ-ବାହିନୀ ଉପତ୍ୟକାରୁ ପାହାଡ଼କୁ ଉଠି ଦୁର୍ଗ ନିକଟକୁ ଆସିବା ପୂର୍ବରୁ ଶିଖ୍‌ମାନେ ଆକସ୍ମିକଭାବରେ କମାଣ ଚଳାଇ, ଶତ୍ରୁମାନଙ୍କୁ ପୋଡ଼ିବାକୁ ଲାଗିଲେ । ଏହା ପଛେ ପଛେ ଶିଖମାନଙ୍କର ଅଶ୍ୱାରୋହୀ ସୈନ୍ୟ ଶତ୍ରୁମାନଙ୍କ

ଭିତରକୁ ମାଡ଼ି ଚାଲିଲେ ଏବଂ ଦୁର୍ଗ ପ୍ରାଚୀର ପଛରୁ ବନ୍ଧୁକଧାରୀ ପାଇକମାନେ ଅଗ୍ନିବର୍ଷଣ କଲେ । ମିଳିତ ବାହିନୀ ଏପ୍ରକାର ଯୋଜନାକୃତ ଯୁଗପତ୍ ଆକ୍ରମଣ ଓ ପ୍ରତିରକ୍ଷା ଶିଖମାନଙ୍କ ଠାରୁ ଆଦୌ ଆଶା କରି ନ ଥିଲେ । ଉଦେ ସିଂ ଓ ଦୟା ସିଂ ନାମକ ଦୁଇ ଶିଖ୍-ସେନାପତି ବର୍ତ୍ତମାନ ନିର୍ଭୀକ ଚିତ୍ତରେ ଶତ୍ରୁମାନଙ୍କ ଭିତରକୁ ପଶିଯାଇ, ଶତ୍ରୁପକ୍ଷରେ ମୃତ୍ୟୁ ବର୍ଷଣ କରି ଲାଗିଲେ । ମୋଗଲ ସେନାନାୟକମାନେ ପ୍ରଥମେ ଶିଖ୍ମାନଙ୍କର କ୍ଷିପ୍ରଗତି ଓ ବ୍ୟବସ୍ଥାରେ ସ୍ତମ୍ଭୀଭୂତ ହୋଇ ଯାଇଥିଲେହେଁ, ଅବସ୍ଥାକୁ ଓଲଟେଇବା ପାଇଁ ପ୍ରାଣମୂର୍ଚ୍ଛା ଭାବରେ ଗୋଲନ୍ଦାଜ ଓ ପଦାତିକମାନଙ୍କୁ କୌଣସିମତେ ଦୁର୍ଗ ପ୍ରାଚୀର ଭାଙ୍ଗି ପଶିବାକୁ ଆଦେଶ ଦେଲେ । ଘନଘଣ୍ଟା ଧରି ଦୁଇପକ୍ଷର ପଦାତିକ ଓ ଅଶ୍ୱାରୋହୀ ମରଣ-ବନ୍ଧନରେ ଛନ୍ଦାଛନ୍ଦି ରହି, କେହି କାହାକୁ ଇଞ୍ଚେ ଜାଗା ଛାଡ଼ିଦେଲେ ନାହିଁ । ସୂର୍ଯ୍ୟାସ୍ତ ବେଳକୁ ଯୁଦ୍ଧବିରତି ହୁଅନ୍ତେ ଦେଖାଗଲା ଯେ ମୋଗଲମାନେ ହିଁ ୯୦୦ ସୈନିକ ହରାଇଛନ୍ତି ଏବଂ ରାଜାମାନେ ଯାହାଁକୁ 'ପଞ୍ଚାଏ ଗୁଣ୍ଡା' ମାତ୍ର ବୋଲି ବର୍ଣ୍ଣନା କରିଥିଲେ, ସେମାନେ ଏପରି ସାହସ ଓ ବୀରତ୍ୱର ସହିତ ଯୁଦ୍ଧ କିପରି ଚଳାଇଲେ, ତାହା ଦେଖି ମଧ୍ୟ ବିଶ୍ୱାସ କରିପାରିଲେ ନାହିଁ ।

ଦ୍ୱିତୀୟ ଦିନର ଯୁଦ୍ଧ ପୂର୍ବଦିନ ପରି ଭୀଷଣ ହେଲା । ଉଭୟପକ୍ଷର ହତାହତ ସଂଖ୍ୟା ମଧ୍ୟ କମ୍ ନ ଥିଲା । କିନ୍ତୁ ତଥାପି ଯୁଦ୍ଧ ଅମୀମାଂସିତ ରହିଲା, ଶତ୍ରୁର ପ୍ରତ୍ୟେକଟି ଆକ୍ରମଣକୁ ଶିଖ୍ମାନେ ଫୋପାଡ଼ି ଦେଇଥିଲେ । ଏହି ଯୁଦ୍ଧରେ ଗୁରୁ ଓ ତାଙ୍କ ପୁତ୍ର ଅଜିତ୍ ସିଂ ମଧ୍ୟ ବ୍ୟକ୍ତିଗତ ଭାବରେ ଯୋଗ ଦେଇଥିଲେ । କିଶୋର ଅଜିତ୍ ସିଂହଙ୍କର ସାହସ, ଶତ୍ରୁ ଓ ମିତ୍ର ଉଭୟଙ୍କର ପ୍ରଶଂସା ଆକର୍ଷଣ କରିଥିଲା ।

ସେହିଦିନର ଯୁଦ୍ଧ ବିରତି ପରେ ଜଣେ ଶିଖ୍-ସୈନିକ ଗୁରୁଙ୍କ ଆଗରେ ଆପତ୍ତି କଲା ଯେ, ସେ ଦେଖିଛି, କାହ୍ନାୟା ନାମକ ଶିଖ୍, ଆହତ ଶିଖ୍ମାନଙ୍କ ସହିତ, ଆହତ ମୋଗଲମାନଙ୍କୁ ମଧ୍ୟ ରଣଭୂଇଁରେ ଜଳଦାନ କରୁଥିଲା । ଗୁରୁ, କାହ୍ନାୟାକୁ ପଚାରିଲେ । କାହ୍ନାୟା ଉତ୍ତର କଲା— "ଗୁରୁଜୀ, ଏହା ସତ୍ୟ । କିନ୍ତୁ ମୁଁ କୌଣସି ଶିଖ୍ ବା କୌଣସି ମୋଗଲର ଉପକାର କରୁ ନ ଥିଲି । ମୁଁ ପ୍ରତ୍ୟେକ ଆହତ ସୈନିକ ମୁଖରେ ଗୁରୁଙ୍କ ମୁଖହିଁ ଦେଖୁଥିଲି ।"

ଗୁରୁ କହିଲେ ଯେ କାହାପାଇଁ ତାଙ୍କର ଧର୍ମଶିକ୍ଷାର ପ୍ରକୃତ ତାତ୍ପର୍ଯ୍ୟ ଧରି ପାରିଛ ।

ମୋଗଲମାନେ ଦେଖିଲେ ଯେ ସମ୍ମୁଖଯୁଦ୍ଧରେ ଶିଖମାନଙ୍କୁ ଜିଣିବାର ଆଶା ବୃଥା । ସେମାନେ ତେଣୁ ଠିକ୍ କଲେ ଆନନ୍ଦପୁରକୁ ଘେରିପକାଇ ଅବରୋଧ କରି ତାକୁ ଏପରି ବିଚ୍ଛିନ୍ନ କରିଦେବେ ଯେ ଦୁର୍ଗବାସୀ ଶିଖମାନେ, ଅନାହାରରେ, ବାଧ୍ୟହୋଇ ପରାଜୟ ସ୍ୱୀକାର କରିବେ । ଏହି ଯୋଜନା ଯଥୋଚିତ କଠୋରତାର ସହିତ ସମ୍ପନ୍ନ ହୋଇଥିଲା । ଆନନ୍ଦପୁର ଓ ସମୀପବର୍ତ୍ତୀ ପ୍ରତ୍ୟେକ ଦୁର୍ଗକୁ ଯିବାର ଓ ଆସିବାର ବାଟ ସମ୍ପୂର୍ଣ୍ଣ ଅବରୁଦ୍ଧ ହୋଇଗଲା । ଶିଖମାନେ ଯେତିକି ସମୟ ଓ ସୁବିଧା ପାଇଲେ, ସେଥିରେ ସେମାନେ ଦୁର୍ଗଗୁଡ଼ିକୁ ଦୃଢ଼ତର କଲେ ଏବଂ ଖାଦ୍ୟପଦାର୍ଥ ଅଧିକତର ପରିମାଣରେ ସଂଗ୍ରହ କରି ରଖିଲେ । ଗୁରୁଜୀ ସୈନ୍ୟମାନଙ୍କୁ ପାଞ୍ଚଟି ବିଭାଗରେ ସଜାଡ଼ି ପାଞ୍ଚ ଦୁର୍ଗରେ ମୁତୟନ ରଖିଲେ । ନିଜ ପୁଅ ଅଜିତ ସିଂଙ୍କ ତଳେ ୫୦୦ ସୈନ୍ୟ ରଖି ତାଙ୍କୁ କେଶଗଡ଼ର ଦାୟିତ୍ୱରେ ରଖିଲେ । ସେହି ସଂଖ୍ୟକ ସୈନ୍ୟ ଦେଇ ଲୋହଗଡ଼କୁ ରଖାଗଲା, ସେର ସିଂ ଓ ନାହାର ସିଂଙ୍କ ଦାୟିତ୍ୱରେ । ଆଗାମପୁର ଓ ତାର ଆଖ-ପାଖର ଦାୟିତ୍ୱ ନେଲେ ଆଲମ ସିଂ ଓ ଉଦେ ସିଂ । ମରଣ-ମନ୍ତ୍ର-ଦୀକ୍ଷିତ ପଞ୍ଚପ୍ରିୟ ବୀରଙ୍କ ଭିତରୁ ଜଣେ, ମୋଖାମ୍ ସିଂ, ହୋଲ୍‌ଗଡ଼ର ଭାର ନେଲେ । ଗୁରୁଜୀ ସ୍ୱୟଂ ଆନନ୍ଦପୁର ଜଗି ରହିଲେ । ଶିଖମାନଙ୍କୁ ସବୁବେଳେ ଯେକୌଣସି ଆକସ୍ମିକ ଆକ୍ରମଣ ପ୍ରତି ଜାଗ୍ରତ ରହିବା ପାଇଁ ନିର୍ଦ୍ଦେଶ ଦିଆଗଲା ।

କିନ୍ତୁ ମୋଗଲ ସେନାପତି ଅବରୋଧର ବୃତ୍ତକୁ କ୍ରମେ ଗଡ଼ମାନଙ୍କର ନିକଟକୁ ଘୁଞ୍ଚାଇ ଘୁଞ୍ଚାଇ ଆଣିଲେ ଏବଂ କ୍ରମେ ତାହାର ପ୍ରଭାବ ଗଡ଼ ଭିତରେ ପଡ଼ିଲା । ଆସ୍ତେ ଆସ୍ତେ ସଞ୍ଚିତ ଖାଦ୍ୟଦ୍ରବ୍ୟ କମି ଆସିଲା । ସୈନ୍ୟମାନେ ଖାଇବେ କ'ଣ ? ସାଧାରଣ ଅସାମରିକ ସ୍ତ୍ରୀ ପୁରୁଷ, ପିଲା ବା ଖାଇବେ କ'ଣ ? ଶସ୍ୟ ହୋଇ ପଡ଼ିଲା ଟଙ୍କାକୁ ସେରେ ମାତ୍ର, ତାହା ପୁଣି ଟଙ୍କା ଯାଚିଲେ ବି ମିଳିଲାନି । ଶିଖମାନେ ମଝିରେ ମଝିରେ ଅବରୋଧୀ ମୋଗଲ ସୈନ୍ୟମାନଙ୍କୁ ଆକ୍ରମଣ କରି ଖାଦ୍ୟଦ୍ରବ୍ୟ କିଛି କିଛି ମାରି ନେଉଥିଲେ । କିନ୍ତୁ କଠୋର ପହରା ଫଳରେ ତା' ଆଉ ସମ୍ଭବ ହେଲା ନାହିଁ ଏବଂ ଶିଖମାନେ ସେଥିପାଇଁ ପ୍ରତିଥର ହତାହତର ଯେଉଁ ମୂଲ୍ୟ

ଦେଲେ, ସେ ବଗୃରରୁ ମଧ୍ୟ ସେ ପନ୍ଥା ପରିତ୍ୟାଗ କରିଗଲା । ଆନନ୍ଦପୁରର ଜଳ ସରବରାହ ନିର୍ଭର କରୁଥିଲା ଏକ ଗିରି ସ୍ରୋତ ଉପରେ । ଆଜମେର୍ ଗୃନ୍ଦର ଲୋକେ ତାହା ଜାଣିଥିଲେ । ସେମାନେ ସ୍ରୋତକୁ ଅନ୍ୟଆଡ଼େ କାଟିନେଲେ । ଏହି ଘଟଣାଟିହିଁ ଅବରୁଦ୍ଧ ଶିଖ୍‌ମାନଙ୍କର ଅବସ୍ଥାକୁ ବିଶେଷ ଭାବରେ ଶୋଚନୀୟ କରି ପକାଇଲା । ଜଣେ ସମସାମୟିକ କବି ଏହି ଅବସ୍ଥା ବର୍ଣ୍ଣନା କରି କହିଛନ୍ତି—"ଦି'ଜଣ ଶିଖ୍ ଜଳ ଆଣିବାକୁ ଗଲେ, ତାଙ୍କ ସାଥିରେ ଆଉ ଦି' ଜଣ ଯାଉଥିଲେ ଲଢ଼େଇରେ ପ୍ରାଣ ଦେଇ ତାହା ସମ୍ଭବ କରିବାକୁ ।"

ଅବରୋଧ ଯେତକ ଅଧିକ କାଳ ଗୃଲିଲା, ଅବରୁଦ୍ଧ ଦୁର୍ଗମାନଙ୍କର ଅବସ୍ଥା ସେତକ ଶୋଚନୀୟ ହୋଇ ଉଠିଲା । ଖାଦ୍ୟାଭାବ ଏପରି ଅବସ୍ଥାରେ ପହଁଚିଲା ଯେ, ଗଛର ବକଳ ସବୁ ଗୁଁଣ୍ଡି, ଓ ଶୁଖେଇ ଓ ଚୂନି, ତାକୁଇ ରୋଟି କରି ଲୋକେ ଖାଇବାକୁ ବାଧ୍ୟ ହେଲେ । ଅନେକ ଶିଖ୍ ଗଛର ପତ୍ର ବା ଫୁଲ ଯାହା ହେଉଥିଲା, ତାକୁଇ ଖାଇ ବଁଞ୍ଚିଲେ । ତଥାପି ସେମାନେ ଅଟଳ ରହି ଦୁର୍ଗରକ୍ଷା କରି ଗୃଲିଲେ । କିନ୍ତୁ ଦିନକୁଦିନ ଅବସ୍ଥା ଯେତେବେଳେ ଖରାପ ହୋଇ ଗୃଲିଲା କେତେକ ଶିଖ୍ ବର୍ତ୍ତମାନ ଗୁରୁଜୀଙ୍କୁ ଦୁର୍ଗତ୍ୟାଗ କରିବା ପାଇଁ ସଂକେତ ଦେଲେ । ରୁଚିର ଅନୁକୂଳ ନ ଥିବାରୁ, ଗୁରୁ ଏ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କଲେ । କିନ୍ତୁ କେତେକ ଶିଖ୍ ଦୋଳାୟିତ-ବିଶ୍ୱାସ ରହିଲେ ଏବଂ ପରିତ୍ୟାଗର କଥା ବାରମ୍ବାର କହିଲେ । ଗୁରୁ ସେମାନଙ୍କୁ କହିଲେ, ଯେଉଁମାନେ ଗୁରୁଙ୍କୁ ପ୍ରତ୍ୟାଖ୍ୟାନ କରିବାକୁ ପ୍ରସ୍ତୁତ, ସେହିମାନେ ଚୃଲି ଯାଇ ପାରନ୍ତି । ଏପରି କେତେକ ମଧ୍ୟ ପ୍ରକୃତରେ ଗୁରୁଙ୍କୁ ପ୍ରତ୍ୟାଖ୍ୟାନ କରିଦେବା ଲେଖିଦେଲେ ଏବଂ ଦୁର୍ଗ ତ୍ୟାଗ କରି ଗୃଲିଗଲେ ।

ଇତିମଧ୍ୟରେ, ଅବରୋଧକାରୀ ମୋଗଲ ସେନାପତି ଓ ମୋଗଲ ସମ୍ରାଟଙ୍କଠାରୁ ମଧ୍ୟ ପ୍ରସ୍ତାବ ଆସିଲା ଯେ, ଯଦି ଗୁରୁ ଆନନ୍ଦପୁର ପରିତ୍ୟାଗ କରିବାକୁ ସ୍ଥିର କରନ୍ତି; ତେବେ ସେନା ଓ ଅବରୋଧ ଉଠାଇ ନିଆଯିବ । ମନ୍ତ୍ରୀମାନେ ଧର୍ମପୁସ୍ତକ ଧରି ଶପଥ ନେଲେ ଯେ ଦୁର୍ଗତ୍ୟାଗ କଲାବେଳେ, ଗୁରୁ ବା ତାଙ୍କ ଅନୁଚରମାନଙ୍କ ପ୍ରତି କୌଣସି ଅନିଷ୍ଟ କରାଯିବ ନାହିଁ । କାରଣ, ଗୁରୁଙ୍କର ଆଶଙ୍କା ଥିଲା ଯେ, ପ୍ରସ୍ତାବ ହୁଏତ ଦୁରଭିସନ୍ଧିମୂଳକ

ଆଇପାରେ । ପରେ ଆମେ ଦେଖିବା ଯେ, ଗୁରୁଙ୍କ ଆଶଙ୍କା ଏକାବେଳକେ ସତ୍ୟ ଥିଲା । କିନ୍ତୁ ସେ ଯାହାହେଉ, ଖାଦ୍ୟ ପାନୀୟ ଅଭାବରୁ ଶିଖ୍‌ମାନଙ୍କର ଅବସ୍ଥା ଯାହା, ସେଥିରେ ଆନନ୍ଦପୁର ଦୁର୍ଗକୁ ଆଉ ରକ୍ଷା କରିବା ଅସମ୍ଭବ ହେଲାଣି । ତେଣୁ ଗୁରୁ ବର୍ତ୍ତମାନ ବାଧ୍ୟହୋଇ ପରିତ୍ୟାଗ ପାଇଁ ସ୍ୱୀକୃତ ଦେଲେ । ୧୭୦୪ ଖ୍ରୀ.ଅ:ର ଶେଷ ଆଡ଼କୁ ସେ ଆନନ୍ଦପୁର ପରିତ୍ୟାଗ କଲେ । ଆଗେ ତାଙ୍କର ଜନନୀ ଓ ପତ୍ନୀମାନେ, ତାଙ୍କର ଦୁଇ ସାନ ପୁଅ ଏବଂ ଯେଉଁମାନେ କୌଣସି କର୍ମପାଇଁ ଆଉ ଉପଯୁକ୍ତ ହୋଇ ନ ଥିଲେ ସେହିମାନେ ଚାଲିଗଲେ । ଗୁରୁ ନିଜେ ଦୁର୍ଗତ୍ୟାଗ ପାଇଁ ଅଶ୍ୱା - ରୋହଣ କଲା ପୂର୍ବରୁ ପିତାଙ୍କ ମନ୍ଦିରକୁ ଯାଇ ପ୍ରାର୍ଥନା କରି, ଆନନ୍ଦପୁରକୁ ଉଦାସୀ ସଂପ୍ରଦାୟର ଗୁରୁବକ୍‌ସ୍ ସିଂ ନାମକ ଏକ ଶିଖ୍‌ଙ୍କ ଦାୟିତ୍ୱରେ ଛାଡ଼ି ଆସିଲେ । ଗୁରୁ ଓ ଦୟାସିଂ ଏକତ୍ର ଅଶ୍ୱାରୋହଣ କରି ଦୁର୍ଗ ତ୍ୟାଗ କଲେ । ସେମାନଙ୍କ ଆଗେ ଆଗେ ଚାଲିଲେ ଆଲମ ସିଂ ଓ ଉଦେ ସିଂ । ପ୍ରଥମେ-ଦୀକ୍ଷିତ ପଂଚ ଶିଖ୍‌ମାନଙ୍କ ଭିତରୁ ମୋଖାମ୍ ସିଂ ଥିଲେ ତାଙ୍କର ଦକ୍ଷିଣ ପଟେ ଏବଂ ବାମ ପଟେ ରହିଥିଲେ ଦ୍ୱିତୀୟ ଦଫାରେ ଦୀକ୍ଷିତ ପଂଚ ଶିଖ୍ । ତାଙ୍କର ଦୁଇ ବଡ଼ ପୁଅ ଓ ହିମ୍ମତ ସିଂ ଚାଲିଲେ ତାଂଙ୍କ ପଛରେ । ସମସ୍ତଙ୍କ ପଛେ ଚାଲିଲେ ପାଂଚ ଶତ ଶିଖ୍ ଯୋଦ୍ଧା ।

---

# ଦଶମ ଅଧ୍ୟାୟ

## ଗୁରୁ ବାଉର୍ ଓ ସିରହିନ୍ଦ୍‌ର ଶହୀଦ୍ ।

ଆନନ୍ଦପୁର ଦୁର୍ଗର ଉଚ୍ଚପ୍ରାଚୀର, ରାତିର ଅନ୍ଧକାରରେ ଗ୍ରସ୍ତାଙ୍କର ପରିଣତ ହୋଇ ଯାଇଥିଲା । ଗୁରୁଜୀ ସେହି ଗ୍ରସ୍ତ ଆଡ଼କୁ ଶେଷ ଦୃଷ୍ଟି ନିକ୍ଷେପ କରି, ପଞ୍ଜାବର ସମତଳ ପ୍ରଦେଶ ଆଡ଼କୁ ଅଶ୍ୱଚାଳନା କଲେ । ତାଙ୍କର ମଧ୍ୟ-ଜୀବନର ସମସ୍ତ ତିରିଶି ବର୍ଷ ସେ ଏହି ଆନନ୍ଦପୁରରେହିଁ କଟାଇ ଦେଇଥିଲେ । ତେଣୁ ବିଦାୟ ଯେ ଅନୁଶୋଚନା ଦାରୁ ଉଷ୍ମ ହୋଇ ଉଠିଥିବ, ଏଥିରେ ସଂଦେହ ନାହିଁ । ଏଇଠି ପିତା ତେଗ୍ ବାହାଦୂରଙ୍କ ସ୍ନେହାଦରରେ ତାଙ୍କର ବାଲ୍ୟକାଳ କଟିଥିଲା ଏବଂ ଏଇଠି ସେ ପିତାଙ୍କର ଗୁରୁ ଉତ୍ତରାଧିକାର ନିଜର କିଶୋର ସ୍କନ୍ଧକୁ ନେଇ, କ୍ରମବର୍ଦ୍ଧମାନ ଏକ ବିଶ୍ୱସ୍ତ ଶିଖମଣ୍ଡଳୀକୁ ନାନକ-ପ୍ରଦର୍ଶିତ ମାର୍ଗରେ ଆଧ୍ୟାତ୍ମିକତାର ନାୟକତ୍ୱ ଦେଇ ଆସିଥିଲେ । ଏଇଠି ସେ ପ୍ରହର ପ୍ରହର ଧ୍ୟାନମଗ୍ନ ରହୁଥିଲେ । ଶିଖ୍ ମାନଙ୍କ ସହିତ ବିନୋଦନରତ ହେଉଥିଲେ । ଉପତ୍ୟକା ଓ ଅଧିତ୍ୟକା ସହିତ ଏକୀଭୂତ ହୋଇ ସମରାଭ୍ୟାସ କରୁଥିଲେ । ପ୍ରସିଦ୍ଧ ଯୋଦ୍ଧାମାନଙ୍କ ସହିତ ଲଢିଥିଲେ ଏବଂ କେତେ ନା କେତେ କାବ୍ୟ-କବିତା ମଧ୍ୟ ଲେଖିଥିଲେ । ଏହି ଆନନ୍ଦପୁରରେ ତାଙ୍କର କେତେ ସ୍ୱପ୍ନ ବାସ୍ତବ ହୋଇ ଉଠିଥିଲା । ଏଇଠି ସେ ଶିଖ୍ ମାନଙ୍କର ଭାବପ୍ରବଣତାକୁ ଏପରି ସ୍ପର୍ଶ କଲେ ଯାହା ସେହି ଗୋଷ୍ଠୀକୁ ଦେଇପାରିଥିଲା ଏକ ନୂତନ ଜନ୍ମ ଓ ଜୀବନ । ଇତିହାସର କି ଏକ ରହସ୍ୟମୟ ପେଞ୍ଚ ଫଳରେ ଗୁରୁଜୀଙ୍କୁ ଆଜି ସେହି ପ୍ରିୟ ସ୍ଥାନ ଛାଡିବାକୁ ହେଉଛି । ଜୀବନରେ ସେ ଆଉ ସେଠାକୁ ଫେରିବେ ନାହିଁ । କିନ୍ତୁ ଈଶ୍ୱର-ନିର୍ଭର ଗୁରୁଜୀ ଭାବୁଥିଲେ ଏହି ବିପତ୍ତି ମଧ୍ୟ ବିଧାତାର କୌଣସି ମହତ୍ତ୍ୱ ଲକ୍ଷ୍ୟ ସାଧନ ପାଇଁ ।

ଏବଂ ଗୁରୁଜୀଙ୍କ ଆଶଙ୍କାମତେ, ତାଙ୍କ ଦଳ ଅଳ୍ପଦୂର ଯାଇଛନ୍ତି କି ନାହିଁ, ଯେଉଁମାନେ ନିଜ ଧର୍ମଶାସ୍ତ୍ର ଛୁଇଁ ନିରାପଦ ଯିବାର ପ୍ରତିଶ୍ରୁତି ଦେଇଥିଲେ, ସେମାନେ ବର୍ତ୍ତମାନ ଅତର୍କିତ ଆକ୍ରମଣ ଆରମ୍ଭ କରିଦେଲେ । ପଛଦଳର ନାୟକ ଅଜିତ ସିଂ ସେମାନଙ୍କ ସହିତ ଲଢ଼ି ଲଢ଼ି ଚାଲିଲେ ।

କିଛି ସମୟ ପରେ ବହୁ-ଯୁଦ୍ଧର-ଗୌରବ ମଣ୍ଡିତ ବୀରପୁରୁଷ ଉଦେ ସିଂ, ଗୁରୁଙ୍କ ଚରଣ ପ୍ରଣାମ କରି ନାୟକତ୍ୱର ଗୁରୁ ଦାୟିତ୍ୱ ନେଇ ଯାଇ ଆକ୍ରମଣକାରୀଙ୍କୁ ସମ୍ମୁଖଯୁଦ୍ଧ ଦେବାକୁ ଠିଆ ହେଲେ । କିନ୍ତୁ ଦୁଃଖର ବିଷୟ ଏହି ଯେ, ଶତ୍ରୁର ବିପୁଳ ସଂଖ୍ୟାଗରିଷ୍ଠତା ସତ୍ତ୍ୱେ ଉଦେ ସିଂ ଆକ୍ରମଣକୁ ପ୍ରତିହତ କରି ପାରିଲେ ମଧ୍ୟ, ସେହି ଚେଷ୍ଟାରେ ପ୍ରାଣ ହରାଇଲେ । ସେତେବେଳକୁ ଗୁରୁଜୀ ଓ ତାଙ୍କର ଅନୁଚରବୃନ୍ଦ ସାର୍ସା ନାମକ ଏକ ନଦୀ ତୀରରେ ପହଞ୍ଚି ଗଲେଣି । ନଦୀଟି ସେତେବେଳେ କିନ୍ତୁ, ଶୀତକାଳୀନ ବୃଷ୍ଟି ଫଳରେ ବନ୍ୟାକ୍ରାନ୍ତ ହୋଇ ପଡିଥିଲା । ଆକ୍ରମଣକାରୀମାନେ ପଛରେ ମାଡ଼ି ଆସୁଛନ୍ତି । ସେମାନଙ୍କଠାରୁ ରକ୍ଷାର ଏକମାତ୍ର ଉପାୟ ରୂପେ ଗୁରୁ ଓ ତାଂକର ସହଚରମାନେ ସେହି ବନ୍ୟା-ଭୀଷଣା ଗିରିନଦୀକୁ ପାର ହେବାକୁ ଡେଇଁ ପଡ଼ିଲେ । ସେତେବେଳେ ଶୀତକାଳ, ପୁଣି ପଞ୍ଜାବର ଶୀତକାଳ । ବିନିଶାପୁରେ ଅନ୍ଧକାର ରାତି । ଏଣେ ପ୍ରାଣଘାତୀ ଶୀତ ପବନକୁ, ତେଣେ, ହିମଶୀତଳ ନଦୀ ଜଳ । ଏହି ଦୁଃସାହସିକ ପଦକ୍ଷେପ ପୁଂଜୀଭୂତ ଦୁର୍ବିପାକ ରୂପେ ଦେଖାଦେଲା । ଘୋର ଶୀତଳ ଓ ପ୍ରଖର ସ୍ରୋତରେ ପଶିଗଲା-ମାତ୍ରେ, ଅନ୍ଧକାରରେ ଆରପଟ-ଦିଶୁ-ନଥିବା ହେତୁ ଗୁରୁଜୀଙ୍କ ସମଗ୍ର ଦଳ ଯତ୍ରତତ୍ର ମାଡ଼ ଚାଲି ଛିନ୍ନଭିନ୍ନ ହୋଇ ପଡ଼ିଲେ । କେତେକ ସେହି ଶୀତଳ ସ୍ରୋତରେହିଁ ମୃତ୍ୟୁକୁ ଭେଟିଲେ । ଯିଏ ବା ନଦୀର ଆରପଟକୁ ଉଠିଲେ, ସେମାନେ ଅନ୍ଧାର ରାତିରେ ପରସ୍ପରଠାରୁ ଭିନ୍ନ ହୋଇ ଯିଏ ଯୁଆଡ଼େ ଲକ୍ଷ୍ୟହୀନ ହୋଇ ପଳେଇ ଚାଲିଲେ । ଗୁରୁଙ୍କ ଦୁଇ ସାନ ପୁଅ ଜୋରାୱାର ସିଂ ଓ ଫତେ ସିଂକୁ ଧରି, ଗୁରୁଙ୍କ ଜନନୀ ମାତା ଗୁଜରୀ, ଭାଗ୍ୟକ୍ରମେ ଗାଙ୍ଗୁ ନାମକ ଗୋଟିଏ ପୁରାତନ ଭୃତ୍ୟକୁ ଭେଟିଲେ ସେହି ବିଭୀଷିକାମୟ ରାତିରେ । ସେହି ବିଶ୍ୱସ୍ତ ଭୃତ୍ୟଟି ସେମାନଙ୍କୁ ନିଜ ଗାଁ ଓ ଘରକୁ ନେଇ-ଗଲା । ସେହିପରି, ଦିଲ୍ଲୀର ଏକ ବିଶ୍ୱସ୍ତ ଶିଖ୍, ଗୁରୁଙ୍କ ପତ୍ନୀମାନଙ୍କୁ ଏକ ନିରାପଦ ସ୍ଥାନକୁ ନେଇଗଲା । ଦୁଇ ପୁଅ ଜୁଝାର ସିଂ ଓ ଅଜିତ ସିଂ ସହିତ, ଗୁରୁଙ୍କ ଜୀବିତ ଅନୁଚରଙ୍କ ସଂଖ୍ୟା ରହିଲା ମାତ୍ର ୪୦ରେ ।

କିନ୍ତୁ ଏଥିରେ ମଧ୍ୟ ଗୁରୁଙ୍କ ବିପଦ ଶେଷ ହେଲା ନାହିଁ । ଆନନ୍ଦ-ପୁରର ପଶ୍ଚାଦ୍ଧାବକମାନଙ୍କ ସହିତ, ଦିଲ୍ଲୀରୁ ନବାଗତ ସୈନ୍ୟ ମିଶିଲେ ଏବଂ ଏହି ବର୍ଦ୍ଧିତ ବାହିନୀ, ନଦୀ ପାର ହୋଇ ଗୁରୁଙ୍କର କ୍ଷୀୟମାଣ ଶକ୍ତିକୁ ଚିରକାଳ ପାଇଁ ନିଷ୍ପେଷିତ କରିବାକୁ ଚାରିଆଡ଼ୁ ବେଢ଼ି ଆସିଲେ । ଗୁରୁ

ବାଧ ହୋଇ ଗୁଁ କୁଆର ନାମକ ଗ୍ରାମରେ ଏକ ବିଶ୍ୱସ୍ତ ଶିଖ୍‌ର କଚାଘରେ ଆଶ୍ରୟ ନେଇ ସେହିଠାରେହିଁ ଭାଗ୍ୟକୁ ଭେଟିବା ପାଇଁ ଦମ୍ଭ ଧରି ରହିଲେ । ତାଙ୍କର ସାମାନ୍ୟ ଅନୁଚରଙ୍କୁ ସେ ଗୃରିଟି ଭାଗରେ ବିଭକ୍ତ କରି ସେହି ଘରର ଗୃରିପଟେ ଜଗାଇ ରଖିଲେ । ଆଲମ ସିଂ ଓ ମାନ୍ ସିଂ ଦ୍ୱାରରକ୍ଷୀ ରୂପେ ଜଗି ରହିଲେ । ଗୁରୁ ଓ ତାଙ୍କ ଦୁଇ ପୁଅ, ପୁଣି ଦୟା ସିଂ ଓ ଶାନ୍ତ ସିଂ ସେହି ଘରର ଉପର ମହଲାରୁ ଶତ୍ରୁକୁ ଅପେକ୍ଷା କରି ରହିଲେ ।

ପ୍ରାବୃଟାକାଶରେ କୃଷ୍ଣ ମେଘଜାଳ ଭଳି ଆସିଲା ପରି ଆକ୍ରମଣକାରୀମାନେ ଗୁରୁଙ୍କ ଗୃରିପଟୁ ମାଡ଼ି ଆସିଲେ । ମୋଗଲ୍ ସୈନ୍ୟମାନଙ୍କ ସହିତ, ସ୍ଥାନୀୟ ରାଙ୍ଗାର ଓ ଗୁଜାରମାନେ ମଧ୍ୟ ଯୋଗ ଦେଲେ । ସେମାନେ ଗୁରୁଙ୍କର ଉଦାର ସଂସ୍କାରଶୀଳତା ଯୋଗୁହିଁ ତାଙ୍କର ଶତ୍ରୁ ହୋଇ ଉଠିଥିଲେ । କିନ୍ତୁ ତା ସତ୍ତ୍ୱେ ବର୍ତ୍ତମାନ ସମଗ୍ର ମାନବେତିହାସରେ ଏକ ଅଶ୍ରୁତପୂର୍ବ, ବିସ୍ମୟକର ବୀରତ୍ୱର ମହାକାବ୍ୟର ରଚନା ଆରମ୍ଭ ହୋଇଗଲା । ଏକ ପକ୍ଷରେ ସହାୟ-ସମ୍ବଳହୀନ, ଗୃହଚ୍ୟୁତ ଓ ପଥହରା, ମାତ୍ର ଚାଳିଶଟି ସୈନ୍ୟ ଏବଂ ଅପର ପକ୍ଷରେ ସୁସଜ୍ଜିତ, ସକଳସୁବିଧାପ୍ରାପ୍ତ ଅଗଣିତ ବିଷ୍ଟାୟ ସୈନିକ । ଏ ଯୁଦ୍ଧ ନୁହେଁ, କେବଳ ବିଶୁଦ୍ଧ ମାନବିକ ଶୌର୍ଯ୍ୟର ପରମଗୌରବଗାଥା, ମହାଗ୍ରନ୍ଥ ଓ ମହାନାଟକ ।

ବର୍ତ୍ତମାନ ନିର୍ଣ୍ଣିତ ମରଣକୁ ଭେଟିବା ପାଇଁ ହିଁ ପାଞ୍ଚ ପାଞ୍ଚ ଜଣ ହୋଇ ଶିଖ୍‌ମାନେ ଉତ୍ସାହର ସହିତ ବିରାଟ ମୋଗଲବାହିନୀର ସମ୍ମୁଖୀନ ହେଲେ । ଜଣେ ହେଲେ ଶତ୍ରୁର କଠୋରତମ ଅତ୍ୟାଗୃରରେ ସାମାନ୍ୟତମ କାତରତାର ସଂକେତ ଦେଖାଇଲେ ନାହିଁ, ପଛ ଦେଖାଇବା ବା ପଛଘୁଞ୍ଚା ତ ଦୂରର କଥା ! ବସ୍ତୁତଃ, କିଏ ଆଗ ଯାଇ ଶତ୍ରୁର ସମ୍ମୁଖୀନ ହେବ ବା ଶତ୍ରୁ ହସ୍ତରେ ପ୍ରାଣ ଦେବ, ସେଥିପାଇଁ ସେମାନଙ୍କ ଭିତରେ ପ୍ରତିଯୋଗିତା ଗୃଲିଥିଲା । ସବୁଠାରୁ ପ୍ରାଣସ୍ପର୍ଶୀ ହୋଇଥିଲା, ଯେତେବେଳେ ସତର ଓ ଚଉଦ ବର୍ଷ ବୟସ୍କ ଗୁରୁଙ୍କ ଦୁଇ ପୁଅ ଅଜିତ୍ ସିଂ ଓ ଜୁଝାର ସିଂ ବାରମ୍ବାର ପିତାଙ୍କଠି ଅନୁନୟ କରିଥିଲେ, ଗୁରୁଙ୍କ ପୁତ୍ର ଭାବରେ, ଶିଖ୍‌ର ଯଥାଯୋଗ୍ୟ ମରଣକୁ ଭେଟିବା ପାଇଁ । ଗୁରୁଗୋବିନ୍ଦ ସିଂ କିଶୋର ପୁତ୍ରମାନଙ୍କର ସେହି ବୀରସ୍ୱତୋଚିତ ଅନୁନୟ ମଂଜୁର କରିଥିଲେ କେବଳ ନୁହେଁ, ଯେତେବେଳେ ପରମଶୌର୍ଯ୍ୟବୀର୍ଯ୍ୟ-ଗଠିତ ଦେହ ଯୁଗ୍ମ ଦୁଇଟି ମହତ୍ତମ ସେହି ଧର୍ମଯୁଦ୍ଧରେ ଭୂଲୁଣ୍ଠିତ ହୋଇ ପଡ଼ିଲେ, ମହାପ୍ରାଣ ଗୁରୁଜୀ

ଏକ ବିନ୍ଦୁ ଅଶ୍ରୁ ତ୍ୟାଗ ନ କରି ସବୁଶ୍ରୀଅକାଳଙ୍କ ପ୍ରତି କୃତଜ୍ଞତା ଜଣାଇ ଥିଲେ, ଏଥିପାଇଁ ଯେ, ତାଙ୍କର ମହତ ଦାନ ତାଙ୍କୁହିଁ ସେ ଫେରାଇ ଦେଇ ପାରିଲେ । ଯେଉଁ ଦଳର ନାୟକ ଥିଲେ ଅଜିତ୍ ସିଂ, ସେଥିରେ ଥିଲେ ବହୁ ଯୁଦ୍ଧର ଗୌରବଶ୍ରୀମଣ୍ଡିତ ଆଲମ୍ ସିଂ । ଆଲମ୍ ସିଂକ ସହିତ ଯେଉଁମାନେ ଚମ୍କୁଆରଠାରେ ଶହୀଦ୍ ହେଲେ, ସେମାନଙ୍କ ଭିତରେ ଥିଲେ ମଧ୍ୟ ମୋଖାମ୍ ସିଂ ଓ ହିମ୍ମତ ସିଂ, ଖାଲ୍‌ସା-ସୃଷ୍ଟି ବେଳର ପ୍ରଥମ ପାଁଚ୍ ପ୍ୟାରେଙ୍କ ଭିତରୁ ଦୁଇଜଣ, ଏବଂ ଦ୍ୱିତୀୟ ପାଁଚ୍ ପ୍ୟାରେଙ୍କ ମଧ୍ୟରୁ ମଧ୍ୟ କେତେକ । ପ୍ରତ୍ୟେକଟି ଶିଖ୍ ଅଦମ୍ୟ ଧୈର୍ଯ୍ୟର ସହିତ ଲଢ଼ିଥିଲେ ଏବଂ ନିଜର ଏକ ଏକ ଜୀବନ ପାଇଁ ଶତ୍ରୁର ବହୁ ଜୀବନ ଦାବୀ କରି ସାଥିରେ ନେଇ ଯାଇଥିଲେ । ଗୁରୁଙ୍କ ଦୁଇ ପୁଅ, ଅଜିତ୍ ଓ ଜୁଝାର, ଅସମ୍ଭବ ବୀରତ୍ୱ ପ୍ରଦର୍ଶନ କଲେ । ସେମାନେ ଲଢ଼ିଲେ ପ୍ରବୀଣ, ତାଲିମ୍‌ପ୍ରାପ୍ତ ଯୋଦ୍ଧାମାନଙ୍କ ପରି, ଏବଂ ଭୂପତିତ ହେବା ପୂର୍ବରୁ, ମୃତ୍ୟୁ ବର୍ଷିଗଲେ ଶତ୍ରୁ ପକ୍ଷରେ । ସମସାମୟିକ କବିର ଭାଷାରେ, "ଜୁଝାର ସିଂ ମୋଗଲ ସେନାମାନଙ୍କ ଭିତରେ ଜୟବିହାର କରି ଚାଲିଲେ, କୁମ୍ଭୀର ଯେପରି ଜଳରେ ବିହାର କରେ, ଏବଂ ଅଜିତ୍ ସିଂ ନିଜ ବର୍ଚ୍ଛାରେ ଦଳ ଦଳ ଶତ୍ରୁଙ୍କୁ ଗୁନ୍ଥି ସାରିଲା ପରେ ଓ ବର୍ଚ୍ଛା ସେହି ହେତୁ ଭାଙ୍ଗି ଯିବା ଯୋଗୁଁ, ସେ କ୍ଷିପ୍ରତାର ସହିତ ନିଜର ତରବାରୀ ଚଳାଇ ଚାଲିଲେ ।"

ସ୍ୱଳ୍ପସଂଖ୍ୟକ ଶିଖ୍‌ମାନଙ୍କର ଏ ପ୍ରକାର ଅଶ୍ରୁତପୂର୍ବ ସାହସ ଓ ରଣକୌଶଳ ଦେଖି, ମୋଗଲ ସେନାପତିମାନେ ଧୈର୍ଯ୍ୟ ହରାଇଲେ ଏବଂ ଯେ କୌଣସିମତେ ଗୁରୁଙ୍କୁ ବନ୍ଦୀ କରି ନେବାପାଇଁ ସୈନ୍ୟମାନଙ୍କୁ ଘର ଭିତରକୁ ଧସେଇ ପଶିବାକୁ ଆଦେଶ ଦେଲେ । କିନ୍ତୁ ଗୁରୁ ଓ ତାଙ୍କର ପାଞ୍ଚଜଣ ନିକଟତମ ସହଚରମାନଙ୍କ ଶରବୃଷ୍ଟିରେ ସେମାନେ ପଛେଇବାକୁ ବାଧ୍ୟ ହେଲେ । ନହାର ଖାଁ ନାମକ ସମ୍ରାଟବାହିନୀର ଏକ କର୍ମଚାରୀ, ସେହି ଘରର କାନ୍ଥ ଡେଇଁ ପଶିଯିବାକୁ ଚେଷ୍ଟା କଲାବେଳେ, ଗୁରୁଙ୍କ ଗୁଳିରେ ପ୍ରାଣ ହରାଇଲେ । କିନ୍ତୁ ସେ ଦିନ ସଂଧ୍ୟାବେଳକୁ ଦେଖାଗଲା ଯେ, ଗୁରୁଙ୍କୁ ଛାଡ଼ି, ସେ ଗୃହରେ ମାତ୍ର ପାଞ୍ଚଟି ଶିଖ୍ ଜୀବନରେ ଅଛନ୍ତି । ଏହି ନୈରାଶ୍ୟମୟ ଅବସ୍ଥାରେ ସେହି ପାଞ୍ଚଜଣ ଗୁରୁଙ୍କୁ ପ୍ରାର୍ଥନା କଲେ ଯେ ସେ ଚମ୍କୁଆର ଛାଡ଼ି ସେହି ରାତ୍ରିରେ ପଳାନ୍ତୁ,—ଗୁରୁ ବଞ୍ଚିଥିଲେ, ଖାଲ୍‌ସା ବଞ୍ଚି ରହିବ । କିନ୍ତୁ ଗୁରୁଗୋବିନ୍ଦ ସିଂ ଯାହା ଦୃଷ୍ଟ ପଛେ, ସ୍ଥାନତ୍ୟାଗ କରିବାକୁ ପ୍ରସ୍ତୁତ ନଥିଲେ ତେବେ ପଂଚଶିଖର ଆଦେଶ ସେ ଅମାନ୍ୟ କରିବେ ନାହିଁ ।

ସ୍ଥିର ହେଲା ଯେ, ଗୁରୁଙ୍କୁ ସାଥିରେ ନେଇ ଦୟା ସିଂ, ଧରମ ସିଂ, ଓ ମାନ୍ ସିଂ ସେହି ରାତିରେ ଚ୍ଛମ୍କୁଆର ତ୍ୟାଗ କରିବେ, ପଛରେ ରହିବେ କେବଳ ସାନ୍ତ ସିଂ ଓ ସଂଗତ ସିଂ । ସ୍ଥିର ହେବାମତେ ଗୁରୁ ସେ ଘରୁ ବାହାରିବା ଆଗରୁ, ଶର ଫିଙ୍ଗି ଶତ୍ରୁ ପକ୍ଷର ଦୀପ୍ତଗୁଡ଼ ସବୁ ଲିଭାଇ ଦେଲେ । ଦୀପସବୁ ଲିଭିଯାନ୍ତେ, ରାତିର ଅନ୍ଧକାରରେ ଶତ୍ରୁ ପକ୍ଷର ବିଶୃଙ୍ଖଳା ଦେଖା ଦେଲା ଏବଂ ସେହି ସୁଯୋଗ ନେଇ ଗୁରୁ ନିରାପଦରେ ଚ୍ଛମ୍କୁଆରରୁ ଖସି ଚାଲିଗଲେ ।

ପ୍ରଭାତ ହୁଅନ୍ତେ ଯୁଦ୍ଧ ପୁଣି ଆରମ୍ଭ ହେଲା । ଅବଶିଷ୍ଟ ଶିଖ ବୀର-ଯୁଗଳ ଶତ୍ରୁପକ୍ଷକୁ ଶରବର୍ଷଣରେ ବ୍ୟତିବ୍ୟସ୍ତ କଲେ । କିନ୍ତୁ କେତେକାଳ ଆଉ ସେମାନେ ଲଢ଼ି ଚାଲନ୍ତେ ବା ସେହି ଦୁର୍ଗରକ୍ଷା କରନ୍ତେ ? ମୋଗଲମାନେ ବର୍ତ୍ତମାନ ସହଜରେ କାନ୍ଥ ଡେଇଁ ସେ ଘରେ ପଶିଗଲେ ଏବଂ ବହୁ ସଂଖ୍ୟାରେ ଆକ୍ରାନ୍ତ କରି, ସାନ୍ତ ସିଂକୁ ଗୁରୁଗୋବିନ୍ଦ ସିଂ ବୋଲି ଧରି ନେଇ, ହତ୍ୟା କଲେ ଏବଂ ହତ୍ୟା କଲେ ମଧ୍ୟ ସଂଗତ ସିଂକୁ । ସେମାନେ ମହାଉଲ୍ଲାସରେ ସେହି ଛିନ୍ନମସ୍ତକ ଦୁଇଟିକୁ ଦିଲ୍ଲୀ ଦରବାରକୁ ପଠାଇବା ପାଇଁ ବସିଲାବେଳକୁ, ଘୋର ନିରାଶ ହେଲେ, ଯେତେବେଳେ ଜାଣିବାକୁ ପାଇଲେ ଯେ, କୌଣସିଟି ଛିନ୍ନ ମସ୍ତକ ଗୁରୁଗୋବିନ୍ଦ ସିଂଙ୍କର ନୁହେଁ ।

ଚ୍ଛମ୍କୁଆର ସଂଗ୍ରାମ ଘଟିଥିଲା, ୧୭୦୪ ଖ୍ରୀ: ଅ: ଡିସେମ୍ବର ୨୨ ତାରିଖରେ । ପରେ ଗୁରୁଗୋବିନ୍ଦ ସିଂ ପାର୍ସି ଭାଷାରେ ଆଉରଙ୍ଗଜେବଙ୍କ ନିକଟକୁ ଏହି ସଂପର୍କରେ ଯେଉଁ ପତ୍ର ଦେଇଥିଲେ ସେଥିରେ ଏହି ଘଟଣା ଏହିପରି ବର୍ଣ୍ଣିତ ଥିଲା:—"ଚାଳିଶଟି ଉପବାସ-ଦୁର୍ବଳ ଲୋକଙ୍କ ଉପରେ, ଅଜାଣତରେ, ଯେତେବେଳେ ଏତେ ଲୋକ ମାଡ଼ି ପଡ଼ିଲେ, ସେତେବେଳେ ସେମାନେ କ'ଣ କରନ୍ତେ ? ଶପଥ-ଭଙ୍ଗକାରୀମାନେ, ଧନୁ, ବନ୍ଧୁକ ଓ ତରବାରି ଘେନି ସେମାନଙ୍କୁ ଆକ୍ରମଣ କରି ବସିଲେ । ମୁଁ ସେମାନଙ୍କୁ ଭେଟିବାକୁ ବାଧ୍ୟ ହୋଇ ମୋର ଶକ୍ତିଅନୁଯାୟୀ ଲଢ଼ିଲି । କୌଣସି ଅବସ୍ଥାରେ ଅନ୍ୟ ସବୁ ପ୍ରତିକାର ବିଫଳ ହୋଇ ପଡ଼ିଲେ, ଶେଷ ପ୍ରତିକାର ଭାବରେ ଅସ୍ତ୍ରଧାରଣ ଅନ୍ୟାୟ ବିବେଚିତ ହେବ ନାହିଁ । × × × କୃଷ୍ଣବସ୍ତ୍ରାଚ୍ଛାଦିତ ଆପଣଙ୍କ ସୈନ୍ୟମାନେ ମହୁମାଛିର ଦଳପରି । ଗର୍ଜନ କରି ମାଡ଼ି ଆସିଲେ । ଆପଣଙ୍କର ଯେଉଁ ସୈନ୍ୟମାନେ ଆମ ପ୍ରତିରକ୍ଷାର ସୀମା

ଭିତରକୁ ପଶି ଆସିଲେ, ଆମେ କେବଳ ସେହିମାନଙ୍କୁ ଶୋଣିତର ପ୍ରଳୟରେ ଭସାଇଦେଲୁ । ଯେଉଁମାନେ ସେହି ରେଖାର ବାହାରେ ଥିଲେ, ସେମାନଙ୍କର ଆମେ କୌଣସି ଅନିଷ୍ଟ କରି ନାହୁଁ । ଖ୍ୱାଜା କାପୁରୁଷ ପରି ଲୁଚି ରହିଥିଲେ । ସେ ମୁହଁ ଦେଖାଇଥିଲେ, ମୁଁ ଏକ ଶରରେ ତାଙ୍କ ମୁଖକୁ ମଣ୍ଡିତ କରିଥାନ୍ତି ନିଶ୍ଚୟ । ଶର ଓ ଗୁଳି ବର୍ଷଣ ଫଳରେ ଉଭୟ ପକ୍ଷର ବହୁ ଲୋକ ମଲେ ଏବଂ ଧରଣୀ ଜବାପୁଷ୍ପ ପରି ରକ୍ତ ବର୍ଣ୍ଣ ଧାରଣ କଲା । ପେଣ୍ଡୁ ଓ ଠେଙ୍ଗା ଜମା ହେଲା ପରି ମଣିଷ ମୁଣ୍ଡ ଓ ଗୋଡ଼ ସବୁ ଗଦା ହେବାକୁ ଲାଗିଲା ।

ଧନୁଜ୍ୟାର ଆମୁଂଚନ ଏବଂ ଶରରାଜିର ପ୍ରଧାବନଜନିତ ଶବ୍ଦ ଗଗନ ପ୍ରକମ୍ପିତ କଲା । ଶରମାନଙ୍କର ଗର୍ଜ୍ଜଧ୍ୱନି ପ୍ରସାଣତମ ବୀରମାନଙ୍କ ହୃଦୟରେ କାତରତା ସୃଷ୍ଟି କଲା । କିନ୍ତୁ ବୀରୋତ୍ତମ ହେଲେହେଁ, ଅଗଣିତ ବିପକ୍ଷ ସୈନ୍ୟଙ୍କ ଆଗରେ, ଚାଳିଶଜଣ କ'ଣ କରି ପାରନ୍ତେ ? ଦିବାବସାନ ଓ ରାତ୍ରିର ରାଜତ୍ୱ ଆସିଯାନ୍ତେ, ପରମେଶ୍ୱରହିଁ ମତେ ବାଟ ଦେଖାଇଦେଲେ ଏବଂ ମୁଁ ସହଜରେ ସେହି ବ୍ୟୂହ ଭେଦ କରି, ଖସି ପଳେଇ ଆସିଲି ।''

କିନ୍ତୁ ଚାଁକୁଆର ସଂଗ୍ରାମର ମହତ୍ତମ ଘଟଣା ହେଉଛି, ସେ ପର୍ଯ୍ୟନ୍ତ କୋଡ଼ିଏ ବର୍ଷ ମଧ୍ୟ ହୋଇ ନ ଥିବା ଦୁଇ କିଶୋର ପୁତ୍ର, ଅଜିତ୍ ଓ ଜୁଝାର ଯେପରି ଉତ୍ସାହିତ ହୋଇ ରକ୍ତାକ୍ତ ରଣଭୂମିକୁ ପଶିଗଲେ ଏବଂ ଅସୀମ ସାହସ ଓ ବୀର୍ଯ୍ୟର ସହିତ ଶତ୍ରୁ ନିପାତ କରି କରି ମାତ୍ର କେତେଘଣ୍ଟାର ବ୍ୟବଧାନରେ ସେହି ଦୁଇ ଭାଇ ଯେପରି ଏକ ପରେ ଏକ ଧର୍ମ ଓ ବିଶ୍ୱାସର ଯଜ୍ଞରେ ନିଜ ନିଜକୁ ଅକାତର ଚିତ୍ତରେ ବଳି ଦେଇ ଗଲେ ଏବଂ ଯେପରି ଭାବରେ ସେମାନଙ୍କର ମହାତ୍ମା-ପିତା ସ୍ୱର ପୁତ୍ରମାନଙ୍କର ଏହି କରୁଣ ମୃତ୍ୟୁ ନିଜ ଆଖିରେ ଦେଖି କୃତକୃତ୍ୟ ଅନୁଭବ କରି ଭଗବାନଙ୍କ ନିକଟରେ କୃତଜ୍ଞତା ଜଣାଇଥିଲେ । ସମଗ୍ର ମାନବଇତିହାସରେ ଏହି ବୀର୍ଯ୍ୟ-ଓ-ତ୍ୟାଗ-ପ୍ରୀତ ମହତ୍ୱ ଘଟଣାର ତୁଳନା ନାହିଁ ।

ପୁଣି, ଯେଉଁ ଠିକ୍ ସମୟରେ ଚାଁକୁଆରଠାରେ ଗୁରୁଙ୍କ ଦୁଇ ପୁଅ ଧର୍ମ ଓ ବିଶ୍ୱାସର ବେଦିକାରେ ନିଜକୁ ଏପରି ବଳି ଦେଉଥିଲେ, ସେହି ସମୟରେ ସେଠାରୁ ଅଦୂରରେ ସିର୍‌ହିନ୍ଦ୍‌ଠାରେ ଗୁରୁଙ୍କର ଛ' ଓ ଆଠବର୍ଷ ବୟସ୍କ ଆଉ ଦୁଇ ପୁଅ ନିଷ୍ଠୁର ଘାତୁକର ଅସିର ସମ୍ମୁଖୀନ ହୋଇଥିଲେ,

ଠିକ୍ ସେହି ଅସାଧାରଣ ଅକୁତୋଭୟତା ଦେଖାଇ, ଯାହା ଦେଖାଇ ପାଇଥିଲେ ସେମାନଙ୍କର ବଡ଼ ଭାଇ ଦୁହେଁ । ଏହି ଶ୍ରେଷ୍ଠ ନିର୍ଭୀକ ବାଳକମାନଙ୍କର ସତ୍ୟାନୁରାଗ ଓ ସେଥିପାଇଁ ପ୍ରାଣୋତ୍ସର୍ଗର କାହାଣୀ ଯେପରି କରୁଣ ସେହିପରି ଶିକ୍ଷାପ୍ରଦ ।

ସାର୍ସା ନଦୀ ଅତିକ୍ରମ କରି ସାରିଲା ପରେ ଯେଉଁ ପୁରାତନ ଭୃତ୍ୟ ଗାଂଗୁ, ଗୁରୁଙ୍କ ମାତା ଓ ତାଙ୍କର ଦୁଇ ପୁଅଙ୍କର ଦାୟିତ୍ୱ ନିଜ କାନ୍ଧରେ ନେଇ ତା ଗାଁକୁ ଡାକି ନେଇଥିଲା, ପରେ ସେ ବିଶ୍ୱାସଘାତକତା କରି ସେମାନଙ୍କୁ ଶତ୍ରୁ ହାତରେ ଧରାଇ ଦେଲା । ତାର କଥାରେ ବିଶ୍ୱାସ କରି ସେମାନେ ତା ଘରକୁ ଗଲେ ଓ ସେ ଯାହା ଦେଲା ତାହା ଖାଇ ସାରିଲା ପରେ, ମାତା ଗୁଜ୍ଜରୀ, ଘର୍ଘ ଓ ଦୁର୍ଘଟଣାଜଡ଼ିତ ଯାତ୍ରା ଯୋଗୁଁ ସାତିଶୟକ୍ଲାନ୍ତ ପିଲା ଦି'ଟିଙ୍କୁ କୋଳରେ ଘେନି, ପଡ଼ି ପକାଇ ଭୂପର ମହଲରେ ଶୋଇପଡ଼ିଲେ । ପାଷଣ୍ଡ ଗାଂଗୁ, ଏହି ଅବସରରେ ମାତା ଗୁଜ୍ଜରୀଙ୍କ ଘୋଡ଼ାର ଜିନ୍ ଭିତରେ ଟଙ୍କା ସୁନା ଥିବାର ଅନୁମାନ କରି, ତାକୁ କୌଶଳରେ ଆତ୍ମସାତ୍ କରିନେଲା । ସକାଳେ ନିଦ୍ରାତ୍ୟାଗ ପରେ ମାତାଜୀ ଏହା ଜାଣିପାରି ଗାଂଗୁକୁ କହିଲେ । ଗାଂଗୁ ଏହାଶୁଣି ତାର ନିଷ୍ପାପତା ଘୋଷଣା କରିବା ସଙ୍ଗେ ସଙ୍ଗେ, ଗୁରୁ-ପରିବାରକୁ ଆଶ୍ରା ଦେଇ ଶେଷରେ ସନ୍ଦେହର ପୁରସ୍କାର ପାଉଛି ବୋଲି କହି ରୋଧାନ୍ୱିତ ହୋଇ ପ୍ରତିବାଦ କରି ଚାଲିଲା ।

ଏହିପରି ପ୍ରତିବାଦ କରି କରି ସେ ପୁଣି ଘରୁ ବାହାରି ଯାଇ ଗାଁର ଚୌଧୁରୀ ପାଖରେ, ତା'ଘରେ ଗୁରୁ-ଗୋବିନ୍ଦ ସିଂଙ୍କ ମା ଓ ଦୁଇ ପୁଅ ରହି-ଥିବାର ଖବର ଦେଇଦେଲା । ସେଠୁ ସେ ଦୁହେଁ ଯାଇ ଉପସ୍ଥିତ କର୍ମଚାରୀ ମରିନ୍ଦାର ରଙ୍ଗାର-ରାଜାକୁ, ପୁରସ୍କାର ଆଶାରେ, ଏହି ଶୁଭ ସମ୍ବାଦ ଦେଇ ବସିଲେ । ସମ୍ରାଟଙ୍କ ଶତ୍ରୁର ମୂଲ୍ୟବାନ ପ୍ରତିଭୂ ହାତମୁଠାରେ ଆସି ଧରା ଦେଲେଣି, ଯାଠୁ ଅଧିକ ଭାଗ୍ୟର କଥା କ'ଣ ଥାଇପାରେ ? ସେ ସାଙ୍ଗେ ସାଙ୍ଗେ ପଞ୍ଚାଏ ସୈନିକ ଧରି ସାହେବ ଗାଁକୁ ଯାଇ ଗାଂଗୁର ଘରୁ ଗୁରୁଙ୍କ ଜନନୀ ଓ ପିଲା ଦୁହିଁଙ୍କୁ, ବନ୍ଦୀ କରି ନେଲା ।

ବନ୍ଦୀମାନେ ବର୍ତ୍ତମାନ ସିର୍‌ହିନ୍ଦ୍‌ର ରାଜ୍ୟପାଳ ଓ୍ୱାଜିର ଖାଁଙ୍କ ନିକଟରେ ସମର୍ପିତ ହେବା ପାଇଁ ନିଆଗଲେ । ଓ୍ୱାଜିର ଖାଁ ପୂର୍ବେ ଗୁରୁଙ୍କ

ବିରୁଦ୍ଧରେ ଅଭିଯାନ କରି ବିଫଳ ହୋଇ ଫେରିଥିଲା । ପ୍ରତିହିଂସାର ଏକ ସୁବର୍ଣ୍ଣ ସୁଯୋଗ ତାକୁ ଜୁଟିଗଲା । ସେ ଆଦେଶ ଦେଲା ବନ୍ଦୀମାନେ ସିର୍‌ହିନ୍ଦ୍ ଦୁର୍ଗର ଉଚ୍ଚତମ କକ୍ଷରେ ଆବଦ୍ଧ ରହିବେ । ତହିଁ ଆରଦିନ ୧୭୦୪ ଖ୍ରୀଷ୍ଟାବ୍ଦରେ ଡିସେମ୍ବର ୨୬ ତାରିଖରେ ଗୁରୁଙ୍କ ଦୁଇ ପୁଅ ଓ୍ୱାଜିର ଖାଁଙ୍କ ନିକଟକୁ ନିଆଗଲେ । ଯାଁ ନାତିଙ୍କୁ ଯେଉଁ ବୁଢ଼ୀମା କେବେ ହେଲେ ଦୃଷ୍ଟିର ଆଡୁଆଳକୁ ଯିବାକୁ ଦେଉ ନ ଥିଲେ, ସେ ଜାଣୁ ଜାଣୁ, ସେମାନଙ୍କୁ ଶତ୍ରୁଙ୍କ ଚକ୍ରାନ୍ତ ଭିତରକୁ ଛାଡ଼ି ଦେବେ କିପରି ? କିନ୍ତୁ ବୀର ବାଳକ ଜୋରାଓ୍ୱାର ଗୋସେଇଁମାଙ୍କୁ କହିଲା— "ସେମାନେ ଆମକୁ ତ ଆଉ ଛାଡ଼ିଦେବେନି କୌଣସିମତେ ? ତେବେ ସୁବାଦାରକୁ ଭେଟିବା ଛଡ଼ା ଆଉ ଉପାୟ କ'ଣ ଅଛି ? ଆମେ ଯିବୁ ଓ ଭେଟ ହେବୁ ।"

ସ୍ନେହର ଗୋସେଇଁମା ଦୁଇ ନାତିର ମସ୍ତକ ଅଣ୍ଡାଳି ଅଣ୍ଡାଳି ବହୁ ପ୍ରାର୍ଥନା ଓ ଆଶୀର୍ବାଦ ଢାଳି ଢାଳି ସେମାନଙ୍କୁ ନେବାକୁ ଆସିଥିବା ରକ୍ଷୀର ସାଥିରେ ଯିବାକୁ ଦେଲେ ।

ସୁବାଦାରର ଦରବାରରେ ପହଞ୍ଚି, ସେ ଦୁଇ ବୀର ବାଳକ ନିର୍ଭୟରେ ଶିଖ୍-ଅଭିବାଦନ 'ଓ୍ୱାହି ଗୁରୁଜୀକା ଖାଲ୍‌ସା, ଓ୍ୱାହି ଗୁରୁଜୀକା ଫତେ !' ଉଚ୍ଚାରଣ କଲେ । ସେମାନଙ୍କର ଏହି ନିର୍ଭୀକ ଅଭିବାଦନ ଓ ଆତ୍ମ-ବିଶ୍ୱାସ-ପୂର୍ଣ୍ଣ ବ୍ୟବହାର ସମସ୍ତଙ୍କୁ ବିସ୍ମିତ କଲା । ସୁବାଦାରଙ୍କ ଜନୈକ ମନ୍ତ୍ରୀ ସୁଚ୍ଚାନନ୍ଦ ସେମାନଙ୍କୁ କହିଦେଲା ଯେ, ଗୁର୍ଜ୍‌କାଉଠାରେ ସେମାନଙ୍କର ପିତା, ଦୁଇ ବଡ଼ଭାଇ ଓ ପିତାଙ୍କର ସବୁ ସାଙ୍ଗସାଥୀ ଯୁଦ୍ଧରେ ପ୍ରାଣ ହରାଇଛନ୍ତି; ସେମାନେ ଯଦି ଜୀବନ ଧରି ବଞ୍ଚି ରହିବାକୁ ଚାହାନ୍ତି, ତେବେ ସୁବାଦାର ଆଗରେ ମୁଣ୍ଡ ନୁଆଁଇ ଇସ୍‌ଲାମ ଗ୍ରହଣ ଛଡ଼ା ଅନ୍ୟ ଉପାୟ ନାହିଁ ।

ଜୋରାଓ୍ୱାର ସିଂ ମୃଦୁ ଅଥଚ ଦୃଢ଼ ସ୍ୱରରେ ଉତ୍ତର କଲା— 'ଆମ୍ଭେମାନେ କେବଳ ଈଶ୍ୱର ଓ ଗୁରୁଙ୍କ ଆଗରେ ମୁଣ୍ଡ ନୁଆଁଇବା ପାଇଁ ଶିକ୍ଷାପ୍ରାପ୍ତ ହୋଇଛୁ । ଆଉ କାହା ଆଗରେ ମୁଣ୍ଡ ନୋଇଁବା ଆମେ ଜାଣୁ ନାହୁଁ । ଆମ ଧମନୀରେ ଗୁରୁ ହରି ଗୋବିନ୍ଦ, ଗୁରୁ ତେଗ୍ ବାହାଦୁର ଓ ଗୁରୁ ଗୋବିନ୍ଦ ସିଂଙ୍କ ରକ୍ତ ପ୍ରବାହିତ । ତେଣୁ ଇସ୍‌ଲାମ ଗ୍ରହଣର ପ୍ରଶ୍ନ ଉଠେନି । ବଳ ପ୍ରୟୋଗ କରି କେହି ଆମକୁ ଆମ ପୂର୍ବପୁରୁଷଙ୍କ ଧର୍ମ ପରିତ୍ୟାଗ କରାଇ ପାରିବେ ନାହିଁ ।'

ଏ ପ୍ରକାର ସାହସିକ ଉତ୍ତର ସମସ୍ତଙ୍କୁ ସନ୍ତୁଷ୍ଟ କଲା । ବିଶେଷ-ଭାବରେ ସୁବାଦାର ଓ୍ୟାଜିର ଖାଁଙ୍କୁ । ସେ ଭାବିଲେ ଯେ ଏପରି ଗୁଣବାନ ପିଲା ଇସଲାମର ଗୌରବ ବୃଦ୍ଧି କରିବ । ସେ ବର୍ତ୍ତମାନ ପିଲା ଦୁଇଟି ସହିତ ସିଧାସିଧି କଥା କହିଲେ ଏବଂ ପ୍ରତିଶ୍ରୁତି ଦେଲେ ଯେ ସେମାନେ ଇସଲାମ ଗ୍ରହଣ କଲେ, ସେମାନଙ୍କୁ ରାଜ୍ୟ ଦିଆଯିବ ଏବଂ ସେମାନଙ୍କୁ ଦେଶ-ବିଖ୍ୟାତ ଅଭିଜାତ ବଂଶର କନ୍ୟା ବିବାହ କରିବାକୁ ମିଳିବେ । ଜୋରାଓ୍ୟାର ସିଂ, ଜ୍ୟେଷ୍ଠ ଭାଇକୁ ଚାହିଁଲା ଏବଂ ତାର କିଶୋର ମୁଖରେ ମଧ୍ୟ, ଅଟଳ ଧୈର୍ଯ୍ୟ ଓ ବିଶ୍ୱାସର ଚିହ୍ନ ଦେଖି ଦୃଢ଼କଣ୍ଠରେ ଉତ୍ତର ଦେଲା—

"ଆମର ରାଜ୍ୟ ବା ମାନାସନ ଲୋଡ଼ାନାହିଁ । ଆମେ ଆମର ଜୀବନ ଦେବୁ, କିନ୍ତୁ ଧର୍ମ ଛାଡ଼ି ପାରିବୁ ନାହିଁ । ଆପଣଙ୍କର କୌଣସି ପ୍ରଲୋଭନ ଆମକୁ ସେଥିପାଇଁ ପରିବର୍ତ୍ତିତ କରିବ ବୋଲି ଭାବନ୍ତୁ ନାହିଁ । ପାର୍ଥିବ କ୍ଷମତା ଅଚିରସ୍ଥାୟୀ । ମୋଗଲମାନଙ୍କର ନିଷ୍ଠୁରତା ଅଚିରେ ସେମାନଙ୍କର ପତନ ଆଣି ଦେବ ।"

ଓ୍ୟାଜିର ଖାଁ ଆଦେଶଦେଲେ ପିଲା ଦୁଇଟିକୁ କଏଦୀଖାନାକୁ ନେଇଯାଇ, ପୁଣି ଆଗାମୀ କାଲି ସକାଳେ ତାଙ୍କ ଆଗରେ ହାଜର କରାଇବାକୁ । ପିଲା ଦିହିଁକ ପରେ ପରେ ଉଭୟ ଭୟ ଦେଖାଇବା ଓ ମଂଗେଇବା ପାଇଁ ଲୋକ ନିଯୁକ୍ତ କରାଗଲେ । କିନ୍ତୁ କାରାଗାରରେ ପିଲା ଦିହେଁ ସେମାନଙ୍କର ବିଶ୍ୱାସରେ ଅଟଳ ରହିଲେ ଏବଂ ତହିଁ ଆରଦିନ ମଧ୍ୟ ସୁବାଦାରଙ୍କ ସମ୍ମୁଖରେ ସେମାନଙ୍କର ବଚନ ଓ ବ୍ୟବହାର ପୂର୍ବପରି ମର୍ଯ୍ୟାଦାବନ୍ତ ଦେଖାଗଲା । ସୁବାଦାର ବର୍ତ୍ତମାନ କ୍ରୋଧରେ ଜଳି ସେମାନଙ୍କୁ କଠୋରତମ ଦଣ୍ଡର ଭୟ ଦେଖାଇଲେ । ମ୍ୟାଲେରକୋଟଲାର ନବାବ ଶେର୍ ମହମ୍ମଦ୍ ପିଲାଂକ ପକ୍ଷଧର କହିଲେ ଯେ, ସେମାନେ ବୟସରେ ଏତେ ଜ୍ୟେଷ୍ଠ ଯେ ସେମାନଙ୍କୁ ଦେଶର କାନୁନ୍ ଅନୁସାରେ ଦଣ୍ଡ ଦିଆଯାଇ ନ ପାରେ । ତାଂକ ପିତା କିଣ କରିଛନ୍ତି, ସେଥିପାଇଁ ସେମାନଙ୍କୁ ଦାୟୀ କରାଯାଇ ନ ପାରେ । ସେମାନଙ୍କୁ ବରଂ ଛାଡ଼ି ଦେବାହିଁ ଉଚିତ । ଅନ୍ୟ ଜଣେ ଦରବାରୀ ସେର୍ ମହମ୍ମଦଙ୍କ ବାକ୍ୟ ଖଣ୍ଡନ କରି କହିଲେ ଯେ, ପିଲା ହେଲେ ମଧ୍ୟ, ମନେ ରଖିବାକୁ ଯେ, ସେମାନେ ଗୁରୁ ଗୋବିନ୍ଦ ସିଂଙ୍କର ପୁଅ; ବଡ଼ ହେଲେ, ସାମ୍ରାଜ୍ୟରେ ବାପ ପରି ଗୋଳମାଳ ସୃଷ୍ଟି କରିବେ, ତାଙ୍କୁଇ ସେମାନେ ଉତ୍ତେଜିତ ଓ ବିସ୍ତାରିତ କରିବେ ।

ଶେଷରେ କାଜମାନଙ୍କ ଉପଦେଶ ଅନୁସାରେ ଓ୍ୱାଜିର ଖାଁ ଆଦେଶ ଦେଲେ ଯେ ଗୁରୁ ଗୋବିନ୍ଦ ସିଂଙ୍କ ଦୁଇ ପୁଅଙ୍କୁ ଇଟା-କାନ୍ଥ ଦେଇ ମାରି ଦିଆଯିବ । ସେମାନଙ୍କର ଗୋଡ଼ତଳୁ ଥାକକୁ ଥାକ ଇଟା ବସେଇ ଦିଆଗଲା । ଇଟା ଯେତେବେଳେ ଗୁଣ୍ଠିଏ ଉଚ୍ଚ ହୋଇଗଲା, ସେତେବେଳେ ମଧ୍ୟ ଜୋରାୱର ଓ ଫତେ ସିଂଙ୍କୁ କୁହାଗଲା ଯେ, ସେମାନେ ସେମାନଙ୍କର ଧର୍ମ ତ୍ୟାଗ କରି ଇସଲାମ ଗ୍ରହଣ କଲେ, ସେମାନେ ବଞ୍ଚିବେ । କିନ୍ତୁ ଦି' ପିଲାଯାକ ତିଳେମାତ୍ର ଟଳିଲେ ନାହିଁ । ତା'ପରେ ଇଟାଗୁଡ଼ିକ ଥରେ ସେମାନଙ୍କର ଗୁଲୁପଟ୍ଟ ଭାଙ୍ଗି ଦିଆଗଲା । ସେତେବେଳକୁ ସେମାନେ ସଂଜ୍ଞାହୀନ । ସେହି ଅବସ୍ଥାରେ ସେମାନଙ୍କୁ ପୁଣି କଏଦଖାନାକୁ ନିଆଗଲା । ସେଠାରେ ସେମାନେ ଚେତନା ଫେରି ପାଇଲେ ।

ଡିସେମ୍ବର ୨୭ ତାରିଖ ସକାଳେ, ସେମାନଙ୍କୁ ସୁବେଦାରଙ୍କ ଦରବାରକୁ ଚୂଡ଼ାନ୍ତ ଥର ପାଇଁ ନିଆଗଲା ଏବଂ ସେମାନଙ୍କୁ ପୁଣି ପୂର୍ବର ପ୍ରଲୋଭନ ଶୁଣାଇ ଦିଆଗଲା । ପିଲା ଦୁହେଁ ପୂର୍ବପରି ସ୍ଥିର, ଓ ଅଟଳ ରହିଲେ ଏବଂ ଇସ୍‌ଲାମ ଗ୍ରହଣ ନ କରିବାର ଅପରାଧ ଯୋଗୁଁ ୮ ଓ ୬ବର୍ଷର ଏହି ନିରୀହ ବାଳକ ଦୁଇଟିଙ୍କୁ ବୟସ ଅନୁସାରେ, ପରେ ପରେ, ଏକ ଦିଲ୍‌ଜାଇ ଘାତୁକ ଦ୍ୱାରା, ହତ୍ୟା କରାଗଲା !

ତୋଡ଼ରମଲ୍ ନାମକ ଜଣେ ଧନୀ ଶିଖ୍, ଗୁରୁ ଗୋବିନ୍ଦ ସିଂଙ୍କ ଦୁଇପୁଅ ବନ୍ଦୀ ହୋଇଥିବାର ଶୁଣିବାରୁ ଧନ ଦେଇ ସେମାନଙ୍କର ସ୍ୱାଧୀନତା କିଣି ନେବାପାଇଁ ସିର୍‌ହିନ୍ଦ୍‌କୁ ଧାଇଁ ଆସିଥିଲେ । କିନ୍ତୁ ସେ ଆସି ବିଳମ୍ବରେ ପହଞ୍ଚିଲେ ଏବଂ ସେ ପର୍ଯ୍ୟନ୍ତ ଜାଣି-ନ-ଥିବା ଗୋସେଇଁମା ମାତା ଗୁଜୁରୀ ଦେବୀଙ୍କୁ ଏହି ମର୍ମଭେଦୀ ସମ୍ବାଦ ଯାଇ ଦେଲେ । ଏକେତ ଗତ ତିନଦିନ ତିନରାତି, ନାତିମାନଙ୍କ କଥା ଭାବି ଭାବି, ଗୁଜାରୀ ଦେବୀ ପ୍ରାଣାନ୍ତକ ମାନସିକ ଯନ୍ତ୍ରଣା ଦେଇ ଯାଇଥିଲେ । ତାଙ୍କର ସମସ୍ତ କଟୁଥିଲା ପ୍ରାଣାଧିକ ନାତି ଦୁହିଁଙ୍କର କଲ୍ୟାଣ ପାଇଁ ଅନବରତ ପ୍ରାର୍ଥନା କରିବାରେ । ସେ ସବୁ ପରେ ସେମାନଙ୍କର ନିଷ୍ଠୁର ହତ୍ୟାର୍ ମର୍ମବିଦାରକ ସମ୍ବାଦ ଶୁଣିଲାକ୍ଷଣି, ସେହି ବରେଣ୍ୟା ଜନନୀ ଯେ ମୂର୍ଚ୍ଛିତ ହୋଇ ପଡ଼ିଗଲେ, ଆଉ ତାଙ୍କର ମୂର୍ଚ୍ଛା ଭଙ୍ଗ ହୋଇ ନ ଥିଲା ।

—o—

# ଏକାଦଶ ଅଧ୍ୟାୟ

## ସମ୍ରାଟଙ୍କୁ ଶାସ୍ତି ।

ଗୃକୁଁଆର ରଣଭୂମିରେ ଅନ୍ୟ ସମସ୍ତ ଶିଖ୍ ମାନଙ୍କ ସହିତ ଦୁଇ ବଡ଼ ପୁଅଙ୍କୁ ମଧ୍ୟ ହରାଇ ଗୁରୁ ଗୋବିନ୍ଦ ଯେଉଁ ତିନିଜଣ ବିଶ୍ୱସ୍ତ ଶିଖଙ୍କୁ ଧରି ସେଦିନ ରାତିର ଅନ୍ଧକାର ଭିତରେ ଗୃଁକୁଆର ପରିତ୍ୟାଗ କରିଥିଲେ, ଦୈବ-ଦୁର୍ବିପାକବଶତଃ, ଯାହା ଭିତରେ ସେହି ବିଶ୍ୱସ୍ତ ତିନୋଟି ଅନୁଚର-ମାନଙ୍କଠାରୁ ମଧ୍ୟ ସେ ବିଚ୍ଛିନ୍ନ ହୋଇପଡ଼ି ଏକା ଏକା ପଥ ବାହି ଗୃଲିଲେ । ସେହି ଅଭୂତପୂର୍ବ ନିଃସଙ୍ଗତା ଭିତରେ ସେ ମଧ୍ୟ ଜାଣି ନଥିଲେ ଯେ, ସେତେବେଳକୁ, ସିର୍‌ହିନ୍ଦଠାରେ ତାଙ୍କର ଦୁଇ ସାନପୁଅ ମଧ୍ୟ ନିଜ ଧର୍ମର ମାନ ପାଇଁ ଶତ୍ରୁର ତରବାରିକି ନ ଡରି, ନିଜ ନିଜର ମହାର୍ଘ ଜୀବନକୁ ସଜ୍ଞାହୁତି କରି ଦେଇ ସାରିଛନ୍ତି ।

ଏହିପରି ଭାବରେ ଗୁରୁଙ୍କର ସହସା ନାଟକୀୟ ରୀତିରେ ଭାଗ୍ୟର ସାମୂହିକ ବିପର୍ଯ୍ୟୟ ଘଟିଗଲା କେବଳ ନୁହେଁ, ତାଙ୍କର ନିଜର ନିଃସଙ୍ଗ ପଥଯାତ୍ରା ଭିତରେ ମଧ୍ୟ ଏଣିକି ଏଣିକି ବହୁ ନାଟକୀୟ ଘଟଣା ଘଟିବାର ଦେଖାଗଲା । ବନ୍ଧନ ବା ପ୍ରାଣନାଶ ସୁନିଶ୍ଚିତ ହେଲେ, ଦୈବ-ଶକ୍ତି ତାଙ୍କୁ ଯେପରି ରକ୍ଷା କରିଛି ବୋଲି ଆମେ ଦେଖିବା । କାରଣ, ଯେଉଁମାନେ ତାଙ୍କ ଉପରେ ମୋଗଲ ସମ୍ରାଟର ପୁଞ୍ଜୀଭୂତ ପ୍ରତିହିଂସା ଅଜାଡ଼ିବାର ସମ୍ପୂର୍ଣ୍ଣ ଆଶା କରିଯାଇ ଥିଲା, ସେମାନେ ହଠାତ୍ ମତ ପରିବର୍ତ୍ତନ କରି ବନ୍ଧୁପରି ବ୍ୟବହାର କରିଛନ୍ତି । କିନ୍ତୁ ସେ ଯାହା ହେଉ, ମାତ୍ର କାଲି ଯେଉଁ ଲୋକ ରାଜାଧିରାଜ ପରି ଦରବାର ଧରି ବସୁଥିଲା ଏବଂ ସହସ୍ର ସହସ୍ର ଜନର ଭକ୍ତି ଓ ଶ୍ରଦ୍ଧା ସହିତ ଏକ ଶକ୍ତିଶାଳୀ ବାହିନୀ ଯା' ଆଦେଶରେ ବସୁଥିଲେ-ଉଠୁଥିଲେ, ସେ ଆଜି, ଏକ ନିଃସଙ୍ଗ, ପଳାତକ ପଥଯାତ୍ରୀ ମାତ୍ର,—ତାର ପଦଯୁଗ ଉପାନତ-ହୀନ, ସେ ପଥ ଅତିକ୍ରମ କରି କରି କ୍ଲାନ୍ତ, ଅଥଚ ସେ କାହିଁ ଆଶ୍ରୟ ପାଉନି କି ବିଶ୍ରାମ ପାଉନି, ସେ କ୍ଷୁଧାତୁର ହେଲେହେଁ ସେହି ରାଜବିଳାସପାଳିତ ଜନନାୟକକୁ ଆଜି ସାମାନ୍ୟତମ ମନୁଷ୍ୟର ଖାଦ୍ୟ ମଧ୍ୟ ମିଳୁ ନାହିଁ । ଯୋତାଶୂନ୍ୟ ପଦରେ ଜଙ୍ଗଲେ ଜଙ୍ଗଲେ ଗୃଲନ୍ତେ ଗୁରୁଜୀଙ୍କ ଗୋଡ଼ରେ ଘା ହୋଇ ଅନବରତ ରକ୍ତସ୍ରାବ ହେବାକୁ ଲାଗିଲା ଏବଂ ଗଛର ପତ୍ର ଛଡ଼ା ସେ ଆଉ କିଛି ଖାଦ୍ୟ ପାଇ ନ ଥିଲେ । ଏପରିକି

ପିପାସାର ଦାରୁଣ ତୀବ୍ରତା ସହି ନ ପାରି, ସେ ଗତ୍ୟନ୍ତର ନ ଦେଖି, ତିକ୍ତ ଓ ବିଷତୁଲ୍ୟ ବନ୍ୟ ଅର୍କଗଛର ଖୀରରେ ନିଜର ଓଠକୁ ଓଦା କରିବାକୁ ମଧ୍ୟ ବାଧ୍ୟ ହୋଇଥିଲେ । କିନ୍ତୁ ସେହି ମହାପ୍ରାଣ ଗୁରୁଜୀ, ଏପରି ଘାନ-ଦୁଃସ୍ଥତା ଭିତରେ ମଧ୍ୟ ସର୍ବଶକ୍ତିମାନ୍ ବିଧାତାର ସ୍ତୁତିଗାନ କରି ଚାଲିଥିଲେ । ଏ ପ୍ରକାର ଦୁର୍ଦ୍ଦଶା ଭିତରେ ମଧ୍ୟ ସେ ତାଙ୍କର ନିଜର ଆଦର୍ଶ ଉପରୁ ବିଶ୍ୱାସ ହରାଇ ନଥିଲେ, କି କେବେହେଲେ ନିରାଶ ବା ଅବସନ୍ନ ହୋଇ ଢଡ଼ି ନ ଥିଲେ । ହିମଶୀତଳ ଶୀତରାତିରେ ମଧ୍ୟ ମାଛିୱାର୍ ଜଙ୍ଗଲ ଭିତରେ ଉନ୍ମୁକ୍ତ ଆକାଶତଳେ ଭୂଇଁ ଉପରେ ଶୋଇ ଯେତେବେଳେ ଗୁରୁଜୀଙ୍କର ଅଭୁକ୍ତ ଶରୀର ଜଡ଼ ହୋଇ ଉଠିଥିଲା, ସେତେବେଳେ ମଧ୍ୟ ଗୁରୁଜୀ ମୁହେଁ ମୁହେଁ ନିମ୍ନଲିଖିତ କବିତା ରଚନା କରିଥିଲେ —

ହେ ବନ୍ଧୁ, ହେ ପ୍ରିୟ ପ୍ରଭୁ,
ସୁକୋମଳ ଶଯ୍ୟା
ତୁମ-ଚିନ୍ତା-ଶୂନ୍ୟ ପକ୍ଷେ,
କେବଳ ତା' ଲଜ୍ଜା ।
ପ୍ରାସାଦରେ ବାସ, ଅବା ସଙ୍ଗତେ ନିବାସ,
ଭାଗ୍ୟ ନୁହେଁ, ସେ କେବଳ
ପତନର ଧ୍ୱଜା ।
ତୁମେ ଯହିଁ ନାହିଁ ପ୍ରଭୁ,
ମଦ୍ୟପାତ୍ର ତହିଁ,
ଶୂଳୀ, ଅବା ଦୃଷ୍ଟ ପରେ-
ହିଂଶୁର ଭାର ହିଁ ।
କଂସାଇର ଛୁରିକା ହିଁ
ମଣେ ଶ୍ରେୟତର,
ତୁମ ବିନା ନ ବଞ୍ଚିବି
କ୍ଷଣକ ମାତର ।
ତୁମ ବିନା ପ୍ରାସାଦର
ସକଳ ବିଳାସୁ ।
ସୁଖତର ତବ ନାମ
ଗାଇ ଯାଉ-ଆସୁ । (*)

---

ଆସୁ—ପ୍ରାଣ ।

ତାଁ'କୁ ଆଉ ଗୁଡ଼ିବା ପରେ ବି, ଗୁରୁଜୀ ଓ ତିନି ଶିଖ୍-ଅନୁଚର, କାଳେ ପଥରେ ପରସ୍ପର ଠାରୁ ଭିନ୍ନ ହୋଇଗଲେ, ଆକାଶର ବିଶେଷ ବିଶେଷ ତାରା ଉପରେ ଆଖି ରଖି, ପୁଣି ପରସ୍ପର ସହିତ ମିଶିବାର ପରାମର୍ଶ କରିଥିଲେ । ସେହି ସମୟରେ ଗୁରୁ-ସଙ୍ଗ-ଭ୍ରଷ୍ଟ ତିନି ଶିଖ୍ ଅନୁଚର, ନାନା ପଥ ଦେଇ ଗୁରୁଙ୍କୁ ଖୋଜି ଖୋଜି ଶେଷରେ ଆସି ତାଙ୍କୁ ଜଙ୍ଗଲର ଏକ ଜାଗାରେ ଏକ ପରିତ୍ୟକ୍ତ ମୃତ୍ତପାତ୍ରରେ ମୁଣ୍ଡ ଦେଇ, କ୍ଲାନ୍ତ ହୋଇ ବିଶ୍ରାମ କରୁଥିବାର ଦେଖିଲେ । ସେ ଯାହାହେଉ, ଗୁରୁଙ୍କୁ ଜୀବିତାବସ୍ଥାରେ ହିଁ ପୁଣି ଦେଖିବାକୁ ପାଇ, ସେମାନେ ଆନନ୍ଦରେ ନିଜର ସଂଯମ ହରାଇ, ଅଟ୍ଟହାସ୍ୟ ଓ ଚିତ୍କାର କରି ବସିଲେ, ଯଦିଓ ସେମାନେ ଜାଣିଥିଲେ ଯେ, ମୋଗଲ ସୈନ୍ୟମାନେ ଗୁରୁଙ୍କୁ କୌଣସି ମତେ ପାଇବା ପାଇଁ, ଅତି ନିକଟରେ ହିଁ ଘୂରୁଥିଲେ । ସୁସ୍ଥାବସ୍ଥା ଫେରିପାଇବା ମାତ୍ରେ, ସେମାନେ ତେଣୁ, ଗୁରୁଙ୍କୁ ଶୀଘ୍ର ସେ ସ୍ଥାନ ପରିତ୍ୟାଗ କରିବା ପାଇଁ ଅନୁରୋଧ କଲେ । ସେମାନଙ୍କର ପୂର୍ବଦିନର ଅନ୍ୱେଷଣ ଭିତରେ ସେମାନେ ଏକ ଜନହୀନ ଚୋଟା ଭିତରେ ଗୋଟିଏ କୂଅର ସନ୍ଧାନ ପାଇଥିଲେ । ସେମାନେ ବର୍ତ୍ତମାନ, ପଥକ୍ଲାନ୍ତ, ନିଦ୍ରାହୀନ ଓ କ୍ଷୁଧାରେ ଦୁର୍ବଳୀଭୂତ ଗୁରୁଙ୍କୁ ସେହି ସ୍ଥାନକୁ ନେଇଗଲେ । ଗୁରୁଜୀ କୂଅ ପାଖରେ ପହଞ୍ଚି ବହୁଦିନ ପରେ ପ୍ରଥମ ସ୍ନାନ ସମାପନ କଲେ । ଭାଗ୍ୟବଶତଃ ସେହି ଚୋଟାର ମାଲିକ ଥିଲା, ଗୁଲବା ନାମକ ଏକ ଶିଖ୍ । ସେ ଆନନ୍ଦପୁର ଠାରେ ଗୁରୁଜୀଙ୍କୁ ଭେଟିଥିଲା । ବର୍ତ୍ତମାନ ସ୍ୱୟଂ ଗୁରୁଜୀ ତା' ଚୋଟାରେ ଉପନୀତ ହୋଇ, ତା କୂଅରେ ଗାତ୍ର-ଧାବନ କଲେ ଜାଣି ସେ ନିଜକୁ କୃତକୃତ୍ୟ ମନେକଲା । ସେ ଘରୁ ମାଠିଆଏ ଉତ୍ତମ ସିଝା ଦୁଧ ଆଣି ଗୁରୁ ଓ ତାଙ୍କର ଶିଖ୍ ଅନୁଚରମାନଙ୍କୁ ପିଇବାକୁ ଦେଲା । ଏତିକ ଲଘୁଭୋଜନ ପରେ, ସେମାନେ ବହୁଦିନ ପରେ ଟିକିଏ ନିଶ୍ଚିନ୍ତରେ ଶୋଇ ଯିବାକୁ ବସିଲେ । ଚୋଟାର ମାଲିକ ଓ ତାର ଭାଇ, ସେମାନଙ୍କର ନିଦ୍ରିତାବସ୍ଥାରେ ଜଗି ରହିଲେ । ଅପରାହ୍ନ ସମୟକୁ ଏହି ବରେଣ୍ୟ ଅତିଥିମାନଙ୍କର ନିଦ୍ରାଭଙ୍ଗ ହୁଅନ୍ତେ, ଚୋଟାର ମାଲିକ ନିଜର ଗ୍ରାମ ଓ ଗୃହକୁ ନେଇଯାଇ, ନବନିର୍ମିତ ଦ୍ୱିତଳ କକ୍ଷରେ ସେମାନଙ୍କର ରହିବାର ବ୍ୟବସ୍ଥା କରିଦେଲା ।

କିନ୍ତୁ ଆଶ୍ରୟଦାତାର ଲୁଚେଇ ରଖିବାପାଇଁ ସମସ୍ତ ଚେଷ୍ଟା ସତ୍ତ୍ୱେ, ଅନ୍ତିଥିଗୁଡ଼ିକ କିଏ, ତାହା ଗ୍ରାମଭିତରେ ଅନ୍ୟମାନଙ୍କୁ ଅଛପା ରହିଲା ନାହିଁ । ବିଚ୍ଛିରି ଗୁଲବା ଏଥିରେ ଆତଙ୍କିତ ହୋଇ ଉଠିଲା ଏବଂ ନିଜର ଓ ନିଜ ପରିବାରର ଆତ୍ମରକ୍ଷାର୍ଥେ, ଗୁରୁ ତା ଘର ଛାଡ଼ି ଚାଲିଯିବାର ଏକ ସୁଯୋଗ ଖୋଜୁଥିଲା, ଯଦିଓ ସେ ତାହା ମୁହଁଖୋଲି, କହିପାରୁ ନ ଥିଲା । ଇତିମଧ୍ୟରେ ଘାନି ଖାଁ ଓ ନବୀ ଖାଁ ନାମକ ଦୁଇ ଜଣ ମୁସଲମାନ ଭକ୍ତ, ମୋଗଲ ଗୁପ୍ତଚରମାନଙ୍କ ଠାରୁ ଗୁରୁଙ୍କ ଜୀବନର ଆଶଂକା ଜାଣି, ଗୁରୁଙ୍କୁ ଗୁଲବାର ଘରେ ଭେଟି, ନିଜର ସେବା ସମର୍ପଣ କଲେ । ସେମାନେ ଥିଲେ, ଘୋଟକ ବ୍ୟବସାୟୀ ଏବଂ ସେହି ସୂତ୍ରରେ ବହୁ ଉତ୍ତମ ଘୋଟକ ଗୁରୁଙ୍କୁ ବିକି, ଆନନ୍ଦପୁରରେ ଗୁରୁଙ୍କର ଆତିଥ୍ୟ ଭୋଗ କରିଥିଲେ । ଗୁଲବାର ପ୍ରତିବେଶିନୀ ଏକ ଶିଖ୍ ମହିଳା ବହୁକାଳ ଧରି ସୂତା କାଟି ଓ ସେଥିରେ ବସ୍ତ୍ର ବୁଣି ରଖିଥିଲା ଏହି ଉଦ୍ଦେଶ୍ୟରେ ଯେ ଯଦି ଗୁରୁ ଗୋବିନ୍ଦ ସିଂ କେବେ ତା' ଗାଁରେ ପାଦ ପକେଇବେ, ତେବେ ସେ ଗୁରୁଂକୁ ତାହା ଉପହାର ଦେବ । ସେ ଏକ ବଡ଼ ଚଦରର ଆକାରରେ ସେହି ବସ୍ତ୍ର ଗୁରୁଂକ ଚରଣରେ ଭେଟିଦିଅନ୍ତେ ଘାନି ଓ ନବୀ ଖାଁଙ୍କ ପରାମର୍ଶରେ, ତାହା ମୁସଲମାନ ଫକୀରମାନଙ୍କ ପୋଷାକ ଅନୁକରଣରେ ନୀଳ ବର୍ଣ୍ଣରେ ରଞ୍ଜିତ କରାଯାଇ, ସେଥିରେ, ଗୁରୁଙ୍କ ପାଇଁ ନୂଆ ପୋଷାକ ତିଆରି ହେଲା । ଏହି ପୋଷାକ ପିନ୍ଧି, ଗୁରୁଜୀ ଏକ ପାଲିଙ୍କିରେ ଗୁଲବାର ଗ୍ରାମ ପରିତ୍ୟାଗ କଲେ । ଘାନି ଓ ନବୀ ପାଲିଙ୍କିର ଆଗପଟ ଟେକି ଚାଲିଲେ; ପଛରେ ରହିଲେ, ମାନ୍ ସିଂ ଓ ଧରମ ସିଂ । ଦୟା ସିଂ ଆଗେ ଆଗେ ଏକ ଚଅଁର ପରିଚାଳନା କରି ଚାଲିଲା । ପ୍ରଚାର କରାଗଲା ଯେ, ପାଲିଙ୍କିରେ 'ଉଚ୍ କାପୀର୍' ବିଜେ କରିଛନ୍ତି । ଏହା ଦ୍ୱୈତାର୍ଥ ବହନ କରୁଥିଲା । ଏକ ହେବ, 'ଏ ଜଣେ ଉଚ୍ଚ କୋଟିର ପୀର୍', ଅନ୍ୟଟି ହେବ, ଦକ୍ଷିଣ ପଞ୍ଜାବର ମୁସଲମାନମାନଙ୍କର ପବିତ୍ର ସ୍ଥାନ ଉଚ୍ର ପୀର ।

ଲାଲ୍ ନାମକ ଗ୍ରାମ ନିକଟରେ ଏହି ଯାତ୍ରୀ ଦଳ, ଗୁରୁଙ୍କୁ ଖୋଜୁଥିବା ଦଳେ ମୋଗଲ ସୈନ୍ୟଙ୍କୁ ଭେଟିଲେ । ଦଳପତି, ଯାତ୍ରୀମାନଙ୍କ କଥାରେ ଭୁଲି ନ ଯାଇ ସନ୍ଦେହ କଲେ ଓ ନାନା ପ୍ରଶ୍ନ ପଚାରିଲେ । ଶେଷରେ ଗୁରୁଜୀଙ୍କର 'ପୀରତ୍ୱ' ପ୍ରମାଣିତ କରିବା ପାଇଁ, ସେହି ଗ୍ରାମର କାଜି ପୀର ମହମ୍ମଦଙ୍କୁ ଡକାଇ ଆଣିଲେ । ସୌଭାଗ୍ୟବଶତଃ ସେହି ପୀର ମହମ୍ମଦ,

ଆନନ୍ଦପୁରଠାରେ ଥିଲେ ଗୁରୁ ଗୋବିନ୍ଦଙ୍କର ପାର୍ସି ଓ ଆରବୀର ଶିକ୍ଷକ । ସେ ମଧ୍ୟ ଥିଲେ ଏକ ଧର୍ମ-ପ୍ରାଣ ବ୍ୟକ୍ତି । ସେ ଜାଣିଥିଲେ ଯେ, ମୋଗଲ ଶାସକମାନେ ସେତେବେଳକୁ ଗୁରୁଙ୍କ ରକ୍ତ ପାଇଁ ପାଗଳ ପରି ହେଲେଣି । କିନ୍ତୁ ତାହା ପୀର ମହମ୍ମଦଙ୍କର ଇଚ୍ଛା-ବିରୁଦ୍ଧ ଥିବାରୁ, ସେ ବାଧ୍ୟରେ, ସ୍ଥାନୀୟ ମୋଗଲ ସୈନ୍ୟମାନଙ୍କୁ 'ଉଚ୍ ପୀର'ଙ୍କର ପୀରତ୍ୱର ସନ୍ଦେହ କରିଥିବା ଯୋଗୁଁ ଭର୍ତ୍ସନା କରିବାକୁ ଲାଗିଲେ । ଦଳପତି କାଜୀର କଥା ମାନି, ଭ୍ରାମ୍ୟମାଣ ପୀରଙ୍କୁ ପ୍ରଚୁର କ୍ଷମା-ଭିକ୍ଷା କରି, ଯିବାପାଇଁ ଛାଡ଼ି ଦେଲେ ।

ଏହିପରି ଭାବରେ ଯାତ୍ରାକରି ଗୁରୁ 'ହେବାର' ଗ୍ରାମରେ ପହଞ୍ଚିଲେ । ଏଠାରେ ଉଦାସୀ-ଗୋଷ୍ଠୀର ମହନ୍ତ କର୍ପାଲ୍ ଦାସ, ଯେ ଭଙ୍ଗାନି ଯୁଦ୍ଧରେ ନିଜର ବୀରତ୍ୱ ପ୍ରତିଷ୍ଠା କରି ସାରିଥିଲେ, ସେ ଅବସ୍ଥାନ କରୁଥିଲେ । ସେ ଗୁରୁ ଓ ତାଙ୍କର ସାଥୀମାନଙ୍କୁ ସମ୍ବର୍ଦ୍ଧନା କଲେ । ଗୁରୁଜୀ ଏହିଠାରେ ଘାନି ଓ ନବୀ ଖାଁଙ୍କୁ ସେମାନଙ୍କର ବିଶ୍ୱସ୍ତ ଓ କଷ୍ଟସାଧ୍ୟ ସେବା ପାଇଁ ସ୍ୱର୍ଣ୍ଣ-କଙ୍କଣ ପ୍ରଦାନ ଦ୍ୱାରା ପୁରସ୍କୃତ କରାଇଥିଲେ ଏବଂ ସକଳ ଶିଖ୍ ସେମାନଙ୍କୁ ଶ୍ରଦ୍ଧା ନିବେଦନ କରିବା ପାଇଁ ଏକ ହୁକୁମ୍‌ନାମା ମଧ୍ୟ ପ୍ରଚାର କରିଦେଲେ । ଖାଁ ଦ୍ୱୟଙ୍କର ଉତ୍ତରାଧିକାରୀମାନଙ୍କଠାରେ ଏ ହୁକୁମନାମା ଏପର୍ଯ୍ୟନ୍ତ ମଧ୍ୟ ଅଛି, ଏବଂ ଶିଖ୍ ସମ୍ପ୍ରଦାୟ ଏହି ପ୍ରମାଣପତ୍ରଟିକୁ ଦେଖିବାକୁ ଏବଂ ଖାଁ-ପରିବାର ପ୍ରତି ସେମାନଙ୍କର ଶ୍ରଦ୍ଧା ନିବେଦନ କରିବା ପାଇଁ ଏପର୍ଯ୍ୟନ୍ତ ବରାବର ଆଗ୍ରହ ଦେଖାଆନ୍ତି ।

କିନ୍ତୁ, ମଠ-ମହନ୍ତର ବିଳାସ-ଆଳସ୍ୟମୟ ଜୀବନ, ଇତିମଧ୍ୟରେ ସେଦିନର ଯୋଦ୍ଧା କର୍ପାଲ୍ ଦାସର ରକ୍ତରେ ଥିବା ସମସ୍ତ ଉଷ୍ମତାକୁ କାଢ଼ି ନେଇଥିଲା । ସାମ୍ରାଜ୍ୟର ଦୁସ୍‌ମନ ବୋଲି ଘୋଷିତ ଏକ ବ୍ୟକ୍ତିଙ୍କୁ ସେ ଆଶ୍ରୟ ଦେଇଛି ବୋଲି କାଳେ ଶାସକବର୍ଗ ଜାଣିଯିବେ, ଏହା ତାହା ମନରେ ଏକ ଆତଙ୍କ ସୃଷ୍ଟି କଲା । ଗୁରୁ ନିଜ ଆଶ୍ରୟଦାତାର ଅସୁସ୍ଥ-ଚିତ୍ତତା ସନ୍ଦେହ କରି, ଆପେ ଆପେ ହେବାର ଛାଡ଼ି ଗଲେ ଏବଂ ଆଶ୍ରୟ ନେଲେ, ରାଇକୋଟ ଗ୍ରାମର ମୁସଲମାନ ଗ୍ରାମ୍ୟାଧିକାରୀ, କଲ୍ହା ରାଇଙ୍କ ଘରେ । କଲ୍ହା ରାଇ, ଗୁରୁ ସିଂ ଗୋବିନ୍ଦଙ୍କ ପରି ଅତିଥି ପାଇ ନିଜକୁ କୃତକୃତ୍ୟ ମନେ କଲା । ସେ ମଧ୍ୟ ମାହି ନାମକ ନିଜର ଏକ ଭୃତ୍ୟକୁ ସିର୍‌ହିନ୍ଦ୍‌କୁ ପଠାଇ ଦେଲା, ସେଠାରୁ ଗୁରୁଙ୍କ ଜନନୀ ଓ ଦୁଇ ସାନପୁଅର ଖବର ଆଣି ଦେବାପାଇଁ । ମାହି ଯାହା ବୁଝି ଆସିଲା ସେଥିରେ ତାହାର ଦୁଃଖ ତ

ଅନନ୍ତରମାପ୍, ତେଣୁ ନିଜ ସ୍ୱାମୀ କହ୍ନା ସିଙ୍ଘ ବା ଗୁରୁ ଗୋବିନ୍ଦସିଂ, ତାହା ଆଗରେ ସେ ପାଟି ଫିଟାଇ ପାରିଲା ନାହିଁ । କିନ୍ତୁ ବାରମ୍ବାର ଅନୁରୁଦ୍ଧ ହୁଅନ୍ତେ ସେ ଶେଷରେ କାନ୍ଦିକାନ୍ଦି ଧୀରେ ଧୀରେ ସବୁ କଥା କହିଲା । ଗୁରୁ ଗୋବିନ୍ଦସିଂ ଶାନ୍ତ, ନିର୍ବିକାର ଭାବରେ ସେହି କରୁଣ କାହାଣୀ ଶୁଣିଗଲେ, କିନ୍ତୁ କହ୍ନା ସିଙ୍ଘ ସମ୍ଭାଳି ନପାରି ବିଳାପ କରିବାକୁ ଓ ଅତ୍ୟାଚାରୀମାନଙ୍କୁ ଅଭିଶାପ ଦେବାକୁ ଲାଗିଲେ । ବିଧାତା ତାଙ୍କୁ ଯାହା ଦେଇଥିଲେ, ସେ ତାଙ୍କୁ ତାହା ଫେରାଇ ଦେଇଛନ୍ତି, ଏହା କହି ଗୁରୁଜୀ ବିଧାତା ପ୍ରତି କୃତଜ୍ଞତାପୂର୍ଣ୍ଣ ପ୍ରାର୍ଥନା ଜଣାଇଲେ । ସେ କହ୍ନାସିଙ୍ଘଙ୍କୁ ମଧ୍ୟ ଅକାଳଙ୍କଠାରେ ବିଶ୍ୱାସ ରଖିବା ପାଇଁ ସାନ୍ତ୍ୱନା ଦେଲେ ଏବଂ ମାଲେର୍-କୋଟ୍ଲାର ନବାବ ତାଙ୍କ ଶିଶୁ ପୁତ୍ର ଦ୍ୱୟଙ୍କ ପାଇଁ ଯେଉଁ ସଦୟ ବ୍ୟବହାର ଦେଖାଇଥିଲେ, ସେଥିପାଇଁ ତାଙ୍କୁ ଓ ତାଙ୍କର ପରିବାରକୁ ଆଶୀର୍ବାଦ କଲେ । ନିଜର ଆଶ୍ରୟଦାତା କହ୍ନା ସିଙ୍ଘଙ୍କୁ ମଧ୍ୟ ସେ ସେହି ସ୍ଥାନ ଛାଡ଼ିବା ପୂର୍ବରୁ, କୃତଜ୍ଞତାର ଚିହ୍ନ ସ୍ୱରୂପ ଏକ ଖଡ଼୍ଗ ଉପହାର ଦେଇଥିଲେ । ସିଙ୍ଘ ଏହି ଉପହାରଟିକୁ ଏକ ସ୍ମାରକ ଓ ନିଜ ଗୃହର ଲକ୍ଷ୍ମୀ ସ୍ୱରୂପ ମନେ କରୁଥିଲେ । ସେହିପରି ମଧ୍ୟ ତାଙ୍କ ପୁଅ । କିନ୍ତୁ ତାଙ୍କ ନାତି ଥରେ, ଏକ ଶିକାରରେ ଏହାଦ୍ୱାରା ଏକ ହରିଣ ମାରିବାକୁ ଗଲାବେଳେ ନିଜେ ତା'ଦ୍ୱାରା ଆହତ ହେଲେ ଓ ସେହି ସ୍ଥାନରେ ପ୍ରାଣତ୍ୟାଗ କଲେ । ବ୍ରିଟିଶ ରାଜତ୍ୱ କାଳରେ ଲୁଧିଆନା ଜିଲ୍ଲାର ଇଂରେଜ ଡେପୁଟି- କମିଶନରଙ୍କୁ ସିଙ୍ଘ ପରିବାରର ତତ୍କାଳୀନ ଉତ୍ତରାଧିକାରୀ ସେହି ଖଡ଼୍ଗଟିକୁ ଉପହାର ଦେଲେ । ଇଂରେଜ କର୍ମଚାରୀ ତାକୁ ଲଣ୍ଡନକୁ ପଠାଇ ଦେଲେ । ତାହା ଏ ପର୍ଯ୍ୟନ୍ତ ବ୍ରିଟିଶ ମ୍ୟୁଜିୟମ୍‌ରେ ରକ୍ଷିତ ଅଛି ।

ଗୁରୁଙ୍କର ପରବର୍ତ୍ତୀ ଆଶ୍ରୟସ୍ଥଳ ହେଲା, ପୂର୍ବତନ ନାଭା ରାଜ୍ୟାନ୍ତର୍ଗତ ଦିନା ଗ୍ରାମ । ଏଠି ସେ ଏତେ ଦୀର୍ଘକାଳ ରହିଗଲେ ଯେ, ଯଥେଷ୍ଟ ସମୟ ମିଳିଲା ଗୁଡ଼ାଏ ଶିଖ୍ ସେଠି ଏକାଠି ହୋଇଯିବାକୁ । ସେହି ଗାଁରେ ଥିବା ତିନି ଭାଇ, ଶମିରା; ଲକ୍ଷ୍ମୀରା ଏବଂ ତଖତ୍‌ମଲ୍, ଏମାନଙ୍କର ନେତା ହୋଇ ଉଠିଲେ । ଏମାନେ ଥିଲେ ଗୁରୁ ହରି ଗୋବିନ୍ଦଙ୍କୁ ମୋଗଲମାନଙ୍କ ବିରୁଦ୍ଧରେ ସାହାଯ୍ୟ କରିଥିବା,ଯୋଧିସିଂଙ୍କର ବଂଶଧର । ଗୁରୁ ସେମାନଙ୍କୁ ସେମାନଙ୍କର ବିପଦ ସମ୍ବନ୍ଧରେ ସତର୍କିତ କରାଇଦେଲେ ମଧ୍ୟ, ସେମାନେ ଗୁରୁଙ୍କ ପାଇଁ କାମ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହେଲେ ।

ଘାନା ଗ୍ରାମରେ ଗୁରୁଙ୍କ ଅବସ୍ଥାନର ସମ୍ବାଦ ଧୀରେ ଧୀରେ ବ୍ୟାପନ୍ତେ, ଏକା ଏକା ବା ଗୋଷ୍ଠୀବଦ୍ଧ ହୋଇ ଶିଖ ସବୁ ସେଠାକୁ ଆସିବାକୁ ଲାଗିଲେ । କେତେକ ଆଉ ଘରକୁ ନଫେରି, ଗୁରୁଙ୍କ ସହବାସରେ ପରି-ମିଳିବା-ଦୁଃସାହସିକତା-ଜନିତ ଆସ୍ୱାଦର ଆଶାରେ ସେଇଠି ରହିଗଲେ । ଗୁରୁ ହରିଗୋବିନ୍ଦସିଂ, ଭାଇ ଭୂପା ନାମକ ବ୍ୟକ୍ତିଙ୍କୁ ଆଶୀର୍ବାଦ କରିଯାଇଥିଲେ ଯେ, ତାଙ୍କ ପରିବାରରେ ଶିଖ-ଧର୍ମ ଚିରକାଳ ବିରାଜିତ ରହିବ । ସେହି ଭାଇ ଭୂପାଙ୍କ ବଂଶଧର ପରମ ସିଂ ଓ ଧରମ ସିଂ ଗୁରୁଙ୍କୁ ...ରେ ଭେଟନ୍ତେ, ସେ ସାତିଶୟ ଆନନ୍ଦିତ ହୋଇ ଉଠିଲେ । ସେମାନେ ...ଙ୍କୁ ଏକ ଅଶ୍ୱ ଓ ଏକ ପୋଷାକ ଭେଟି ଦେଇଥିଲେ । ଗୁରୁ ସେସବୁକୁ ଆନନ୍ଦରେ ଗ୍ରହଣ କରି, ଆଶୀର୍ବାଦର ଚିହ୍ନ ସ୍ୱରୂପ ସେସବୁକୁ ଶମୀରଙ୍କୁ ପ୍ରଦାନ କରିଦେଲେ । "ବାଗ୍ ରିଆଁର ଭାଇ" ଭାବରେ ପରିଚିତ ପରମ ସିଂ ଓ ଧରମସିଂଙ୍କ ବଂଶଧରମାନେ ଏଯାବତ୍ ଧର୍ମଭାବ ଓ ପାଣ୍ଡିତ୍ୟର ଐତିହ୍ୟ ବହନ କରି ଆସିଥିବା ଏକ ବିଖ୍ୟାତ ଶିଖ୍ ପରିବାର ହୋଇ ରହି ଆସିଛନ୍ତି । ଏପରିକି ପାତିଆଲା, ଫରିଦ୍‌କୋଟ, ନାଭା, ଝିନ୍ଦ୍, କପୁରତାଲ୍ ଏବଂ ଖାଲ୍‌ସିଆ ପ୍ରଭୃତି ପ୍ରସିଦ୍ଧ ଶିଖ୍ ରାଜ-ପରିବାର ସବୁ, "ବାଗ୍ ରିଆଁର ଭାଇ"ମାନଙ୍କ ପ୍ରତି ଏପର୍ଯ୍ୟନ୍ତ ସଶ୍ରଦ୍ଧ ବ୍ୟବହାର କରି ଆସିଛନ୍ତି ଏବଂ ସେମାନଙ୍କର ଧର୍ମ ଓ ସାମାଜିକ ଅନୁଷ୍ଠାନମାନଙ୍କରେ 'ଭାଇ' ମାନଙ୍କୁ ପୌରୋହିତ୍ୟ ମଧ୍ୟ କରିବାକୁ ହୋଇଥାଏ ।

ଘାନାଠାରେହିଁ ଗୁରୁ ଗୋବିନ୍ଦ ସିଂ ଆଉରଙ୍ଗଜେବଙ୍କଠାରୁ ଏକ ଆପୋଷସୂଚକ ପତ୍ର ପାଇଲେ, ଯେଉଁଥିରେ ତାଙ୍କୁ ସମ୍ରାଟ୍ ଦାକ୍ଷିଣାତ୍ୟରେ ଯାଇ ଦେଖା କରିବାକୁ ଅନୁରୋଧ କରିଥିଲେ । ଏ ପତ୍ରଟି ଥିଲା ଗୁରୁ ଗୋବିନ୍ଦ ସିଂ, ଚମ୍କୁଆଁର ଯୁଦ୍ଧ ପରେ ଆଉରଙ୍ଗଜେବଙ୍କ ନିକଟକୁ ଲେଖିଥିବା ପତ୍ରର ଉତ୍ତର । ଏହି ପତ୍ରଟିର ଏକ ଅଂଶ ମାତ୍ର ନିକଟରେ ଲୋକଲୋଚନକୁ ଆସିଛି । ଆଉରଙ୍ଗଜେବ୍‌ଙ୍କଠାରୁ ଉତ୍ତର ପାଇବା ପରେ ଗୁରୁ ଗୋବିନ୍ଦ ସିଂ ତାଙ୍କୁ ଯେଉଁ ଦୀର୍ଘପତ୍ର ଦୀନାଠାରୁ ଲେଖିଥିଲେ, ତାହା ସମଗ୍ର ଭାବରେ 'ଦଶମ ଗ୍ରନ୍ଥ'ର ଅନ୍ତର୍ଗତ ହୋଇ ରହିଛି । ଗୁରୁଜୀ ଦୟା ସିଂ ଓ ଧରମସିଂଙ୍କ ଯୁଗ୍ମଦାୟିତ୍ୱରେ ଏ ପତ୍ରଟିକୁ ସୁଦୂର ଦାକ୍ଷିଣାତ୍ୟରେ ଅବସ୍ଥାନ କରୁଥିବା ଆଉରଙ୍ଗଜେବଙ୍କୁ ବ୍ୟକ୍ତିଗତ ଭାବରେ ଦେବାପାଇଁ ପଠାଇଥିଲେ ଏବଂ ବିଶୁଦ୍ଧ ଓ ଶକ୍ତିଶାଳୀ ପାର୍ଶି ପଦ୍ୟରେ ଲିଖିତ ଏହି ପତ୍ରଟିକୁ ଗୁରୁ

ଗୋବିନ୍ଦ ସିଂ ନାମ ଦେଇଥିଲେ 'ଜ୍ଫାର୍‌ନାମ' ବା "ବିଜୟ-ପତ୍ରିକା"। ୧୧୧ଟି ଶ୍ଳୋକ ସମ୍ବଳିତ ଏହି ପଦ୍ୟଟି ଯଥାର୍ଥନାମା। ଏହାର ବାଣୀ ମୂଳରୁ ଶେଷଯାଏଁ ଉଦାତ୍ତ। ଏହି ପତ୍ର ଗୁରୁ ଗୋବିନ୍ଦ ସିଂଙ୍କର ସାହସ ଓ ବିଶ୍ୱାସର ଦୃଢ଼ତା ଘୋଷିତ କରୁଛି। ଏହି ରଚନାଟିର କେନ୍ଦ୍ର ତଥ୍ୟ ହେଉଛି ଉଭୟ ବ୍ୟକ୍ତିଗତ ଓ ଗୋଷ୍ଠୀଗତ ବ୍ୟବହାରରେ ଉଚ୍ଚ ନୈତିକତାର ସ୍ଥାନ। ନୈତିକତା ଦୃଷ୍ଟିରୁ ଯାହା ହେୟ ତା'ହାକୁ ଏ ପତ୍ର ଦୃଢ଼ ନିନ୍ଦା କରିଥିଲା ଏବଂ ଯାହା ମାନ୍ୟ ତା'ରହିଁ ଉଚ୍ଚ ପ୍ରଶଂସା କରିଥିଲା। ଏଥିରେ ଗୁରୁଜୀ ଘୋଷଣା କରିଥିଲେ ଯେ, ଯେକୌଣସି ଯୁଦ୍ଧରେ ଜୟ, ସାମରିକ ସୁବିଧା ଦୃଷ୍ଟିରୁ ନ ହୋଇ, ଏହି ନୈତିକ ଦୃଷ୍ଟିକୋଣରୁହିଁ ବିଚାରିତ ହେବାର କଥା। ଆନନ୍ଦପୁର ଛାଡ଼ିବାର ଅବ୍ୟବହିତ ପୂର୍ବରୁ ମୋଗଲବାହିନୀ ଗୁରୁ ଓ ତାଙ୍କର ଅନୁଚରବର୍ଗଙ୍କ ପ୍ରତି କୌଣସି ପ୍ରକାର ଆକ୍ରମଣ କରିବେ ନାହିଁ ବୋଲି ନିର୍ଭର ପ୍ରତିଶ୍ରୁତି ଦେଇ, ଯେପରି ଅକୁଣ୍ଠିତ ଭାବରେ ତାହା ଭଗ୍ନ କଲେ, ସେଥିପାଇଁ ଗୁରୁଜୀ ସମ୍ରାଟଙ୍କୁ ବାରମ୍ବାର ସେହି ପତ୍ରରେ ଦମ୍ଭର ସହିତ ତିରସ୍କାର କରିଅଛନ୍ତି। ସେହି କାରଣରୁ, ଜାଫାରନାମାକୁ କୂଟମିତିର ଇତିହାସରେ ସବୁଠାରୁ ସ୍ପଷ୍ଟ ରଚନା ବୋଲି କହାଯାଇପାରେ। ଏହା ସ୍ପଷ୍ଟ ଭାବରେ ଉଭୟ ବ୍ୟକ୍ତିଗତ ଓ ରାଷ୍ଟ୍ରୀୟ ବ୍ୟାପାରରେ ନୈତିକତାକୁ ଶ୍ରେଷ୍ଠ ପ୍ରମାଣ ବୋଲି ଘୋଷଣା କରି ଉପାୟର ଶୁଦ୍ଧିତାକୁ, ଲକ୍ଷ୍ୟର ମହତ୍ତ୍ୱ ସହିତ ସମାନ ପ୍ରାଧାନ୍ୟ ଦେଇଛି। ଏହି ପତ୍ର ମଧ୍ୟ କହି ରଖିଛି ଯେ, ଜଣେ ସାଧାରଣ ନାଗରିକ ପକ୍ଷରେ ଯେପରି, ସେହିପରି ମଧ୍ୟ ରାଜା, ଶାସକ ବା ସମ୍ରାଟଙ୍କ ପକ୍ଷରେ, ବିଶୁଦ୍ଧ ସତ୍ୟ-କଥନ, ଏକାନ୍ତ ବିଧେୟ କର୍ମ।

ଏହି ପତ୍ରଟିର ଆରମ୍ଭ ହୋଇଛି, ଈଶ୍ୱରଙ୍କୁ ସମ୍ବୋଧନ କରି। ଗୁରୁଜୀଙ୍କର ଏହି ଈଶ୍ୱର, ଶାଶ୍ୱତ, ମଙ୍ଗଳମୟ, କରୁଣାବର୍ଷକ, କ୍ଷମାସାଗର, ରାଜରାଜ, ଦୀନବନ୍ଧୁ, ଧର୍ମସଂସ୍ଥାପକ, ଧର୍ମରକ୍ଷକ, ବାକ୍‌ର ଉତ୍ସ ଓ ଅନ୍ତଃଦୃଷ୍ଟି ପ୍ରଦର୍ଶକ ବୋଲିହିଁ ବର୍ଣ୍ଣିତ ହୋଇଅଛନ୍ତି। ଯାହାପରେ ପ୍ରତ୍ୟକ୍ଷ ଭାବରେ ସମ୍ରାଟଙ୍କୁ ସେ କହିଛନ୍ତି ଯେ "ତୁମେ ଏକେଶ୍ୱରଙ୍କୁ ସାକ୍ଷୀ ରଖି ଯେଉଁ ଶପଥ କରିଥିଲ, ସେଥିରେ ମୋର ଆଉ ବିଶ୍ୱାସ ନାହିଁ। × × ଯେ ତମ ଶପଥରେ ବିଶ୍ୱାସ କରେ, ତାର ବିନାଶ ସୁନିଶ୍ଚିତ। × × ତୁମେ ଈଶ୍ୱରଙ୍କୁ ଜାଣିନାହିଁ, କି ମହମ୍ମଦଙ୍କଠାରେ ତମର ବିଶ୍ୱାସ ନାହିଁ। କାରଣ

ଯାହାର ନିଜ ଧର୍ମରେ ବିଶ୍ୱାସ ଅଛି, ସେ କେବେହେଲେ ନିଜ ପ୍ରତିଶ୍ରୁତି ଭଙ୍ଗ କରିବନାହିଁ । × × ପଯ୍ଗମ୍ବର ଆଜି ଉପସ୍ଥିତ ଥିଲେ ଆଜି ତାଙ୍କ ଆଗରେ ତୁମର ବିଶ୍ୱାସଘାତକତା ପ୍ରମାଣ କରାଇବାହିଁ ମୋର ବିଶେଷ କର୍ମ ହୋଇଥାନ୍ତା । × × ପ୍ରତ୍ୟେକ୍ ଲୋକ ସତ୍ୟବାନ ହେବା ଉଚିତ, ଅନ୍ୟ ଉଦ୍ଦେଶ୍ୟ ମନେ ମନେ ରଖି, ଭିନ୍ନ ପ୍ରକାର କଥା କହିବା ଉଚିତ ନୁହେଁ ।”

ଗୁରୁ, ତା ପରେ କହିଛନ୍ତି ଯେ, ଚୁକ୍ତୁଆଁ ଉଠାରେ ସେ ତାଙ୍କର ଚାରିପୁଅଙ୍କୁ ହରାଇଲେ ମଧ୍ୟ ସେ ଯୁଦ୍ଧ ଚଳାଇ ଆସିଛନ୍ତି । ତା ପରେ ଆଉରଙ୍ଗଜେବ୍‌ଙ୍କୁ ସ୍ତୁତି କରିବା ଛଳରେ ତାଙ୍କର ଧର୍ମାନ୍ଧତା-ଜନିତ ଅଜ୍ଞତା ଦେଖାଇଦେବାରେ ସେ ପଶ୍ଚାତ୍‌ପଦ ହୋଇ ନାହାନ୍ତି । “ଉତ୍କୃଷ୍ଟ ଅଶ୍ୱାରୋହୀ ଓ ତରବାରି-ଚାଳକ ରାଜରାଜ ଆଉରଙ୍ଗଜେବ, ତୁମେ ଭାଗ୍ୟବାନ । ତୁମେ ବୁଦ୍ଧିମାନ ଓ ସୁନ୍ଦର । ତମେ ଏକାଧାରରେ ନିପୁଣ ଶାସକ ଓ ନିପୁଣ ଯୋଦ୍ଧା । ତମେ ତମର ସ୍ୱଧର୍ମୀମାନଙ୍କ ପ୍ରତି ସଦୟହୃଦୟ ହେଲେହେଁ, ବିଧର୍ମୀମାନଙ୍କର କାଳ । ରାଜ୍ୟ ଓ ଧନର ଦାତା ତମେ । ତମର ଦାକ୍ଷିଣ୍ୟ ପ୍ରଚୁର, କିନ୍ତୁ ଯୁଦ୍ଧରେ ତମେ ପର୍ବତ ପରି ଅଟଳ । ତମର ଆସନ ଓ ତମେ ଉଭୟେ ଆକାଶଚୁମ୍ବୀ । ତମେ ସାହାନ୍‌ସାହା ଓ ରାଜସିଂହାସନ-ମାନଙ୍କର ଅଳଂକାର । ତମେ ପୃଥିବୀର ରାଜା । ଏ ସବୁ ହୋଇ ମଧ୍ୟ, ଧର୍ମ ତମଠାରୁ ବହୁ ଦୂରରେ ।”

ଏହାର ତାତ୍ପର୍ଯ୍ୟ ଏହି ହେଲା ଯେ, ଯେଉଁସବୁ ଗୁଣ ବର୍ଣ୍ଣିତ ହେଲା, ସତ୍ୟ ଓ ମାନବିକତା ବ୍ୟତୀତ, ସେଗୁଡ଼ିକ ସମ୍ପୂର୍ଣ୍ଣ ମୂଲ୍ୟହୀନ । ଆଉରଙ୍ଗଜେବ୍ ଗୁରୁଙ୍କୁ ଦାକ୍ଷିଣାତ୍ୟ ଯାଇ ତାଙ୍କୁ ଦେଖା କରିବାର ଅନୁରୋଧର ଉତ୍ତରରେ, ଗୁରୁଜୀ ଲେଖି ପଠାଇଲେ ଯେ, ସମ୍ରାଟ ସେଠାରୁ ଅନତିଦୂରରେ ଥିବା କାଙ୍ଗାର ନାମକ ଗ୍ରାମରେ, ତାଙ୍କୁ ଦେଖା କରନ୍ତୁ । ସେ କଥା ଦେଲେ ଯେ, ସମ୍ରାଟଙ୍କ ଦଳବଳର ଯାତ୍ରା ସମ୍ପୂର୍ଣ୍ଣ ନିରାପଦ ରହିବ । କାରଣ ସମଗ୍ର ପଥ ଧରି ଯେଉଁ ଗୋଷ୍ଠୀର ଲୋକେ ରହିଛନ୍ତି, ସେମାନେ ଗୁରୁଙ୍କର ଆଦେଶାଧୀନ ।

---

# ଦ୍ୱାଦଶ ଅଧ୍ୟାୟ

## ଛିନ୍ନଭିନ୍ନମାନଙ୍କର ପୁନର୍ମିଳନ ।

ସିର୍‌ହିନ୍ଦର ସୁବାଦାର ଓ୍ୱାଜିର୍‌ ଖାଁ କ୍ରମେ ଯିନା ଗ୍ରାମରେ ଗୁରୁ ଗୋବିନ୍ଦ ସିଂଙ୍କ ଉପସ୍ଥିତି ତଥା ଶିଖ୍‌ମାନଙ୍କର ନବ ସମାଗମ ଏବଂ ତାଙ୍କର ଆଶ୍ରୟଦାତା ଶିମାର ତାଙ୍କୁ ସରକାର ହାତରେ ସମର୍ପଣ କରିବାରେ ଅନିଚ୍ଛାପ୍ରକାଶ ଶୁଣିପାରି, ଉତ୍କଣ୍ଠିତ ହୋଇ ଉଠିଲା ଏବଂ ବ୍ୟବସ୍ଥା ଆରମ୍ଭ କଲା, କିପରି, ପୁଣି ଏକ ବାହିନୀ ଯେନ ଯିନା ଆକ୍ରମଣ କରିବ ଓ ଗୁରୁଙ୍କୁ ବନ୍ଦୀ କରି ନେବ । ଗୁରୁ ଏହା ଜାଣିପାରି, ଯେଉଁ ଗ୍ରାମରେ ସେ ଏ ପ୍ରକାର ପ୍ରାଣପୂର୍ଣ୍ଣ ଆତିଥ୍ୟ ପାଇ ଆସିଥିଲେ, ତାଙ୍କର ଯୋଗୁଁ, ତାହା ଯୁଦ୍ଧଭୂମିରେ ପରିଣତ ହୋଇ ଧ୍ୱଂସର ସମ୍ମୁଖୀନ ହେବାର ନ ଚାହିଁ; ଶୀଘ୍ର ଜାଲ୍ଲାଲ୍‌ ନଦୀକୂଳସ୍ଥ ଭଗ୍‌ତା ନାମକ ଗ୍ରାମକୁ ଫେରିଗଲେ । ଏଠାରେ ସେ ପଂଚମ-ନାନକ ଗୁରୁ ଅର୍ଜ୍ଜୁନଙ୍କ ସମୟର ଜଣେ ସମ୍ମାନିତ ଶିଖ୍‌, ଭାଇ ବାହ୍ଲୋଙ୍କ ବଂଶଧରମାନଙ୍କୁ ଭେଟିଲେ । କୋଟକାପୁରାଠାରେ ସେ ବର୍ତ୍ତମାନ ଫରିଦ୍‌କୋଟ ରାଜବଂଶର ପୂର୍ବପୁରୁଷ କାପୁରସିଂଙ୍କୁ ଭେଟିଲେ । କାପୁରସିଂ ସ୍ୱୟଂ ଗୁରୁଙ୍କଠାରୁ ଅମୃତ-ଦୀକ୍ଷା ଗ୍ରହଣ କରି ଖାଲ୍‌ସାରେ ଯୋଗ ଦେଲେ । ଗୁରୁ ତାଙ୍କୁ ଢାଲ ଓ ଖଣ୍ଡା ଦେଇ ଆଶୀର୍ବାଦ କଲେ ଯାହାକି ଏପର୍ଯ୍ୟନ୍ତ ସେହି ବଂଶରେ ଭକ୍ତିର ସହିତ ରକ୍ଷିତ ଅଛି ।

ଖବର ଆସିଲା ଯେ, ଓ୍ୱାଜିର ଖାଁର ସୈନ୍ୟମାନେ ଗୁରୁଙ୍କ ପିଛା ଧରି ଧରି ଚାଲିଛନ୍ତି । ଗୁରୁ ଦକ୍ଷିଣ-ପୂର୍ବକୁ ଗତି କରି ଧିଲ୍‌ଓ୍ୱାନ୍‌ଠାରେ ପହଁଚିଲେ । ଗୁରୁଙ୍କର ଏହି ଗ୍ରାମରେ ଅବସ୍ଥିତି ଅତ୍ୟନ୍ତ ବ୍ୟଂଜନାପୂର୍ଣ୍ଣ ହୋଇ ଉଠିଲା । ଗୁରୁ-ଅର୍ଜୁନଙ୍କର ସବା ବଡ଼ଭାଇ ପ୍ରିଥିଚାନ୍ଦ ନିଜର ଏକ ସ୍ୱତନ୍ତ୍ର ଧର୍ମ-ମଣ୍ଡଳୀ ଗଢ଼ିବାପାଇଁ ତାଙ୍କଠାରୁ ଭିନ୍ନ ହୋଇ ଯାଇଥିଲେ । ଧିଲଓ୍ୱାନଠାରେ ପ୍ରିଥିଚାନ୍ଦଙ୍କ ବଂଶଧରମାନେ ନାନକଜୀ, ଗୁରୁ ଅର୍ଜୁନ ଓ ଗୁରୁ ଗୋବିନ୍ଦ ସିଂଙ୍କର ମୌଳିକ ଧର୍ମ ମଣ୍ଡଳୀରେ ପୁଣି ଆସି ମିଶି-ଗଲେ । ମୁଖ୍ୟ ବଂଶଧର ବାବାକଉଲ୍‌ ସେହି ଧିଲ୍‌ଓ୍ୱାନ ଗ୍ରାମରେହିଁ ବାସ କରୁଥିଲେ । ସେ ଗୁରୁ ଗୋବିନ୍ଦ ସିଂଙ୍କୁ ଦର୍ଶନ କରି ଏକ ନୂତନ

ପୋଷାକ ଭେଟି ଦେଲେ । ଗୁରୁଜୀ ଏପର୍ଯ୍ୟନ୍ତ ଯେଉଁ ନୀଳ ବସ୍ତ୍ରପରିଧାନ କରି ଆସିଥିଲେ, ତାହା ପରିତ୍ୟାଗ କରି ବାବାକଉଲଙ୍କ ଉପହୃତ ପୋଷାକ ପରିଧାନ କଲେ । କିନ୍ତୁ ସେହି ନୀଳ ପୋଷାକର କିଛି ଅଂଶ ସେ ସାଇତି ରଖିଥିଲେ ଯାହାଠାରୁ ଅକାଲୀ ବା ନାହାଙ୍ଗମାନଙ୍କର ନୀଳ ଇଉନିଫର୍ମର ଉଦ୍ଭବ । ଧିଲ୍‌ୱାନାଠାରେ ବାବା କଉଲଙ୍କ ନାତି ଅମୃତ-ମନ୍ତ୍ରରେ ଦୀକ୍ଷିତ ହୁଅନ୍ତେ ପ୍ରିଥି ସିଂଙ୍କର ଓ ନାନକଜୀଙ୍କର ପରିବାର ଭିତରେ ଜାତ-ହୋଇଥିବା ଭିନ୍ନତା ଲୋପ ପାଇଗଲା ।

ଗୁରୁ, ଧିଲ୍‌ୱାନାଠାରେ ବେଶି ଦିନ ନରହି, କୋଠା ପ୍ରୀଥିଚନ୍ଦ (ପରେ କୋଠା ଗୁରୁ ନାମରେ ପରିଚିତ) ଆଡ଼କୁ ଯାତ୍ରା କଲେ ଏବଂ ସେହି ଗ୍ରାମ ନିକଟସ୍ଥ ଜଙ୍ଗଲରେ ଡେରା ପକାଇଲେ । ଦକ୍ଷିଣ-ପୂର୍ବ ପଂଜାବରେ ଗୁରୁଙ୍କର ଏହି ଯାତ୍ରା ଓ ଅବସ୍ଥାନ ଅବସରରେ ସେ ଆନନ୍ଦପୁର ଛାଡ଼ିବା ପରେ ଶିଖ୍‌ମାନେ ଯେଉଁ ଚିତ୍ତ-କେନ୍ଦ୍ର ହରାଇ ବସିଥିଲେ, ତାହା ଯେପରି ଫେରି ଆସିଥିଲା । ବହୁ ଲୋକ ନବ ଧର୍ମରେ ଦୀକ୍ଷିତ ହେଲେ ଏବଂ ପୁଣି ଏକା ବିଶ୍ୱସ୍ତ ଓ ସାହସିକ ଗୋଷ୍ଠୀ ଠିଆହେଲେ, ଯେଉଁମାନେ ପ୍ରସ୍ତୁତ ରହିଲେ ଗୁରୁଙ୍କ ପାଇଁ ମୃତ୍ୟୁ ବରଣ କରିବା ପାଇଁ । ଶିଖ୍ ସଂପ୍ରଦାୟ ପୁଣି ଯେପରି ତାର ସଂହତି, ଗତିଶୀଳତା ଓ କର୍ମଠତା ଫେରି ପାଇବ, ତାର ବ୍ୟବସ୍ଥାମାନ ଆରମ୍ଭ ହୋଇଗଲା ।

ଗୁରୁ ବର୍ତ୍ତମାନ ଜାଣିଲେ ଯେ ୱାଜିର ଖାଁ ସହିତ ଯୁଦ୍ଧ ପୁଣି ନିକଟ ହୋଇ ଆସିଲା । ଲଢେଇ ପାଇଁ ସେ ଏପରି ଏକ ସ୍ଥାନ ଖୋଜିଲେ, ଯେଉଁଠି ପ୍ରଚୁର ପାଣି ସହଜରେ ମିଳିବ । ସେହି ବାଲୁକାମୟ ମରୁଦେଶରେ ଖିଦ୍ରାନା ବୋଲି ଏକ ଜାଗା ଏହି ଲକ୍ଷ୍ୟ ପୂରଣ କରୁଛି ବୋଲି ଗୁରୁଙ୍କୁ କୁହାଯିବାରୁ, ଗୁରୁ, ଶିଖ୍‌ମାନଙ୍କ ସହିତ ସ୍ଥାନଟି ନିଜେ ଦେଖି ଆସିବାକୁ ଗଲେ । ଜଇଟୁ ଗ୍ରାମରେ ସେ ବ୍ରାର-ଗୋଷ୍ଠୀର ଦଳପତି କାପୁର ସିଂକୁ ପୁଣି ଭେଟିଲେ ଏବଂ କାପୁର ସିଂ ଗୁରୁଙ୍କୁ ଖାନା ବୋଲି ଗୋଟିଏ ଲୋକ ଦେଲେ, ଯେ ତାଙ୍କୁ ଖିଦ୍ରାନାକୁ ବାଟ କଢ଼ାଇନେବ ।

ଆନନ୍ଦପୁରରେ ଯେଉଁ ଶିଖ୍‌ମାନେ ଗୁରୁଙ୍କୁ ପରିତ୍ୟାଗ କରି ଚାଲି ଆସିଥିଲେ, ସେମାନେ ପରେ ଅନୁତପ୍ତ ହେଲେ ସେଥିପାଇଁ ଏବଂ ସେମାନଙ୍କର ଅନୁତାପ ତୀବ୍ର ହୋଇଉଠିଲା, ଯେତେବେଳେ, ଗୁରୁ ସେହି-ମାନଙ୍କ ଗାଁ ସବୁ ଦେଇ ଖିଦ୍ରାନା ଆଡ଼କୁ ଗତି କଲେ । ସେମାନେ ଗୁରୁଙ୍କୁ

ବିପଦ ସମୟରେ ଘୁଞ୍ଚି ପଳାଇ ଆସିଥିବା ଯୋଗୁଁ ନିଜ ଲୋକଙ୍କ ଦ୍ୱାରା ଭର୍ତ୍ସିତ ହୋଇଥିଲେ । ଏପରିକି ତାଙ୍କର ସ୍ତ୍ରୀ ଲୋକେ ସେମାନଙ୍କୁ ସେମାନଙ୍କର କାପୁରୁଷତା ପାଇଁ ତିରସ୍କାର କରି ଲାଗିଲେ ଏବଂ ସେମାନଙ୍କ ବଦଳରେ ପୁରୁଷ ପୋଷାକ ପିନ୍ଧି ଗୁରୁଙ୍କ ସକାଶେ ଯୁଦ୍ଧଭୂମିକୁ ଯିବାକୁ ଇଚ୍ଛା ପ୍ରକାଶ କଲେ । ଧର୍ମ ପାଇଁ ଗୁରୁ ନିଜର ଚିରୋଟିଯାକ ପୁଅଙ୍କୁ ଯେ ହରାଇ ସାରିଛନ୍ତି, ଏ ସମ୍ବାଦ ଶିଖ ସମାଜରେ ଆସ୍ତେ ଆସ୍ତେ ପ୍ରଚାରିତ ହୁଅନ୍ତେ, ସମସ୍ତଙ୍କ ପ୍ରାଣରେ ତାଂକ ପାଇଁ ଯୁଗପତ୍ ବେଦନା ଓ ସହାନୁଭୂତି ଉଦ୍‌ବେଳିତ ହୋଇ ଉଠିଲା । ଅମୃତସହର ନିକଟସ୍ଥ ପଟ୍ଟି ନାମକ ସ୍ଥାନରେ ମାଝାର ଶିଖମାନେ ଏକାଠି ହୋଇ ଏହା ସ୍ଥିର, ଗୋଠଛଡ଼ା ପଳାତକମାନେ ସେମାନଙ୍କର ଗୁରୁଙ୍କ ପ୍ରତି ବିଶ୍ୱାସଘାତକତାର କିଭଳି ପ୍ରାୟଶ୍ଚିତ୍ତ କରି ପାରିବେ ଏବଂ କି କି ଉପାୟରେ ଗୁରୁଙ୍କୁ ସବୁ ପ୍ରକାର ସାହାଯ୍ୟ ଦିଆ ଯାଇ ପାରିବ ତାହାତ ବିଚାର କରି ବସିଲେ । କିନ୍ତୁ ସେଠି ମଧ୍ୟ, ଯେତେ କ୍ଷୀଣ ହେଉପଛେ, ସେହି ପୁଏ ଯୁକ୍ତି—ବିରାଟ ମୋଗଲ ଶକ୍ତି ବିରୁଦ୍ଧରେ ଠିଆ ହେବାର ପ୍ରଚେଷ୍ଟା ବିଫଳ —ଶୁଣାଗଲା । କିନ୍ତୁ ଶେଷରେ ସିଦ୍ଧାନ୍ତ ହେଲା ଯେ ସେମାନେ ସେମାନଙ୍କର କେତେକ ପ୍ରତିନିଧିଙ୍କୁ ଗୁରୁଂକୁ ଦେଖା କରିବାକୁ ପଠାଇବେ । ଦଳେ ତେଣୁ ଗୁରୁଂକୁ ଭେଟିବା ପାଇଁ ମାଲ୍ୱା ଚାଲିଲେ; ଯାଉଡରେ କେତେକ ଯେପରି ଥିଲେ ନିଜର ରକ୍ତ ଦେଇ ବିଶ୍ୱାସଘାତକତାଜନିତ ଗୁରୁ ପାପକୁ ଧୋଇବା ପାଇଁ, ସେହିପରି ଆଉ କେତେକ ଥିଲେ ଅସମ୍ଭବ ପ୍ରଚେଷ୍ଟାରୁ ଗୁରୁଂକୁ କ୍ଷାନ୍ତ କରାଇବା ପାଇଁ । ବାଟରେ ବହୁ ଶିଖ୍ ସେମାନଙ୍କ ସହିତ ମିଶିଲେ । ଖିଦ୍ରା ନା ପହଁଚିଲା ବେଳକୁ ଦଳଟି ବେଶ୍ ପରିପୁଷ୍ଟ ହୋଇ ଉଠିଥିଲା ।

ଏହି ଅପରାଧୀ ଶିଖମାନେ ଗୁରୁଙ୍କୁ ପୁନର୍ଦର୍ଶନ କରିବା ବେଳକୁ ଦୃଶ୍ୟ ଅତ୍ୟନ୍ତ କରୁଣ ହୋଇ ଉଠିଲା । ସାଶ୍ରୁନେତ୍ର, ସ୍ପନ୍ଦନ-କୁଣ୍ଠିତ-କଣ୍ଠ ଓ ଅର୍ଦ୍ଧସ୍ଫୁଟ ବଚନରେ ହିଁ ସେମାନେ 'ଓ୍ୱାହି ଗୁରୁଜୀକା ଖାଲ୍‌ସା, ଓ୍ୱାହି ଗୁରୁଜୀକା ଫତେ', ଉଚ୍ଚାରଣ କରି ଲାଗିଲେ । ପ୍ରତ୍ୟେକ ହୃଦୟ ଭାବାବେଗରେ ବ୍ୟାକୁଳ ହୋଇ ଉଠିଲା, ପ୍ରତ୍ୟେକର ନୟନ ଲୋତକାପ୍ଲୁତ ହୋଇ ଉଠିଲା, କେତେକାଂଶରେ ଗୁରୁଙ୍କର ମର୍ମସ୍ପର୍ଶୀ ପାରିବାରିକ ଦୁଃଖ ଓ ବ୍ୟକ୍ତିଗତ ଦୁର୍ବିପାକ ପରେ ତାଙ୍କୁ ପୁଣି ଦେଖିବାର ଆନନ୍ଦାତିଶଯ୍ୟ ଯୋଗୁଁ ଏବଂ କେତେକାଂଶରେ ପଶ୍ଚାତ୍କୃତ ଅପରାଧ ଯୋଗୁଁ । ଜଣକ ପରେ

ପରେ ଜଣେ ଶିଖ୍, ଗୁରୁଙ୍କ ଭକ୍ତ ଜଣେଇବାପାଇଁ ଯାଆନ୍ତି ଗୁରୁ ପ୍ରତ୍ୟେକଙ୍କୁ ସ୍ନେହ ଓ ପ୍ରୀତିର ସହିତ କଥାଭାଷା କଲେ ।

ତେଣେ ମୋଗଲ ଅଭିଯାନ କିନ୍ତୁ ଗୁରୁଙ୍କ ପିଛା ଧରି ଧାଇଁଛି । ନଷ୍ଟ କରିବାକୁ ସମୟ ନାହିଁ । ଶତ୍ରୁର ସମ୍ମୁଖୀନ ହେବାକୁ ହେବ । କିନ୍ତୁ ସଦ୍ୟ ପହଞ୍ଚିଥିବା ଦଳେ ଶିଖ୍ ମତବ୍ୟକ୍ତ କଲେ ଯେ, ଗୁରୁ ସେ ଅବଧି ବହୁ ସମୟ ନଷ୍ଟ କରି ସାରିଲେଣି ଏବଂ ବର୍ତ୍ତମାନ ଚରିବରରେ ମୋଗଲ ସୈନ୍ୟମାନଙ୍କର ସମ୍ମୁଖୀନ ହେବା ଦୁଃଖ ଓ ପରାଜୟକୁ ଡାକି ଆଣିବା ଛଡ଼ା ଆଉ କିଛି ହେବନାହିଁ । ସେମାନେ ବରଂ ମୋଗଲ ଶାସକ ଓ ଗୁରୁଙ୍କ ଭିତରେ ଏକ ଆପୋଷ-ମୀମାଂସା ପାଇଁ ଚେଷ୍ଟା କରିବେ ବୋଲି ପ୍ରସ୍ତାବ ଦେଲେ । ଗୁରୁ ଏ ପ୍ରସ୍ତାବରେ ବିଶେଷ କୌତୁକ-ବୋଧ କଲେ ଏବଂ କହିଲେ ଯେ ଯଦି ଅତ୍ୟାଚାରୀ ଓ ଅସହିଷ୍ଣୁତା ସହିତ ଆପୋଷ-ମୀମାଂସା ହେବାଟା ବିଧେୟ ବିବେଚିତ ହୋଇଥାନ୍ତା; ତେବେ ଗୁରୁ ଅର୍ଜୁନ ଅକାରଣ କଷ୍ଟ ବରଣ କରି ନଥାନ୍ତେ, କି ଗୁରୁ ତେଗ୍-ବାହାଦୁର ନିଜର ମୂଲ୍ୟବାନ ମସ୍ତକ ହରାଇ ନଥାନ୍ତେ । ସେ ଯେଉଁ କେତେକ ଶିଖ୍, ନ୍ୟାୟ ଓ ସ୍ୱାଧୀନତା ପାଇଁ ଆକ୍ରମଣକାରୀମାନଙ୍କର ସମ୍ମୁଖୀନ ହେବାପାଇଁ ପ୍ରସ୍ତୁତ, କେବଳ ସେହିମାନଙ୍କୁ ତାଙ୍କ ସାଥି ଧରିବାକୁ ଆହ୍ୱାନ ଦେଲେ । ଏହାହିଁ ଘୋଷଣା କରି, ଗୁରୁ ଖିଦ୍ରାନା ଆଡ଼କୁ ଯାତ୍ରା କଲେ । ଅଧିକାଂଶ ଶିଖ୍ ତାଙ୍କର ଅନୁଗମନ କଲେ, କିନ୍ତୁ କେତେକ ରହିଗଲେ, ଘରକୁ ଫେରିବା ପାଇଁ ।

କୋଶକୋଶର ବିରାଟ ମରୁଭୂମି ଭିତରେ ଖିଦ୍ରାନାର ଜଳାଧାରଟି ଥିଲା ଜଳର ଏକମାତ୍ର ଆଶ୍ରୟ । କିନ୍ତୁ ୧୭୦୬ ସାଲ୍‌ର ଏପ୍ରିଲ୍ ମାସରେ ଯେତେବେଳେ ଶିଖ୍‌ମାନେ ମୋଗଲ ସୈନ୍ୟ ଆସିପିବା ଆଗରୁ ତାକୁ ଅଧିକାର କରିବାକୁ ଯାଆନ୍ତି, ସେତେବେଳକୁ ତାହା ପ୍ରାୟ ଶୁଖିଲା ପଡ଼ି-ଥିବାର ଦେଖାଗଲା । ଗୁରୁ ଓ ତାଙ୍କ ସହିତ ଚାଲିଥିବା ଆଗୁଆଦଳ ତେଣୁ ଏକମାଇଲ ଦୂରର ଏକ ବାଲିବନ୍ଧ ଉପରେ ତମ୍ବୁ ପକାଇଲେ । ପଛରେ ଆସୁଥିବା ଶିଖ୍‌ମାନେ ପୋଖରୀଠାରେ ରହିଲେ ଏବଂ ମୋଗଲ ସୈନ୍ୟଙ୍କୁ ଗୁରୁଙ୍କୁ ଖୋଜିବା ବାଟରୁ ଉଦଭ୍ରାନ୍ତ କରିବା ପାଇଁ ଏବଂ ନିଜର ସଂଖ୍ୟା ସମ୍ପର୍କରେ ଶତ୍ରୁମାନଙ୍କ ମନରେ ଅତିରଞ୍ଜିତ ଧାରଣା ସୃଷ୍ଟି କରିବା ପାଇଁ

ଯେମାନେ ନଜର ଶେଯ ଓ ଘୋଡ଼ାହେଲା ଆହ ମେଲାଇ ଗଛମାନଂକରେ ଟାଙ୍ଗିଦେଲେ । ଫଳରେ ସେ ସ୍ଥାନଟି ଦୂରକୁ ତମ୍ବୁର ଏକ ଜଙ୍ଗଲ ପରି ଦେଖାଗଲା । ଏପର୍ଯ୍ୟନ୍ତ ସେ ସ୍ଥାନଟି 'ଗୁରୁଦ୍ୱାର ତମ୍ବୁ ସାହେବ' ନାମରେ ପରିଚିତ ।

ଓ୍ୱାଜର ଖାଁର ସୈନ୍ୟମାନେ ସେହି କଳ୍ପିତ ତମ୍ବୁ-ଜଙ୍ଗଲ ଆଡ଼କୁ ଗୁଳିଚଲେ । ଶେଷରେ ଦୌଡ଼ି ଦୌଡ଼ି ପଳାତକ ଗୁରୁ ଗୋବିନ୍ଦସିଂ ଗତ୍ୟନ୍ତର ନ ଦେଖି ଯେ ଆଉପଟେ ବାଧହୋଇ ଶେଷ ଯୁଦ୍ଧ ପାଇଁ ଠିଆ ହୋଇଛନ୍ତି, ମୋଗଲ ସୈନ୍ୟମାନଙ୍କ ବକ୍ଷରେ ଏହାହିଁ ଉନ୍ମାଦନା ସୃଷ୍ଟି କଲା ଏବଂ ସେମାନେ ଇସ୍‌ଲାମ୍‌ର ସମର-ମନ୍ତ୍ର ସବୁ ଉଚ୍ଚାରଣ କରି ପ୍ରାଣମୂର୍ଚ୍ଛା ଆକ୍ରମଣ ଆରମ୍ଭ କରି ଦେଲେ । ଅଳ୍ପ ସଂଖ୍ୟକ ହେଲେହେଁ, ଶିଖ୍‌ବୀରମାନେ କିନ୍ତୁ ଅଟଳ ହୋଇ ଠିଆ ରହିଲେ ଓ ଧୀର ଭାବରେ ସେହି ବିପୁଳ ଶତ୍ରୁର ସମ୍ମୁଖୀନ ହେଲେ । ଯେଉଁମାନେ ଆନନ୍ଦପୁରରୁ ପଳାୟନ କରି ପରେ ଅନୁତପ୍ତ ହୋଇଥିଲେ ଏବଂ ଏବେ ଆସି ଗୁରୁଙ୍କ ସହିତ ଯୋଗ ଦେଇଥିଲେ, ସେମାନଂକର ଏକମାତ୍ର ଅଭିଳାଷ ହେଲା ଯେ, ସେମାନେ ଗୁରୁଙ୍କ ପାଇଁ ବୀର ଭାବରେ ପ୍ରାଣ ଦେଇ, ପୂର୍ବ ପାପକୁ କ୍ଷାଳନ କରିବେ । ସଂଖ୍ୟାରେ ଅଳ୍ପ ହେଲେହେଁ ଶିଖ୍‌ମାନଂକର ଏହି ପ୍ରକାର ପ୍ରାଣମୂର୍ଚ୍ଛା ବନ୍ଧ-ପରିକରତା ଦେଖି ମୋଗଲ ସୈନ୍ୟ କ୍ରମେ ନୈରାଶ୍ୟ ଅନୁଭବ କଲେ । ଗୁରୁଗୋବିନ୍ଦ ସିଂ ଓ ତାଙ୍କର ସାଥିମାନେ ଅନ୍ୟପଟ୍ଟ ଏକ ଉଚ୍ଚ ସ୍ଥାନରୁ ସେମାନଙ୍କ ଉପରେ କ୍ରମାଗତ ଶରବୃଷ୍ଟି କରି ଚାଲନ୍ତେ, ମୋଗଲ ବାହିନୀରେ ବିଶୃଙ୍ଖଳା ସୃଷ୍ଟି ହେଲା । ଓ୍ୱାଜର ଖାଁ ସ୍ୱୟଂ ଉପସ୍ଥିତ ଥିଲେ ଏବଂ ସୈନ୍ୟ-ମାନଙ୍କର ଦୃଢ଼ତାର ଅଭାବ ଦେଖି ସେମାନଙ୍କୁ ଖାଲୁତାର ଅପବାଦ ଦେଇ ତିରସ୍କାର କଲେ । ସେ ସେମାନଙ୍କର ସଂଖ୍ୟାଗରିଷ୍ଠତା ଓ ଶତ୍ରୁର ସ୍ୱଳ୍ପତା ଦେଖାଇ ଜେହାଦ୍ ପାଇଁ ଉତ୍ସାହିତ କରି ଲାଗିଲେ । ଫଳରେ ଉଭୟ ପଟ ଘମାଘୋଟ ଲଢ଼େଇ ଆରମ୍ଭ ହୋଇଗଲା । କେହି ପଛଘୁଂଚା ଦେବାକୁ ନାରାଜ । କିନ୍ତୁ କ୍ଳାନ୍ତି, ପିପାସା ଏବଂ ପୃଷ୍ଠ ଦେଶରୁ ଗୁରୁ ଓ ତାଙ୍କ ସହଚର-ମାନଙ୍କର ଅବିରାମ ଶରବୃଷ୍ଟି କ୍ରମେ ଅସହ୍ୟ ହୋଇ ଉଠନ୍ତେ, ମୋଗଲ ସୈନ୍ୟମାନେ ପଳାଇଯିବାକୁ ବାଧ୍ୟ ହେଲେ ।

ଲଢ଼େଇ ଶେଷରେ ଗୁରୁ ଯୁଦ୍ଧ କ୍ଷେତ୍ରକୁ ଆସି ଦେଖନ୍ତି ତାଙ୍କର ଶିଖ୍‌ମାନଙ୍କ ଭିତରୁ ପ୍ରାୟ ସମସ୍ତେ ମୃତ କହିଲେ ଚଳେ । ସେ ସେମାନଙ୍କର ପ୍ରତ୍ୟେକର ରକ୍ତାକ୍ତ ମୁଖକୁ ପୋଛିଦେଇ, ସେମାନଙ୍କର ଅସାଧାରଣ ସାହସ ପାଇଁ ପ୍ରଶଂସା କରି, ଆଶୀର୍ବାଦ କଲେ । ଗିଚାଉଲିର ମୋହନ ସିଂ ନାମକ ଶିଖ ରଣଭୂମିରେ ଶାୟିତ ରହି ଶେଷନିଶ୍ୱାସ ସହିତ ଅପେକ୍ଷା କରି ରହିଥିଲା, ମରିବା ପୂର୍ବରୁ ସେ କପରି ଗୁରୁଙ୍କର ଦର୍ଶନ ପାଇବ । ଗୁରୁ ଯେତେବେଳେ ତା ପାଖକୁ ଆସିଲେ ସେ ତାର ଦୁର୍ବଳ ହାତ ଦୁଇଟିକୁ ଏକାଠି କରି ତାଙ୍କୁ ଅଭିବାଦନ କଲା । ତାର ଅନ୍ତରର ନିବିଡ଼ତମ ଆଶା ଏପରି ଭାବରେ ପୂର୍ଣ୍ଣ ହୋଇଗଲା ଜାଣି, ତାର ଚକ୍ଷୁ ଆନନ୍ଦରେ ଉଦ୍ଦୀପ୍ତ ହୋଇ ଉଠିଲା । ଗୁରୁ ସସ୍ନେହରେ ତା'କପାଳରେ ହାତ ରଖି ତାକୁ ପ୍ରତିଶ୍ରୁତି ଦେଲେ ଯେ, ତାର ଯେକୌଣସି ଅନ୍ତିମ ଇଚ୍ଛା ସେ ପୂରଣ କରିବେ । ମୋହନସିଂ ଉତ୍ତର ଦେଲା, ସେ ତ ଶେଷ ମୁହୂର୍ତ୍ତରେ ଗୁରୁଂକ ଦର୍ଶନ ଲାଭ କରିଛି । ଆଉ କି ଇଚ୍ଛା ଥାଇପାରେ ତାର ? କିନ୍ତୁ ଗୁରୁ ଧରି ବସନ୍ତେ, ମୋହନ ସିଂ କହିଲା ଯେ, ସେ ସ୍ୱର୍ଗ ବା ମୁକ୍ତି କିଛିହିଁ କାମନା କରେ ନାହିଁ, କିନ୍ତୁ ଗୁରୁ ଯଦି ତାକୁ ଓ ତାର କେତେକ ସାଥୀ ଯେଉଁମାନେ 'ଧର୍ମତ୍ୟାଗ କଲୁ' ବୋଲି ହାତରେ ଲେଖିଦେଇ ଆନନ୍ଦପୁର ଛାଡ଼ି ଚାଲି ଆସିଥିଲେ, ସେମାନଙ୍କୁ କ୍ଷମା କରିଛନ୍ତି, ତେବେ ଗୁରୁଙ୍କୁ ଅନୁରୋଧ, ସେହି ଲେଖାଟିକୁ ସେ ଯେପରି ନଷ୍ଟ କରି ଦିଅନ୍ତି । ଗୁରୁ, ଗତ କେତେଦିନର ବହୁ କଷ୍ଟ ନିର୍ଯ୍ୟାତନାଭିତରେ ମଧ୍ୟ, ସେହି ଲେଖାଟିକୁ ସାଥିରେ ଧରି-ଥାନ୍ତି । ବର୍ତ୍ତମାନ ସେହି ଲେଖାଟିକୁ ଚିରି ଦିଆଗଲା ଏବଂ ମୋହନ ସିଂ ପରମଶାନ୍ତିରେ ଶେଷନିଶ୍ୱାସ ତ୍ୟାଗ କରି ଚାଲିଗଲେ ।

ଗୁରୁ, ନିହତ ଶିଖମାନଙ୍କୁ ଗଣି ଦେଖିଲେ ଯେ, ସେମାନଙ୍କ ଭିତରେ ଆନନ୍ଦପୁରରୁ ପଳାଇ ଆସିଥିବାଙ୍କ ସଂଖ୍ୟା ଥିଲା ଚାଳିଶ, ଯେଉଁମାନେ କି ଶହୀଦର ରକ୍ତରେହିଁ ନିଜର ଅପରାଧକୁ ଧୋଇ ଦେଇଗଲେ । ଗୁରୁଜୀ ସେମାନଙ୍କୁ "ମୁକ୍ତ ଚାଳିଶୀ" ବୋଲି ଘୋଷଣାକଲେ । ଏହି 'ମୁକ୍ତ ଚାଳିଶୀ'ଙ୍କର ସ୍ମୃତି ଶିଖ୍‌ମାନଙ୍କର ଦୈନନ୍ଦିନ ପ୍ରାର୍ଥନାର ଅଂଶ ହୋଇ ପଡ଼ିଛି ଏବଂ ସେମାନଙ୍କର ବୀରଗାଥା, ଲକ୍ଷ ଲକ୍ଷ ଧର୍ମପ୍ରାଣ ଶିଖମାନଙ୍କ ମୁଖରେ ଦିନରେ ଅନ୍ତତଃ ଦୁଇଥର କରି ଉଚ୍ଚାରିତ ହେଉଛି । ସେହିମାନଙ୍କ ବିଶେଷଣାନୁଯାୟୀ ଖିଦ୍ରାନାର ନୂତନ ନାମ ହେଲା 'ମୁକ୍ତସର' । ପ୍ରତିବର୍ଷ ଏଠାରେ ଭିନ୍ନ

ହୋଇ ଯାଇଥିବା ସେହି ଭାଇମାନଙ୍କର ପୁନର୍ମିଳନ ଏକ ବଡ଼ ମେଳା ଦେଇ ସୂଚିତ ହୋଇଥାଏ । ଦେଶର ଗୃହଆଡ଼ୁ ଯାତ୍ରୀ ଆସନ୍ତି ଏବଂ ଏହି ବୀରମାନଙ୍କର କୀର୍ତ୍ତିର ପୁନରାଲୋଚନା କରି, ନିଜର ବିଶ୍ୱାସକୁ ଦୃଢ଼ୀଭୂତ କରନ୍ତି ।

## ବୀରାଙ୍ଗନା ମାଇଭାଗୋ

ଖିଦ୍ରାନା ଯୁଦ୍ଧରେ ଏକମାତ୍ର ଶିଖ୍ ଯେ ଜୀବନ୍ତ ରହିଥିଲା, ସେ ହେଉଛି ମାଇ ଭାଗୋ ନାମକ ଏକ ଶିଖ୍ ମହିଳା, ଯେ କି ଅପରାଧୀ ଶିଖ୍‌ମାନଙ୍କୁ, ଗୁରୁଙ୍କୁ ଭେଟକରାଇ ସେମାନଙ୍କ ପାଇଁ କ୍ଷମା ଆଣିବା ଉଦ୍ଦେଶ୍ୟରେ, ସେମାନଙ୍କର ନେତ୍ରୀ ହୋଇ ସାହସର ସହିତ ବାହାରି ଆସିଥିଲା । ଯୁଦ୍ଧ ଲାଗିଯାନ୍ତେ, ସେ ମଧ୍ୟ ଉତ୍ସାହର ସହିତ ଲଢ଼େଇରେ ଯୋଗଦେଲା ଓ ଗୋଟାଏ ବର୍ଚ୍ଛା ସାହାଯ୍ୟରେ ବହୁ ଶତ୍ରୁଙ୍କୁ ଧରାଶାୟୀ କରି ପାରିଥିଲା । ସେ କିନ୍ତୁ ଶତ୍ରୁ ପକ୍ଷରୁ ଆଘାତ ପାଇ ରଣଭୂମିରେ ପଡ଼ି ରହିଥିଲା ଏବଂ ଗୁରୁଙ୍କ ଦର୍ଶନରେ ଏବଂ ଗୁରୁ ଅପରାଧୀମାନଙ୍କୁ କ୍ଷମା ଦେବାର ଶୁଣି, ଆଘାତ ସତ୍ତ୍ୱେ ଅତ୍ୟନ୍ତ ଆନନ୍ଦିତ ହେଲା, ଏହା ଭାବି ଯେ, ତାହାର ଯାତ୍ରା ଏକାନ୍ତ ସଫଳ ହୋଇ ଉଠିଛି ।

ସେଠାରେ ବହୁତ ଶୁଖିଲା ମାଲ ଗଛ ଥିଲା । ଗୁରୁଙ୍କ ଆଦେଶରେ ସେ ସବୁକୁ ଏକତ୍ର କରି ମୃତ ଶିଖ୍‌ମାନଙ୍କର ଅନ୍ତ୍ୟେଷ୍ଟି କ୍ରିୟାପାଇଁ ଏକ ବଡ଼ ଚିତା ପ୍ରସ୍ତୁତ କରାଗଲା । ଗୁରୁ ନିଜେ ସେହି ଚିତାରେ ଅଗ୍ନି-ସଂଯୋଜନ କରି କହିଲେ—"ଏହି ବୀରଗଣ ମୁକ୍ତ ହୋଇ, ସନ୍ଥଜନମାନଙ୍କର ଅବସ୍ଥାପ୍ରାପ୍ତ ହେଲେ ।"

ତା'ପରେ କୀର୍ତ୍ତନ-ସୋହିଲା ବା ଶିଖ୍ ଅନ୍ତ୍ୟେଷ୍ଟି ବାଣୀ ଉଚ୍ଚାରିତ ହେଲା ଏବଂ କରା-ପ୍ରସାଦ ବିତରିତ ହେଲା ।

---

# ତ୍ରୟୋଦଶ ଅଧ୍ୟାୟ

## ଦାମଦମାରେ ବିଶ୍ରାମ

ଗୁରୁ ଗୋବିନ୍ଦ ସିଂ ଖିଦ୍ରାନ୍ନା ଛାଡ଼ି ଶିଖଧର୍ମର ପ୍ରସାର ପାଇଁ ମାଲା ଅଞ୍ଚଳରେ ବୁଲି ବାହାରିଲେ । ଏ ଅଞ୍ଚଳଟି ଦୁର୍ଦ୍ଧର୍ଷ ଓ ସ୍ପଷ୍ଟବାକ୍ ଜାଟ୍ ମାନଙ୍କଦ୍ୱାରା ଅଧ୍ୟୁଷିତ । ଗୁରୁ ହରଗୋବିନ୍ଦ, ଗୁରୁ ହରରାଇ ଏବଂ ଗୁରୁ ତେଗ୍ ବାହାଦୁରଙ୍କ ଅମଳରୁହିଁ ଏହି ଜାଟ୍ମାନେ ଶିଖ୍ଧର୍ମ ଦ୍ୱାରା ପ୍ରଭାବିତ ହୋଇ ସାରିଥିଲେ । ଏହି ସରଳ, ସ୍ୱାଧୀନତାପ୍ରିୟ ଗୋଷ୍ଠୀଗୁଡ଼ିକୁ ଆଡ଼ମ୍ବର-ଓ-ତତ୍ତ୍ୱଭାରାକ୍ରାନ୍ତ ବ୍ରାହ୍ମଣ୍ୟ ଧର୍ମ ଅପେକ୍ଷା, ସରଳ, ଉଦାର, କୁସଂସ୍କାରମୁକ୍ତ ନୂତନ ଶିଖ୍ଧର୍ମ ଅଧିକ ରୁଚିକର ବୋଧ ହୋଇଥିଲା । ଲାହୋର ଓ ସିର୍‌ହିନ୍ଦ୍‌ରେ ବାସ କରୁଥିବା ମୋଗଲ ସୁବାଦାରମାନଙ୍କଠାରୁ ଏମାନେ ଦୂରରେ ଥିବାରୁ, ଏମାନଙ୍କର ଧର୍ମ-ସାଧନା ମଧ୍ୟ ସେପରି ବ୍ୟାହତ ହେଉ ନଥିଲା, ଯେପରି ହେଉଥିଲା, ନିକଟରେ ଥିବା ସ୍ଥାନଗୁଡ଼ିକରେ । ଫଳରେ ସେମାନେ ଗୁରୁ ଓ ତାଙ୍କର ଧର୍ମକୁ ନିର୍ଦ୍ଧିକ ନିର୍ଭରତାରେ ଅଭିନନ୍ଦିତ କରିଥିଲେ । ସେମାନେ ଶାସକମାନଙ୍କଠାରୁ କୌଣସି ଆଶଂକାକୁ ଚିତ୍ତରେ ସ୍ଥାନ ନ ଦେଇ, ଗୁରୁଙ୍କଠାରୁ ଉପଦେଶ ପାଇବାର ସୁଯୋଗକୁ ସୌଭାଗ୍ୟ ମନେ କରି, ଗୁରୁ ଓ ତାଙ୍କର ସହଗାମୀମାନଙ୍କୁ ପରିପୂର୍ଣ୍ଣ ଆତିଥ୍ୟ ଦେଲେ ।

ନାନା ଗ୍ରାମ ଦେଇ ଏବଂ ବହୁ ଶୁଷ୍କ ଆତ୍ମାକୁ ବିଶ୍ୱାସର ନବରସରେ ଆର୍ଦ୍ର କରି, ଗୁରୁ ଗୋବିନ୍ଦସିଂ ଭାଟିଣ୍ଡା ଓ କୋଟକାପୁର ମଧ୍ୟସ୍ଥ ଲଖି ଜଙ୍ଗଲରେ ପହଞ୍ଚିଲେ । ସେ ସ୍ଥାନର ନିକାଞ୍ଚନତା ଓ ସ୍ୱଚ୍ଛନ୍ଦ ବସବାସର ସୁବିଧାରେ ମୁଗ୍ଧ ହୋଇ ଗୁରୁ ସେଠାରେ କିଛିକାଳ କଟାଇବା ପାଇଁ ସ୍ଥିର କଲେ । ଫଳରେ ସେହି ନିର୍ଜନ ଜଙ୍ଗଲହିଁ ପରମେଶ୍ୱରଙ୍କ ମହିମାସ୍ତବ ଓ ଯାତ୍ରୀଦଳର ଗମନାଗମନ ଓ କଥୋପକଥନରେ ଜୀବନ୍ତ ହୋଇ ଉଠିଲା । ଏତେ ଦୁର୍ଘଟଣା ଓ ଦୁର୍ବିପାକ ପରେ ଏବଂ ବହୁ କାଳର ବିଚ୍ଛେଦ ପରେ ଗୁରୁଙ୍କର ପୁନର୍ଦର୍ଶନ ପାଇଁ ଲୋକଙ୍କ ଧାରା ଚାଲିଲା । କିନ୍ତୁ କେହି ହେଲେ ଗୁରୁଙ୍କ ବଦନମଣ୍ଡଳରେ ତାଂକର କରୁଣ, ମର୍ମଦହନ ଅଭିଜ୍ଞତା ସବୁର ସାମାନ୍ୟତମ ଛାୟା ଦେଖିବାକୁ ପାଇନଥିଲେ । ସେ ପ୍ରତ୍ୟେକ ଭକ୍ତଙ୍କୁ ପ୍ରଶାନ୍ତ, ଉଦାର, ମଧୁର ଭାବରେ ଦର୍ଶନ ଦେଇଥିଲେ ।

ପରିବ୍ୟାପ୍ତ ସେହି ମରୁ ଅଞ୍ଚଳରେ, ଗୁରୁଙ୍କ ଅବସ୍ଥାନ ହେତୁହିଁ ଲଖି ଜଙ୍ଗଲ ଏକ ମରୁଦ୍ୟାନରେ ପରିଣତ ହୋଇ ଉଠିଲା । ଆନନ୍ଦପୁର ପରି ଏଠି ମଧ୍ୟ ଅଧିକ ଅର୍ଥପୂର୍ଣ୍ଣ ଓ ଅଧିକ ଉତ୍ସାହଶୀଳ ଜୀବନ ପାଇଁ ପ୍ରେରଣା ଫୁଟି ବାହାରିଲା । ଏହି ନବଜୀବନରେ ଅଂଶ ଗ୍ରହଣ ପାଇଁ ଅଧିକରୁ ଅଧିକ ଲୋକ ଆସିବାକୁ ଲାଗିଲେ । ଅମୃତ-ମନ୍ତ୍ରରେ ଦୀକ୍ଷିତ କରି ଗୁରୁ ସେ ସମସ୍ତଙ୍କୁ ନିଜର କରିନେଲେ । ଫଳରେ ଏହି ଅଂଚଳରେ ଶିଖ୍‌ଧର୍ମ ଏପରି ଦୃଢ଼ଭାବରେ ପ୍ରତିଷ୍ଠିତ ହୋଇଗଲା ଯେ, ଏହି ଅଞ୍ଚଳର ଶିଖ୍‌ମାନେ ପରେ ବିଧର୍ମୀ ଅତ୍ୟାଚାରୀଙ୍କୁ ଖଣ୍ଡବିଖଣ୍ଡିତ କରିବାରେ ଏବଂ ଶିଖ୍ ଧର୍ମ-ମଣ୍ଡଳୀକୁ ଶିଖ୍-ରାଷ୍ଟ୍ରରେ ପରିଣତ କରିବାରେ, ଏକ ଗୌରବମୟ ଐତିହାସିକ ଭୂମିକା ଗ୍ରହଣ କରିପାରି ଥିଲେ । ଏହି ଲଖି ଜଙ୍ଗଲରେ ହିଁ ଇବ୍ରାହିମ୍ ନାମକ ମୁସଲମାନ ଫକୀର, ଗୁରୁଙ୍କ ଠାରୁ ଦୀକ୍ଷା ଗ୍ରହଣ କରି ନବ ଧର୍ମଭୁକ୍ତ ହେଲେ । ଗୁରୁ ତାର ନୂତନ ନାମ ରଖିଲେ ଆଜମେର୍ ସିଂ । ତା'ର ଏକମାତ୍ର ପ୍ରତିଜ୍ଞା ହେଲା ଯେ, ସେ କୌଣସିହେଲେ ଗୁରୁଙ୍କ ସଙ୍ଗ ଛାଡ଼ିବ ନାହିଁ । ସେ କ୍ରମେ ଗୁରୁଙ୍କର ନିକଟତମ ସହଚର ହୋଇ ଉଠିଲା ।

ଲଖି ଜଙ୍ଗଲରୁ ବାହାରି ଓ ବାଟରେ ବହୁ ଗ୍ରାମରେ ଶିଖ୍‌ମାନଙ୍କୁ ଭେଟି, ଗୁରୁ ତାଲ୍‌ବନ୍ଧି ସାବୋ ନାମକ ଗ୍ରାମର ଉପକଣ୍ଠରେ ପହଞ୍ଚିଲେ । ସେଠାରେ ସେ ଏକ ବାଲିବନ୍ତକୁ ସମତଳ କରାଇ ସେଇଠି, ନିଜର ସାମରିକ ପୋଷାକ ଖୋଲିଦେଇ, ବିଶ୍ରାମ କଲେ । ଯାହା'ପରେଠାରୁ ସେ ସ୍ଥାନ ଦମଦମା-ସାହେବ, ବା ବିଶ୍ରାମସ୍ଥଳ ନାମରେ ପରିଚିତ ହୋଇ ଉଠିଛି । ଗୁରୁ ଏଠାରେ ନ'ମାସ କଟାଇଥିଲେ । ଆନନ୍ଦପୁର ଛାଡ଼ିଲା ପରେ, ଗୁରୁ ଏହିଠାରେ ହିଁ ବିନାବାଧାରେ ଏତେ ଦୀର୍ଘକାଳ ଅବସ୍ଥାନ କରି ପାରିଥିଲେ ।

ସେହି ଗ୍ରାମର ଚୌଧୁରୀ, ଭାଇଦାଲ୍ଲା, ଗୁରୁଙ୍କର ଭକ୍ତ ଥିଲା ଏବଂ ସେ ଗୁରୁଙ୍କୁ ଦେଖା କରି ଆସି ଅନୁରୋଧ କଲା ଯେ, ସେ ତା'ର ଦୁର୍ଗରେ ଯାଇ ଅବସ୍ଥାନ କରନ୍ତୁ । ଗୁରୁ କିନ୍ତୁ ବାହାରେ ରହିବାକୁ ହିଁ ପସନ୍ଦ କଲେ । ଅବଶ୍ୟ ଗୁରୁ, ଡାଲ୍ଲାର ଦୁର୍ଗରେ ପାଞ୍ଚଦିନ ପର୍ଯ୍ୟନ୍ତ ଆତିଥ୍ୟ ଭୋଗ କରିବାକୁ ରାଜିହେଲେ । ତା' ପରେ ଗୁରୁଙ୍କର ନିଜର ଖନ୍ଦା ଆରମ୍ଭ ହେଲା । କିନ୍ତୁ

ଗୁରୁ ବା ତାଙ୍କ ଦଳର ଯେ କୌଣସି ଲୋକର ଯେ କୌଣସି ଇଚ୍ଛା ବା ଅଭାବ ପୂରଣ ପାଇଁ ଦାଲ୍‌ଲା ପ୍ରସ୍ତୁତ ରହିଲା ଓ ତାହାକୁ ନିଜର ସୌଭାଗ୍ୟ ମନେ କଲା ।

ଦିନେ ଦାଲ୍ଲା ଗୁରୁଙ୍କ ନିକଟରେ ବସି, ଗୁରୁଙ୍କର ବିପଦବେଳେ ସେ ଯେ କିଛି ହେଲେ ସାହାଯ୍ୟ କରି ପାରିନାହିଁ, ସେଥିପାଇଁ ଅନୁଶୋଚନା ପ୍ରକାଶ କରୁଥିଲା । ସେ କହିଲା ଯେ, ସେ ସାମାନ୍ୟ ଭାବରେ ସମ୍ବାଦ ପାଇଥିଲେ, ତା'ର ଶକ୍ତିଶାଳୀ ଓ ସୁଶିକ୍ଷିତ ପାଇକମାନଙ୍କୁ ନିଶ୍ଚୟ ଗୁରୁଙ୍କ ସାହାଯ୍ୟ ପାଇଁ ପଠାଇଥାନ୍ତା । ଦାଲ୍ଲା ନିଜ ଲୋକଙ୍କର ପାଇକପଣିଆ ବର୍ଣ୍ଣନା କରୁ କରୁ, ଲାହୋରରୁ ଦିଜଣ ଶିଖ୍ ଆସି ସେଠାରେ ପହଞ୍ଚିଗଲେ । ସେମାନେ ଏକ ସୁନ୍ଦର ବନ୍ଧୁକ ଗୁରୁଙ୍କୁ ଉପହାର ଦେବାପାଇଁ ଆଣିଥିଲେ । ଗୁରୁ ଅସ୍ତ୍ରଟିକୁ ଭାରି ପସନ୍ଦ କରି, ସାଙ୍ଗେ ସାଙ୍ଗେ ତାର ପରୀକ୍ଷା ହେଉ ବୋଲି କହିଲେ ଏବଂ ଦାଲ୍ଲାକୁ ପଚାରିଲେ, ଏହି ବନ୍ଧୁକର ଗୁଳିର ଦୌଡ଼ ପରୀକ୍ଷା ପାଇଁ ସେ ତାର ଦୁଇଟି ପାଇକଙ୍କୁ ଲକ୍ଷ୍ୟ ହେବାପାଇଁ ଆଣି ପାରିବ କି । କିନ୍ତୁ ଗୁରୁଙ୍କର ଏ ପ୍ରକାର ଖିଆଲି ଆଦେଶ ପାଳିବା ପାଇଁ ଦାଲ୍ଲା ତାର କୌଣସି ବି'ଷ୍ଟା ଲୋକକୁ ମଙ୍ଗେଇ ପାରିବନାହିଁ ବୋଲି କହିଲା । ଏହି ସମୟରେ ଗୁରୁ ଦେଖିଲେ ଯେ, ତଥାକଥିତ ନିମ୍ନବର୍ଣ୍ଣର ବାପ ଓ ପୁଅ, ଦୁଇ ଶିଖ୍, ଅନତିଦୂରରେ ପାଗ ବାନ୍ଧୁଛନ୍ତି । ଗୁରୁ ସେମାନଙ୍କୁ ବନ୍ଧୁକର ଲକ୍ଷ୍ୟ ହେବାକୁ ଖବର ଦିଅନ୍ତେ, ସେହି ବାପ-ପୁଅ, ମୁଣ୍ଡରେ ପଗଡ଼ି ଭିଡ଼ି ଭିଡ଼ି ଦୌଡ଼ିଲେ ଏବଂ ଆଗ ଗୁଳି ତା'ଉପରେ ବାଜୁ, ଏହି ଆକାଂକ୍ଷାରେ, ବାପ ଓ ପୁଅ ଦୁହେଁ ନିଜ ନିଜର ଦେହକୁ ଲମ୍ବେଇବାକୁ ଲାଗିଲେ । ବର୍ତ୍ତମାନ ଦାଲ୍ଲା ଲଜ୍ଜିତବୋଧ କଲା । ଗୁରୁ ତାକୁ କହିଲେ ଯେ, ସେ ଦାଲ୍ଲା ବା ତାର ଲୋକଙ୍କର ବୀରତ୍ୱକୁ କ୍ଷୁର୍ଣ୍ଣ କରିବା ଉଦ୍ଦେଶ୍ୟରେ ଏପରି ଆଦେଶ ଦେଇ ନ ଥିଲେ । କିନ୍ତୁ ଯେଉଁ ଶିଖ୍, ଅମୃତ-ମନ୍ତ୍ରରେ ଦୀକ୍ଷିତ ସେ ସମ୍ପୂର୍ଣ୍ଣ ଭୟହୀନ ଏବଂ ଗୁରୁ ଓ ଧର୍ମ ପାଇଁ ସମ୍ପୂର୍ଣ୍ଣ ଭାବରେ ନ୍ୟସ୍ତ-ଜୀବନ ହେବା ଯେ ଉଚିତ, ସେ ତାହାହିଁ ପ୍ରମାଣିତ କରିବାକୁ ଚାହିଁଥିଲେ ।

ଯା'ପରେ ଦାଲ୍ଲା ନିଜେ ଅମୃତ-ମନ୍ତ୍ରରେ ଦୀକ୍ଷିତ ହେଲା ଓ ତାର ନୂତନ ନାମ ହେଲା, ଦଲ୍ ସିଂ ।

ସୁବାଦାର ଓ୍ୟାଜର ଖାଁ ଇତମଧ୍ୟରେ ଦଲ୍ ସିଂକୁ ଖବର ପଠେଇଲା ଯେ, ସେ ତାର ଅତଥିକୁ ଯଦ ସର୍କାରଙ୍କଠାରେ ସମର୍ପଣ କର ନ ଦଏ; ତେବେ ତାକୁ କଠିନ ଦଣ୍ଡର ସମ୍ମୁଖୀନ ହେବାକୁ ପଡ଼ିବ । ଦଲ୍ ସିଂ ଉତ୍ତର ଦେଲା ଯେ, ସୁବାଦାର ତା'ଠାରୁ ଏ ପ୍ରକାର ପାପକର୍ମ ଯେପର ଆଶା ନ କରନ୍ତୁ; ସେ ଗୁରୁଙ୍କୁ ଅନ୍ୟ ହାତକୁ ବଢ଼ାଇ ଦେବ କ'ଣ ତାର ବର୍ତ୍ତମାନ ଏକମାତ୍ର ଅଭିଳାଷ ହେଲା ଗୁରୁଙ୍କ ସହବାସ । ଯଦ ଓ୍ୱାଜର ଖାଁ ଆକ୍ରମଣ କରେ ତେବେ ସେମାନେ ସମସ୍ତେ ଜଙ୍ଗଲକୁ ଚାଲିଯିବେ, ଯେଉଁଠି ଓ୍ୱାଜରର ସୈନ୍ୟମାନେ ପୁଣି ଖିଦ୍ରାନାର ଅଭିଜ୍ଞତା ଫେର ପାଇବେ ।

ଗୁରୁ, ଦଲ୍ ସିଂର ସଶ୍ରଦ୍ଧ ନର୍ଭୀକତା ପସନ୍ଦ କଲେହେଁ, ତାର ଗ୍ରାମ ଓ ଜୀବନକୁ ବପନ୍ନ କରବାକୁ ଚାହିଁଲେ ନାହିଁ । ଅଦୂରରେ ଭଟିନ୍ଦାଠାରେ ଗୋଟିଏ ପ୍ରାଚୀନ ଦୁର୍ଗ ଥିଲା । ଗୁରୁ ତାଲବାଣ୍ଡୀସାବୋଠାରୁ ଯାଇ ଭଟିନ୍ଦା ଦୁର୍ଗରେହିଁ କିଛିକାଳ କଟାଇବା ସ୍ଥିର କଲେ । ସେତେବେଳେ ଜଣେ ଗୁଣ୍ଡା ଶ୍ରେଣୀର ଲୋକ ଭଟିନ୍ଦାର ପ୍ରାଚୀନ ଦୁର୍ଗଟିକୁ ଅଧିକାର କର ବ୍ୟରପଟ ଲୋକଙ୍କୁ ଉତ୍ପୀଡ଼ିତ କର ରଖିଥିଲା । ଗୁରୁ ସେ ଲୋକଟାକୁ ସେଠାରୁ ବତାଡ଼ିତ କର, ସେ ଅଞ୍ଚଳଟାକୁ ବଶ୍ୱିଷିକା-ମୁକ୍ତ କଲେ ଏବଂ ଦୁର୍ଗର ଉପର ତଳର ଏକ କକ୍ଷ ନଜ ବାସ ପାଇଁ ସ୍ଥିର କର, ଦଳବଳ ନେଇ ଘଣ୍ଟିନ୍ଦା ଅଧିକାର କଲେ । ପାଞ୍ଚ ଆଲ୍ଲ ସ୍ତୋତ୍ରବାହ୍ମଣୀ, ପରେ ସେଠାରେ ଗୁରୁଗୋବନ୍ଦ ସିଂଙ୍କ ଏ ଅବସ୍ଥାନର ସ୍ମାରକରୂପେ ଏକ ଗୁରୁଦ୍ୱାର ତିଆରି କରାଇଛନ୍ତି ।

ଭଟିନ୍ଦାରେ କିଛିକାଳ କଟାଇବା ପରେ ଏବଂ ବାଟରେ ଭିନ୍ନ ଭିନ୍ନ ଗ୍ରାମରେ ଅଳ୍ପ ଅଳ୍ପ ସମୟ କଟାଇ, ଗୁରୁ ପୁଣି ଫେର ଆସିଲେ ଦମଦମାକୁ । ସେତେବେଳକୁ ଦିଲ୍ଲୀରୁ ତାଙ୍କର ଦୁଇ ପତ୍ନୀ ମାତା ସୁନ୍ଦରୀ ଏବଂ ମାତା ସାହିବ୍ କଉର୍, ଦମଦମାରେ ଆସି ପହଞ୍ଚ ଯାଇଥିଲେ । ଚାରଟିଯାକ ପୁଅଙ୍କର କରୁଣ ଓ ନଷ୍ଠୁର ମରଣ ସ୍ମରଣ କର କର ଦୁଇ ଜନନୀ ବଳାପ କରବାକୁ ଲାଗିଲେ । ଗୁରୁ ସେମାନଙ୍କୁ ସାନ୍ତ୍ୱନା ଦେଇ କହିଥିଲେ ଯେ, ଯେଉଁମାନେ ବୀରୋଚିତ ମୃତ୍ୟୁବରଣ କରଛନ୍ତି,

ସେମାନଙ୍କପାଇଁ ଦୁଃଖ କରିବାର କି ଅଛି ? ସେମାନେ ଯେ ବର୍ତ୍ତମାନ ଜାତିର ଜୀବନର ଅଧିକାରୀ । ସେମାନଙ୍କର ବୀରତ୍ୱ ଯୁଗ ଯୁଗ ଧରି ସ୍ମୃତ ଓ ଅନୁକୃତ ହେବ । ଗୁରୁ କହିଲେ—"ଗୃହଜଣ ପ୍ରାଣ ଦେଲେ କି ଦୁଃଖ ? ସେହି ଗୃହଜଣ ପ୍ରାଣଦେଲେ, ଯେପରିକି ଏହି ସହସ୍ର ଶିଖ ବଞ୍ଚିରହିବେ ।"

ଏହିପରି ଭାବରେ ଦାମଦମା ଏକ ମିଳନକ୍ଷେତ୍ର ହୋଇ ଉଠିଲା । ଆନନ୍ଦପୁର ଦରବାର ସଙ୍ଗେ ସମ୍ପୃକ୍ତ ବହୁ ଭାଟ କବି ଓ ପୁରାତନ ଦରବାରୀ, ସେମାନଙ୍କର ପ୍ରିୟ ପ୍ରଭୁଙ୍କୁ ଖୋଜି ଖୋଜି ସେଠାକୁ ଆସିଲେ ଏବଂ ଏତେଦିନ ପରେ ତାଙ୍କର ଦର୍ଶନ ଲାଭ କରି, ସେମାନଙ୍କର ସକଳ ପଥଶ୍ରମ ଓ କଷ୍ଟ ଶେଷପୂର୍ଣ୍ଣ ଭାବରେ ପୁରସ୍କୃତ ହୋଇଗଲା ବୋଲି ମନେ-କଲେ । ଦମଦମାର ସମତଳରେ ପାର୍ବତ୍ୟ ଆନନ୍ଦପୁରର ପରିଚିତ ଦୈନନ୍ଦିନ ଜୀବନ ଓ ସାମାଜିକ ବିଧି ବ୍ୟବସ୍ଥା ପୁନର୍ବାର୍ତ୍ତିତ ହୋଇ ଉଠିଲା । ପ୍ରତ୍ୟୂଷ ପୂର୍ବପରି ପବିତ୍ର ପ୍ରାର୍ଥନାରେ ଏବଂ ଦିବସ ବୀରଗାଥାମାନଙ୍କର ଗାନରେ ମୁଖରିତ ହେବାକୁ ଲାଗିଲା । ପ୍ରତ୍ୟେକଟି କର୍ମ ଓ ଅନୁଷ୍ଠାନର, ଠିକ ପୂର୍ବପରି, ଲକ୍ଷ୍ୟ ରହିଲା, ଶିଖ୍ ସମ୍ପ୍ରଦାୟର ଆତ୍ମାକୁ ପୁନର୍ଗଠିତ କରି ଗଢ଼ିବା ।

ଦମଦମା ସାହିବଠାରେ ଆସି ଯେଉଁମାନେ ନୂଆ ପହଞ୍ଚିଲେ ସେମାନଙ୍କ ମଧ୍ୟରେ ଥିଲେ ଭାଇ ମନି ସିଂ, ଗୁରୁଗୋବିନ୍ଦ ସିଂଙ୍କର ପଢ଼ା-ସାଥୀ ଓ ପରେ ବିଦ୍ୱତ୍ତା ପାଇଁ ପ୍ରଖ୍ୟାତ । ଗୁରୁ ଅର୍ଜ୍ଜୁନ, 'ଆଦିଗ୍ରନ୍ଥ'କୁ ସମ୍ପାଦନା କରିଯାଇଥିଲେହେଁ ଇ ଭିତରେ, ଭିନ୍ନ ଭିନ୍ନ ଲେଖନକାରଙ୍କ ହାତରେ, ସେଥିରେ ଅନେକ ପ୍ରମାଦ ପଶିଯାଇଥିଲା । ଗୁରୁ ଗୋବିନ୍ଦ ସିଂ ସେହି ଗ୍ରନ୍ଥର ଏକ ବିଶୁଦ୍ଧ ସଂସ୍କରଣ କରାଇ ନେବାର ପ୍ରସ୍ତାବ କଲେ, ଏହି ଅତ୍ୟନ୍ତ ଦାୟିତ୍ୱପୂର୍ଣ୍ଣ କାମ ପାଇଁ ଗୋଟିଏ ସ୍ୱତନ୍ତ୍ର ତମ୍ବୁ ପକାଇ, ସେଠି ସେ ନିଜେ ଓ ପଢ଼ାସାଥୀ ମନି ସିଂ, ସେଥିରେ ଲାଗିପଡ଼ିଲେ । ଆଦି ଗ୍ରନ୍ଥର ପ୍ରଥମପୋଥିଟି, ଗୁରୁ ଅର୍ଜ୍ଜୁନଙ୍କର ଡାକିବାରେ ଭାଇ ଗୁରୁଦାସଙ୍କ ଦ୍ୱାରା ଲିଖିତ ହୋଇଥିଲା । ବର୍ତ୍ତମାନ ତାର ବିଶୁଦ୍ଧ ସଂସ୍କରଣଟି ଲେଖିବାର ଗୌରବ ପାଇଲେ ଭାଇ ମନି ସିଂ, ସ୍ୱୟଂ ଗୁରୁ ଗୋବିନ୍ଦ ସିଂଙ୍କ ମୁଖନିଃସୃତ, ବାଣୀ ଅନୁସରଣ କରି । ମୂଳ ପୋଥିରେ ଥିଲା, ପ୍ରଥମ ପାଞ୍ଚ ଗୁରୁ ଏବଂ ଫରିଦ, କବୀର , ରବିଦାସ, ନାମଦେବ, ମୀରାବାଈ, ଓ ଧନ୍ନା ଇତ୍ୟାଦି

କେତେକ ସୁଫୀ ଓ ଭଗତଙ୍କର ଭଜନାବଳୀ ଗୁରୁ ଗୋବନ୍ଦ ସିଂ ଏମାନଙ୍କ ସାଥିକ ନଜ ପିତା ତେଗ୍‌ବାହାଦୁରଙ୍କର ଭଜନ ସବୁ ଯୋଡ଼ିଲେ, କିନ୍ତୁ ନଜର କୌଣସି ହେଲେ ରଚନା ଯୁକ୍ତ ନଥିଲେ । ତାଙ୍କର ରଚନାବଳୀ ପରେ ଭାଇ ମନ ସିଂଙ୍କ ଦ୍ୱାରା ସଂଗୃହୀତ ଓ ସମ୍ପାଦିତ ହୋଇ 'ଦଶମଗ୍ରନ୍ଥ' ବା ଦଶମ ଗୁରୁଙ୍କ ଗ୍ରନ୍ଥ ନାମରେ ପରିଚିତ ହୋଇ ଆସୁଛି ।

'ଆଦି ଗ୍ରନ୍ଥ'ର ନବ ସଂସ୍କରଣର ପୂର୍ତ୍ତି ଉପଲକ୍ଷରେ ଦାମଦମାରେ ଯଥୋଚିତ ଉତ୍ସବ ଓ ଈଶ୍ୱରଙ୍କୁ ଧନ୍ୟବାଦାର୍ପଣ ହୋଇଥିଲା । ପୋଥିଟି ଲେଖିବାରେ ଯେଉଁ କାଳି ଓ କଲମ ବ୍ୟବହୃତ ହୋଇଥିଲା; ତାହା ଯେପରି ଅନ୍ୟକାମ ପାଇଁ ନ ଲାଗେ, ସେଥିପାଇଁ ସେ ସବୁ ଯେଉଁଠି ଲେଖା ହେଉଥିଲା, ସେହି ତମ୍ବୁ ନିକଟବର୍ତ୍ତୀ ଏକ ଗ୍ରେଟ ପୋଖରୀରେ ଗୁରୁ ନିକ୍ଷେପ କରି ଦେଇଥିଲେ । ଦାମଦମାରେ ଏହି ସାରସ୍ୱତ ସିଦ୍ଧି ଘଟିଥିବାରୁ ଗୁରୁ ଭବିଷ୍ୟତ୍‌ବାଣୀ କରିଥିଲେ ଯେ, ଦାମଦମାହିଁ ଦିନେ ହେବ, ଶିଖମାନଙ୍କର କାଶୀ । ସେ କହିଲେ "ଅନେକେ ଏଠି ପାଠ ପଢ଼ି ପଣ୍ଡିତ ହେବେ ଏବଂ ସକଳ ଅଜ୍ଞତା ଦୂରେଇ ହୋଇ ଉଠିବେ ଲେଖକ, ସନ୍ଥ, କବି, ଓ ଭାଷ୍ୟକାର । ମୂର୍ଖ ସବୁ ଏଠିକି ଆସି, ହେବେ ଜ୍ଞାନୀ ।" ପରେ ସେହି ଗ୍ରେଟ ପୋଖରୀଟି 'ଲିଖନ-ସର' ନାମରେ ପରିଚିତ ହୋଇ ଆସିଛି ଏବଂ ଦାମଦମ ପରିଚିତ ହୋଇ ଆସିଛି "ଗୁରୁ-କି-କାଶୀ' ନାମରେ । ଶିଖ୍-ଜଗତରେ ଦାମଦମାର ପଣ୍ଡିତମାନେ ଶିଖ୍-ଶାସ୍ତ୍ର ବାଖ୍ୟା ପାଇଁ ସୁବିଦିତ । ଶିଖ ସମାଜରେ ଦାମଦମାର ବିଦ୍ୟାର୍ଥୀମାନେ ବିଦ୍ୱତ୍ତା ଓ ଜ୍ଞାନତପସ୍ୟାର ଯେଉଁ ଐତିହ୍ୟ ସୃଷ୍ଟି କରି ଯାଇଛନ୍ତି, ତାହା ଅତ୍ୟନ୍ତ ଗୌରବାବହ । ଗ୍ରନ୍ଥସାହିବ୍ ମୁଦ୍ରାଯନ୍ତ୍ରରେ ମୁଦ୍ରିତ ହେଲାଯାଏଁ, ଦାମଦମାରେ ଲିଖିତ ପୋଥି ସବୁଠାରେ ଆଦୃତ ହେଉଥିଲା । ଦାମଦମାରେ ବ୍ୟବହୃତ ଗୁରୁମୁଖୀ-ଲିପିହିଁ ପରେ ମୁଦ୍ରଯନ୍ତ୍ର ପାଇଁ ଆଦର୍ଶ ବିବେଚିତ ହୋଇଥିଲା ।

ଫୁଲ୍‌କିଆଁ-ରାଜବଂଶର ପୂର୍ବପୁରୁଷ, ରାମ ଓ ତାଲୋକ, ଏହି ଦାମଦମାଠାରେହିଁ ଗୁରୁ ଗୋବନ୍ଦ ସିଂକ ଦ୍ୱାରା ଦୀକ୍ଷିତ ହୋଇଥିଲେ । ସେମାନଙ୍କର ପୂର୍ବପୁରୁଷ ଫୁଲ୍‌କୁ, ଗୁରୁ ହରି ରାଇ ଆଶୀର୍ବାଦ କରିଥିଲେ ଯେ, ଦିନେ ତା'ର ବଂଶଧରମାନେ ରାଜ୍ୟାଧିପତି ହେବେ । ରାମ ଓ ତଲୋକ, ଟାଁକୁଆଁର ଠାରେ ନିହତ ଗୁରୁଙ୍କର ଦୁଇ ପୁଅଙ୍କର

ଅନ୍ତ୍ୟେଷ୍ଟିକ୍ରିୟା, ଅସାଧାରଣ ନିର୍ଭୀକତା ଦେଖାଇ ସମାପନ କରିଥିଲେ । ଗୁରୁଙ୍କ ଠାରୁ ଦୀକ୍ଷା ନେବାପରେ ସେମାନଙ୍କର ନାମ ହେଲା ରାମ ସିଂ ଓ ତିଲୋକ ସିଂ । ରାମ ସିଂ-ଶାଖା ହିଁ ବର୍ତ୍ତମାନର ପାତିଆଲା ରାଜବଂଶ ଏବଂ ନାଭା ଓ ଝିନ୍ଦ୍‌ର ବଂଶ, ତିଲୋକ ସିଂର ବଂଶଧର ।

ଦାମଦମାଠାରେ ଲକ୍ଷେରୁ ଅଧିକ ଲୋକ ଅମୃତ ମନ୍ତ୍ରରେ ଦୀକ୍ଷିତ ହୋଇ ଖାଲ୍‌ସା-ବାହିନୀରେ ମିଶିଲେ । ଦୀକ୍ଷା ନେବାପାଇଁ ପ୍ରତ୍ୟହ ଏତେ ଲୋକ ଆସୁଥିଲେ ଯେ, ବିରାଟ ଲୁହା କଡ଼େଇମାନଙ୍କରେ 'ଅମୃତ' ବନେଇବାକୁ ହେଉଥିଲା । ଦାମଦମାରେ ଯେଉଁ ବୈଶାଖୀ ଉତ୍ସବ ହେଲା, ସେହିଠାରୁ ତାକୁ କରାଗଲା, ଖାଲ୍‌ସାର ଜନ୍ମୋତ୍ସବ । ଏହି ଦିନଟି ଏପର୍ଯ୍ୟନ୍ତ ଏହିଠାରେ ଗଭୀର ଶ୍ରଦ୍ଧା, ଭକ୍ତି ଓ ଉତ୍ସାହର ସହିତ ପ୍ରତିବର୍ଷ ପାଳିତ ହୋଇ ଆସୁଛି ।

---

# ଚତୁର୍ଦ୍ଦଶ ଅଧ୍ୟାୟ୍

## ଖାଲ୍‌ସା ସହିତ ମିଶ୍ରଣ ।

ଦୟା ସିଂ ଓ ଧରମ ସିଂ, ଗୁରୁ ଗୋବିନ୍ଦ ସିଂଙ୍କର ଯେଉଁ ପତ୍ର ନେଇ ଆଉରଙ୍ଗଜେବଙ୍କ ନିକଟକୁ ଯାଇଥିଲେ, ଅତ୍ୟନ୍ତ କଟୁକ୍ତିପୂର୍ଣ୍ଣ ହେଲେ ହେଁ, ତାହା, ସେତେବେଳକୁ ରୁଗ୍‌ଣ ଓ ଜରାଗ୍ରସ୍ତ ସମ୍ରାଟଙ୍କୁ, ପତ୍ରଟିର ନିର୍ଭୀକତା ଓ ସ୍ପଷ୍ଟବାଦିତା ଯୋଗୁଁ ଏବଂ ପତ୍ରପ୍ରେରକର ଈଶ୍ୱର ଓ ନ୍ୟାୟ ଉପରେ ଅଟଳ ବିଶ୍ୱାସ ପ୍ରକାଶିତ ଥିବା ଯୋଗୁଁ, ବିଶେଷ ଭାବରେ ପ୍ରଭାବିତ କରିଥିଲା । ସେ ତାଙ୍କ ବେଗମଯୋଗାରୁହିଁ ଦିଲ୍ଲୀସ୍ଥ ମନ୍ତ୍ରୀ ମୁନିମ୍ ଖାଁଙ୍କୁ ଏକ ପତ୍ର ଡାକ ଦେଲେ ଯେ, ସେ ଗୁରୁଙ୍କୁ ଦିଲ୍ଲୀ ନିମନ୍ତ୍ରଣ କରି ସକଳ ପ୍ରକାର ବନ୍ଧୁଭାବ ଦେଖାଇବେ ଏବଂ ଏହି ପତ୍ର ଦେଖାଇ, ତାଙ୍କୁ ସମ୍ରାଟଙ୍କ ନିକଟକୁ ପଠାଇଦେବେ । ମନ୍ତ୍ରୀଙ୍କି ଏହା ଉପଦେଶ ମଧ୍ୟ ଦିଆ ଯାଇଥିଲା ଯେ, ଗୁରୁଙ୍କଠାରୁ ଛଡ଼ାଇ ନିଆଯାଇ ଥିବା ସମ୍ପତ୍ତିରୁ, ଗୁରୁଙ୍କର ଦାକ୍ଷିଣାତ୍ୟ ଯାତ୍ରା ପାଇଁ ଯାହା ଅର୍ଥ ଦରକାର, ତାହା ଦେଇ ଦିଆଯିବ, ତାଙ୍କୁ ବାଟ କଢ଼ାଇ ଆଣିବା ପାଇଁ ଏକ ଲୋକ ଯୋଗାଇ ଦିଆଯିବ ଏବଂ ତାଙ୍କ ନିଜ ରାଜ୍ୟ ବାହାରେ ତାଙ୍କର ଯାତ୍ରା ଯେପରି ନିରାପଦ ହୁଏ, ତାର ବ୍ୟବସ୍ଥା କରାଯିବ । ସମ୍ରାଟଙ୍କ ଗୁର୍ଜ୍‌ବରଦାର ମହମ୍ମଦ ବେଗ୍ ଏହି ପତ୍ର ଧରି, ଏବଂ ଦୟା ସିଂ ଓ ଧରମ ସିଂଙ୍କୁ ସାଥିରେ ନେଇ, ଉତ୍ତରକୁ ଯାତ୍ରା କଲେ ।

ଗୁରୁ ଗୋବିନ୍ଦ ସିଂ ଏ ଘଟଣାର କିଛି ହିଁ ଜାଣି ନ ଥିଲେ । ବସ୍ତୁତଃ ଜାଫାରନାମା ଧରି ଦୀନା ପରିତ୍ୟାଗ କଲା ପରେ, ସେ ଦୟା ସିଂ ଠାରୁ ଏତିକି ମାତ୍ର ସମ୍ବାଦ ପାଇଥିଲେ ଯେ, ସମ୍ରାଟଙ୍କ ସହିତ ଏକ ବ୍ୟକ୍ତିଗତ ସାକ୍ଷାତର ସୁବିଧା ହୋଇପାରୁ ନାହିଁ । ଗୁରୁଜୀ, ଦୟା ସିଂଙ୍କୁ ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ କହିଥିଲେ ଏବଂ ଅହମଦନଗରର ଶିଖମାନଙ୍କ ବିଷୟରେ ଦୟା ସିଂଙ୍କୁ ସାହାଯ୍ୟ କରିବା ପାଇଁ ମଧ୍ୟ ଲେଖିଥିଲେ । ଦୀର୍ଘକାଳ ବିତିଗଲେ ମଧ୍ୟ ଦୟା ସିଂ ଠାରୁ ଆଉ କୌଣସି ସମ୍ବାଦ ନ ପାଇ ଏବଂ ନବତିବର୍ଷ ବୟସ୍କ ବୃଦ୍ଧ ସମ୍ରାଟଙ୍କର ଜୀବନାଶଙ୍କାର ଜନରବହେତୁ

ସମାଭୂତ ହେଉଥିବାର ଦେଖି, ତାଙ୍କର ମୃତ୍ୟୁ ପୂର୍ବରୁ ଥରେ ସମ୍ରାଟଙ୍କୁ ବ୍ୟକ୍ତିଗତ ସାକ୍ଷାତ କରି ନେବାପାଇଁ ସେ ସ୍ଥିର କଲେ ଯେ, ସେ ନିଜେ ଏଥିପାଇଁ ଦାକ୍ଷିଣାତ୍ୟ ଯିବେ ।

ଗୁରୁଙ୍କର ଏ ସିଦ୍ଧାନ୍ତ ଦାମଦମାର ଶିଖମାନଙ୍କୁ ଚିନ୍ତାଗ୍ରସ୍ତ କରି ପକାଇଲା । ବିଶେଷ କରି ଦଲ୍ ସିଂ ଭାବି ନେଇଥିଲା ଯେ, ଗୁରୁ ତାଙ୍କ ଗାଁରେହିଁ ସ୍ଥାୟୀ ହୋଇ ରହିବେ । ଗୁରୁ-ବିରହର କଳ୍ପନା ତାକୁ ଅସ୍ଥିର କରିବାକୁ ଆରମ୍ଭ କଲା । ସେହିପରି ଭାଇରୂପର ଧରମ ସିଂ, ଫୁଲ୍‌ର ରାମ ସିଂ ଓ ତିଲୋକ ସିଂ, କୋଠାଗୁରୁର ଅଭୟରାମ ସୋଢ଼ି, ଚୂକ୍‌ର ଭାଇ ରାମ ସିଂ, ଭୁଚୁର ଭାଇ ଗଡ଼ାରିଆ, ଏବଂ ଦାନ ସିଂ ବ୍ରାର ପ୍ରଭୃତି ଅନ୍ୟାନ୍ୟ ବହୁ ଶିଖ୍-ମୁଖ୍ୟଗଣ ମଧ୍ୟ ଗୁରୁଙ୍କୁ ଦାକ୍ଷିଣାତ୍ୟ ଯାତ୍ରାରୁ ନିବର୍ତ୍ତାଇବାକୁ ଲାଗିଲେ । ସେମାନେ କହିଲେ—"ହେ ରାଜା, ତମେ ଏଠାରେ ଦରବାର କରି ବନ୍ଧୁ ଓ ଶିଷ୍ୟମାନଙ୍କୁ ପ୍ରତ୍ୟକ୍ଷ ଦର୍ଶନ ଦେଇ ସୁଖୀ କରିଉଛ । ଜନହୀନ, ଶିଷ୍ୟହୀନ ଦାକ୍ଷିଣାତ୍ୟ ଦେଶକୁ ଯାତ୍ରା କରି କି ଲାଭ ?" ଗୁରୁ ଉତ୍ତର କଲେ "ଏହା ସତ୍ୟ ଯେ ଦାମଦମାଠାରୁ ଉତ୍ତମତର ସ୍ଥାନ ନ ଥାଇପାରେ । ତେବେ, ଦାକ୍ଷିଣାତ୍ୟକୁ ଯିବା ଆବଶ୍ୟକ ପଡ଼ୁଛି, ଏବଂ ମତେ ଯିବାକୁହିଁ ହେବ ।"

ଗୁରୁ ଜିଦ୍ କରନ୍ତେ ଅନେକ ଶିଖ୍ ଅଶ୍ୱାରୋହୀ ତାଙ୍କ ସାଥିରେ ଯିବାକୁ ବାହାରିଲେ । କିନ୍ତୁ ଗୁରୁ ମାତ୍ର ସ୍ୱଳ୍ପ, କେତେକଙ୍କୁ ସାଥିରେ ନେଲେ । ସେମାନଙ୍କ ଭିତରେ ଥିଲେ ମାନ ସିଂ, ପରମ ସିଂ, ଧରମ ସିଂ, ମାନ୍ ସିଂ, ଭାଇ ଭଗତୁ ପରିବାରର ରାମ ସିଂ ଏବଂ ଦାନ ସିଂର ପୁଅ ଗୁରୁବକସ ସିଂ ଗୁରୁଙ୍କ ପିତା ତେଗ ବାହାଦୂର ଦମଦମାକୁ ଆସିଥିଲେ । ସେଠାରେ ତେଣୁ ତାଙ୍କ ଉଦ୍ଦେଶ୍ୟରେ ଏକ ସ୍ମୃତିମନ୍ଦିର ଥିଲା । ଗୁରୁଗୋବିନ୍ଦ ସିଂ ଦାମଦମା ଛାଡ଼ିବା ପୂର୍ବରୁ, ପିତାଙ୍କ ସ୍ମୃତିମନ୍ଦିରକୁ ଯାଇ ପ୍ରାର୍ଥନା କଲେ ଏବଂ ୧୭୦୬ର ଅକ୍ଟୋବର ମାସରେ ଦକ୍ଷିଣକୁ ଯାତ୍ରା ଆରମ୍ଭ କଲେ । ଯିବାପୂର୍ବରୁ ଗୁରୁ ତାଙ୍କର ପତ୍ନୀ ଦୁହିଁଙ୍କୁ ଲୋକବାକ ସହିତ ଦିଲ୍ଲୀ ପଠାଇ ଦେଲେ ।

ଗୁରୁ ରାଜପୁତନା ଦେଇ ଯାତ୍ରା କଲେ । ସେ ସୀର୍ସା, ନଉହାର (ବିକାନେରରେ) ସାହୱା, ମଧୁସିଂଘାନା, ଏବଂ ପୁଷ୍କର ଦେଇ ନାରାୟଣପୁର ପହଁଚିଲେ । ଶେଷୋକ୍ତ ସ୍ଥାନ, ପ୍ରସିଦ୍ଧ ସନ୍ଥ-କବି ଦାଦୁଙ୍କ ବାସ ହେତୁ, ଦାଦୁଦ୍ୱାର ନାମରେ ମଧ୍ୟ ପରିଚିତ ।

ବାଦୁର୍ଓ୍ୟାଗଠାରେ ସନ୍ଥଙ୍କ ସ୍ମୃତିମନ୍ଦିର ନିକଟରେହିଁ ଗୁରୁ ନିଜର ତମ୍ବୁ ପକାଇଲେ ଏବଂ ଶରରେ ମସ୍ତକ ସ୍ପର୍ଶ କରି ସେ ସ୍ୱର୍ଗତ ସନ୍ଥଙ୍କ ସମାଧିକୁ ବନ୍ଦନା କଲେ । ଏଥିରେ ଖାଲ୍‌ସା ଆପତ୍ତି ଉତ୍ଥାପନ କଲା ଏବଂ ଗୁରୁଙ୍କଠାରୁ, ଅପରାଧ ପାଇଁ ଜୋରିମାନା ଦାବୀ କଲା । ସେମାନଙ୍କ ଭିତରୁ ମାନ ସିଂ, ଗୁରୁଙ୍କ ନିଜ 'ଗୋର୍ ମର୍‌ହି ମତ ଭୁଲ ନ ମାନେ' (ସମାଧି ବା ଶ୍ମଶାନକୁ ଭୁଲରେ ମଧ୍ୟ ପ୍ରଣାମ କରିବ ନାହିଁ) ଉଦ୍ଧାର କରି ଗୁରୁଙ୍କର ନିଜ ସ୍ଖଳନ ଦେଖାଇବାକୁ ଲାଗିଲା । ଗୁରୁ ବିନା ବାକ୍ୟରେ ଜୋରିମାନା ଦେବାକୁ ରାଜିହେଲେ । ପ୍ରଥମେ ଜୋରିମାନାର ପରିମାଣ ହେଲା ୫୦୦୦।- । କିନ୍ତୁ କେହି କେହି ଏହା ଅତି ବେଶୀ ହୋଇ ଯାଉଛି କହିବାରୁ ଏହା ଖସି ଆସିଲା ୫୦୦କୁ । କିନ୍ତୁ ପୁଣି କେତେକ ଭାବିଲେ ଯେ ଗୁରୁଙ୍କ ପ୍ରତି ଏହା କିଛି ନୁହେଁ । ଏବଂ ଗୁରୁଙ୍କ ଉପଯୋଗୀ ଜୋରିମାନା ହେବା ଉଚିତ ୫ଲକ୍ଷ । କିନ୍ତୁ ଆପତ୍ତି ହେଲା ପୁଣି ଯେ, ଏହି ଅନୁପାତରେ ଖାଲ୍‌ସାର ସାଧାରଣ ସଭ୍ୟ ଜୋରିମାନା ଦେଇ ପାରିବେ ତ ? ତେଣୁ ଶେଷରେ ଠିକ୍ ହେଲା ଯେ ଗୁରୁ ୧୨୫ଟଙ୍କା ମାତ୍ର ଜୋରିମାନା ଦେବେ । ସେହି ଟଙ୍କାରେ ସେମାନେ ଗୁରୁଙ୍କ ଅନୁଯାୟୀମାନଙ୍କ ପାଇଁ ଏକ ନୂତନ ସୋଷେଇ-ତମ୍ବୁ କିଣି ପକାଇଲେ ।

ଗୁରୁ ଗୋବିନ୍ଦ ସିଂ ବାଘାଉର୍ ନାମକ ସ୍ଥାନରେ ପହଞ୍ଚିଲା ବେଳକୁ ଦକ୍ଷିଣାତ୍ୟରୁ ଦୟା ସିଂ ଆସି ସେଠାରେ ଭେଟିଲେ ଏବଂ ସମ୍ରାଟଙ୍କ ସହିତ ସାକ୍ଷାତ ବେଳେ ଯାହା ଯାହା ଘଟିଗଲା, ତାହା କହିଲେ ଏବଂ ଜଣାଇଲେ ସମ୍ରାଟଙ୍କ ପତ୍ର ନେଇ ଗ୍ରେପ୍‌ଦାର କିପରି ଦିଲ୍ଲୀଗଲା ଏବଂ ସେମାନେ ଏଆଡ଼େ ଆସିଲେ । କିନ୍ତୁ ମାତ୍ର ଅଳ୍ପ କାଳ ପରେ ଖବର ଆସିଲା ଯେ; ୧୭୦୭ ଖ୍ରୀଷ୍ଟାବ୍ଦରେ ଫେବୃୟାରୀ ୨୦ ତାରିଖରେ ସମ୍ରାଟ ଆଉରଙ୍ଗଜେବ ଅହମଦ ନଗରରେ ପ୍ରାଣତ୍ୟାଗ କରିଯାଇଛନ୍ତି । ଯେହେତୁ ଗୁରୁଜୀ ସମ୍ରାଟଙ୍କୁ ବ୍ୟକ୍ତିଗତ ଭାବରେ ଭେଟିବା ପାଇଁ ହିଁ ଦାକ୍ଷିଣାତ୍ୟ ଯାଉଥିଲେ, ତାଙ୍କର ମୃତ୍ୟୁ ସମ୍ବାଦ ପାଇବା ପରେ ସେ ଆଉ ସେ ଦିଗରେ ଏକ ପାଦ ମଧ୍ୟ ନ ଯାଇ, ଉତ୍ତରକୁ ଗତି କରି ଦିଲ୍ଲୀରେ ଆସି ତାଙ୍କର ପତ୍ନୀମାନଙ୍କ ସହିତ ମିଳିତ ହେଲେ ।

ଆଉରଙ୍ଗଜେବଙ୍କ ମୃତ୍ୟୁ ପରେ ସିଂହାସନ-ସଂଗ୍ରାମ ଆରମ୍ଭ ହୋଇ-ଗଲା, ମୁସଲମାନଙ୍କ ଭିତରେ ଯେପରି ହୋଇଥାଏ ଆଉରଙ୍ଗଜେବଙ୍କର ଚାରିପୁଅ ଥିଲେ,—ଆକ୍‌ବର, ମୁଆଜ୍ଜାମ୍, ଆଜାମ୍, କାମ୍ବକ୍‌ସ । ଏମାନଙ୍କ ମଧ୍ୟରୁ ଆକବର ପିତୃଦ୍ରୋହୀ ହୋଇ ନିର୍ବାସିତ ହୋଇ ସାରିଥିଲେ । ତେଣୁ ସିଂହାସନ ପାଇଁ କଳି ଲାଗିଲା ଅନ୍ୟ ତିନିଙ୍କ ଭିତରେ । ବଡ଼ ମୁଆଜ୍ଜାମ ସେତେବେଳେ ସାମ୍ରାଜ୍ୟର ଉତ୍ତର-ପଶ୍ଚିମ ପ୍ରାନ୍ତରେ ! ତାଙ୍କର ସେନା ବା ସମ୍ପତ୍ତି ନ ଥିଲେ ମଧ୍ୟ ସେ କାବୁଲଠାରେ ନିଜକୁ ସମ୍ରାଟ ଘୋଷଣା କଲେ । ପିତାଙ୍କ ସାଥିରେ ଥିବା ଆଜ୍ଜାମ ସେହି ଦାକ୍ଷିଣାତ୍ୟରେହିଁ ନିଜକୁ ସମ୍ରାଟ ଘୋଷଣା କଲା ଏବଂ ଉଭୟେ ଧାଇଁଲେ ସାମ୍ରାଜ୍ୟର ରାଜଧାନୀ ଆଗ୍ରାକୁ । କୁମାର ମୁଆଜ୍ଜାମଙ୍କର ବିଶ୍ୱସ୍ତ ମୁନସି ବା ସେକ୍ରେଟାରୀ ଥିଲେ, ଶିଖ୍ ଭାଇ ନନ୍ଦଲାଲ, ଯେ ତାଙ୍କୁ ଉପଦେଶ ଦେଲେ, ଗୁରୁ ଗୋବିନ୍ଦ ସିଂଙ୍କୁ ସାହାଯ୍ୟ ଭିକ୍ଷା କରିବା ପାଇଁ । ଗୁରୁ ସେତେବେଳକୁ ଦିଲ୍ଲୀରେ ପହଞ୍ଚି ସାରିଥିଲେ ମଧ୍ୟ ତାଙ୍କ ସାଥିରେ ଏପରି ସୈନ୍ୟବଳ ନଥିଲା, ଯାହା ଯୋଗୁଁ ସେ ସିଂହାସନା-ଭିଳାଷୀ କାହାକୁ ହେଲେ ବିଶେଷ କିଛି ସାହାଯ୍ୟ ଦେଇ ପାରିବେ । ତଥାପି କୁମାର ମୁଆଜ୍ଜାମ ତାଙ୍କୁ ସାହାଯ୍ୟ ଓ ଆଶୀର୍ବାଦ ଭିକ୍ଷା କରି ପତ୍ର ଲେଖିଲେ ।

ରାଜକୁମାର ମୁଆଜ୍ଜାମ ଜଣେ ଧାର୍ମିକ ଲୋକ ବୋଲି ପରିଚିତ ଥିଲେ । ସମ୍ରାଟଙ୍କ ବଡ଼ପୁଅ ଭାବରେ ସିଂହାସନ ଉପରେ ତାଙ୍କର ଦାବୀ ଯେ ଏକାନ୍ତ ନ୍ୟାଯ୍ୟ ଥିଲା, ଏଥିରେ ସନ୍ଦେହ ନାହିଁ । ସେ ପିତାଙ୍କ ପରି ଧର୍ମାନ୍ଧ ନ ଥିଲେ ଏବଂ ଧର୍ମ ନିର୍ବିଶେଷରେ ସାଧୁ-ସନ୍ଥଙ୍କୁ ସମ୍ମାନ ଦେଖାଇ, ଉଦାରଚରିତ୍ରତାର ବହୁ ପରିଚୟ ଦେଇ ସାରିଥିଲେ । ତାଙ୍କୁ ଯେତେବେଳେ ପଠାଯାଇଥିଲା ବିଦ୍ରୋହୀ ଗୁରୁ ଗୋବିନ୍ଦ ସିଂଙ୍କୁ ଯଥୋଚିତ ଭାବରେ ଦଣ୍ଡିତ କରିବା ପାଇଁ, ସେ ସେତେବେଳେ ମଧ୍ୟ ଗୁରୁଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରିଥିଲେ । ଏହି ସବୁ କାରଣରୁ ଗୁରୁ କୁମାର ମୁଆଜ୍ଜାମଙ୍କୁ ସମସ୍ତ ପ୍ରକାର ସାହାଯ୍ୟର ଯୋଗ୍ୟ ବିବେଚନା କଲେ । ଏହା ମଧ୍ୟ ନାନକ-ବଂଶର ନୀତି ଥିଲା ଯେ, ଶରଣାର୍ଥୀକି ଫେରାଇ ଦିଆଯିବ ନାହିଁ । ଫଳରେ ଗୁରୁଜୀ, ଧରମ ସିଂଙ୍କ ଅଧିନାୟକତ୍ୱରେ ଦଳେ ଶିଖ୍‌ଙ୍କୁ ପଠାଇଲେ ମୁଆଜ୍ଜମଙ୍କୁ ସିଂହାସନ-ସଂଗ୍ରାମରେ ସହାୟତା ଦେବାପାଇଁ । ୧୭୦୭ ଖ୍ରୀ:ଅ:ର ଜୁନ୍ ୧୮ ତାରିଖରେ ଦୁଇ ସଂଗ୍ରାମୀ ଭ୍ରାତା, ଆଗ୍ରା ନିକଟସ୍ଥ ଜାଜାଉଠାରେ ପରସ୍ପରକୁ ଭେଟିଲେ । ଯୁଦ୍ଧରେ ରାଜକୁମାର ଆଜ୍ଜାମ ନିଜର ଦୁଇପୁଅ ସହିତ ନିହତ

ଦେଲେ, ଏବଂ ମୁଆଜ୍ଜାମ୍, ବାହାଦୁର ସାହା ନାମରେ ସମ୍ରାଟ ଘୋଷିତ ହେଲେ । ନୂତନ ସମ୍ରାଟ ଶିଖ୍ ଦଳପତି ଧରମ ସିଂ ହାତରେ ଏହି ବିଜୟ ସମ୍ବାଦ ସହିତ, ସାହାଯ୍ୟ ପାଇଁ କୃତଜ୍ଞତା ପ୍ରେରଣ କରିଥିଲେ ।

କିଛିକାଳ ପରେ ଗୁରୁ ଗୋବିନ୍ଦ ସିଂ ଦିଲ୍ଲୀରୁ ଆଗ୍ରା ଯାତ୍ରା କଲେ । ବାଟରେ ବୃନ୍ଦାବନ ଓ ମଥୁରା ଦେଖି ସେ ଆଗ୍ରା ସହରର ଉପକଣ୍ଠରେ ଏକ ଉଦ୍ୟାନରେ ତମ୍ବୁ ପକାଇଲେ । ତାଙ୍କର ଆସିବା ଶୁଣି, ସମ୍ରାଟ ତାଙ୍କୁ ନିମନ୍ତ୍ରଣ କଲେ, ଭେଟିବା ପାଇଁ । ବଛା ବଛା କେତେକ ଶିଖଙ୍କୁ ସାଥିରେ ଘେନି ଗୁରୁ, ସମ୍ରାଟଙ୍କୁ ଭେଟିବାକୁ ଗଲେ ଏବଂ ସମ୍ରାଟ ମଧ୍ୟ ତାଙ୍କୁ ଅତ୍ୟନ୍ତ ସମ୍ମାନର ସହିତ ଗ୍ରହଣ କରିଥିଲେ । ସମ୍ରାଟ ଗୁରୁଙ୍କର ଜାଜାଉ ଯୁଦ୍ଧରେ ସାମରିକ ସହାୟତା ପାଇଁ ଗଭୀର କୃତଜ୍ଞତା ଏବଂ ତାଙ୍କ ଦର୍ଶନରେ ଗଭୀର ଆନନ୍ଦ ପ୍ରକାଶ କଲେ । ବିଦାୟ ବେଳେ, ସମ୍ମାନର ଚିହ୍ନ ସ୍ୱରୂପ, ସମ୍ରାଟ, ଗୁରୁଙ୍କୁ ଏକ ମୂଲ୍ୟବାନ ଖିଲ୍ଲାତ; ଏକ ମଣିଖଚିତ ଉତ୍ତରୀୟ ବା ‧ଢୁକ୍‌ଢୁକ୍ୱା, ଏବଂ ମଣିଖଚିତ ଏକ କାଲ୍‌ଘି (ପଗଡ଼ିର ଅଳଙ୍କାର) ଉପହାର ଦେଲେ । ଗୁରୁଙ୍କ ଅନୁଚର ଦରବାର ବାହାରେ ଅପେକ୍ଷା କରି ରହିଥିଲା । ତାକୁ ଡାକରା ହେଲା ଓ ସେ ଉପହାରଗୁଡ଼ିକ ନେଇଗଲା ।

ଗୁରୁ ଓ ସମ୍ରାଟଙ୍କର ଏହି ସାକ୍ଷାତ, ଦୁହିଙ୍କର ବ୍ୟକ୍ତିଗତ ବନ୍ଧୁତାକୁ ଦୃଢ଼ୀଭୂତ କଲାନି କେବଳ, ଏହା ସୂତ୍ରପାତ କଲା ଏହିପରି ଆହୁରି ଅନେକ ସାକ୍ଷାତ ପାଇଁ, ଯେଉଁଥିରେ ଆଲୋଚିତ ହେଲା ମୋଗଲ ଶାସକର, ଇସ୍‌ଲାମ ବ୍ୟତୀତ ଭାରତବର୍ଷର ଅନ୍ୟଧର୍ମମାନଙ୍କ ପ୍ରତି ଦୃଷ୍ଟି ଓ ବିଚାର । ଗୁରୁ ଆଶା କଲେ ଯେ ସେ ପଞ୍ଜାବ ଫେରିବା ପୂର୍ବରୁ ଏହି ବିଷୟର ଏକ ସମାଧାନ ନେଇଯିବେ । ଭିନ୍ନ ଭିନ୍ନ ସ୍ଥାନର ଶିଖ୍-ଗୋଷ୍ଠୀକୁ ଗୁରୁ ଲେଖିଥିବା ଏହି-ସଂପୃକ୍ତ ପତ୍ରଟି ନିକଟରେ ଆବିଷ୍କୃତ ହୋଇଛି ତାହା ଏହିପରି—

ଧଉଲ୍‌ର ସଙ୍ଗତକୁ ଏ ପତ୍ର । ତୁମେମାନେ ମୋର ଖାଲ୍‌ସା । ଗୁରୁ ତୁମମାନଙ୍କୁ ରକ୍ଷା କରିବେ । ଗୁରୁ-ମନ୍ତ୍ର ଉଚ୍ଚାରଣ କର । ଆମେ

ଆନନ୍ଦିତ ମନରେ ବାଦଶାଙ୍କ ନିକଟକୁ ଆସିଲୁ । ଗୋଟିଏ ଖିଲାତ ଓ ୬୦ ହଜାର ମୁଦ୍ରା ମୂଲ୍ୟର ଏକ ଡ଼ କ୍‌ଡ଼ କ୍ପା ଆମକୁ ସମ୍ରାଟ ଉପହାର ଦେଇଛନ୍ତି । ଗୁରୁଙ୍କ କୃପାରୁ ଅନ୍ୟ ସବୁ ବିଷୟ ମଧ୍ୟ ସନ୍ତୋଷଜନକ ଭାବରେ ଗତି କରୁଛି । ଅଳ୍ପଦିନ ଭିତରେ ଆମେ ଫେରିଯିବୁ । ସମଗ୍ର ଖାଲ୍‌ସା ସଙ୍ଗତକୁ ମୋର ଏକମାତ୍ର ଉପଦେଶ ଯେ ସେମାନେ ସର୍ବଦା ଏକ ହୋଇ ରହନ୍ତୁ । ଆମେ ଯେତେବେଳେ କାହ୍ଲୁରଠାରେ ପହଞ୍ଚିବୁ ସେତେବେଳେ ସମଗ୍ର ଖାଲସା ଯୁଦ୍ଧ-ପୋଷାକରେ ଆମକୁ ଭେଟିବା ଆମର ଇଚ୍ଛା । ଯିଏ ଆସିବେ ସେ ସୁଖୀ ହେବେ······ସମ୍ବତ୍ ୧୭୬୪ କାର୍ତ୍ତିକ ପ୍ରତିପଦ୍ ।"

କିନ୍ତୁ ଭାଇ କାମ୍‌ବକ୍‌ସ ଦାକ୍ଷିଣାତ୍ୟରେ ଠିଆ କରାଇଥିବା ବିଦ୍ରୋହ ଦମନ କରିବା ପାଇଁ ବାହାଦୁରସାହାଙ୍କୁ ହଠାତ୍ ଆଗ୍ରା ତ୍ୟାଗ କରିବାକୁ ପଡ଼ିଲା । ତେଣୁ ଗୁରୁଜୀ ପଞ୍ଜାବକୁ ନଫେରି, କଥାବାର୍ତ୍ତା ଚୂଡ଼ାନ୍ତ କରିବା ପାଇଁ, ବାହାଦୁର ସାହାଙ୍କ ସହିତ ଦାକ୍ଷିଣାତ୍ୟକୁ ଗଲେ । ଦୁଇ ଥାଟ ଏକାଠି ଯାତ୍ରା କଲେ ଏବଂ ଗୁରୁ ଓ ସମ୍ରାଟ ଧର୍ମ ଓ ପ୍ରଶାସନିକ ନାନା ବିଷୟ ଉପରେ ଦୀର୍ଘ ସମୟ ଧରି ବାରମ୍ବାର ଆଲୋଚନା କରି ଚାଲିଲେ । ବେଳେ ବେଳେ ନୂଆ ଅଞ୍ଚଳର ଲୋକଙ୍କୁ ଧର୍ମୋପଦେଶ ଦେବା ପାଇଁ ଗୁରୁଙ୍କୁ କାଫିଲାନରୁ ଭାଙ୍ଗି ଯିବାକୁ ମଧ୍ୟ ପଡ଼ୁଥିଲା ।

କିନ୍ତୁ ତେଣେ ସମ୍ରାଟ ଓ ଗୁରୁଙ୍କ ଅନୁଚରମାନଙ୍କ ଭିତରେ ବେଳେ ବେଳେ କଳହ ଦେଖାଗଲା । ସମ୍ରାଟ ବାହିନୀରେ ଏପରି ସୈନ୍ୟ ସବୁ ଥିଲେ ଯେଉଁମାନେ ଓ୍ୱାଜିର ଖାଁଙ୍କ ଅଧିନାୟକତ୍ୱରେ ଆନନ୍ଦପୁରରେ ଶିଖ୍‌ମାନଂକ ସହ ଲଢ଼ିଥିଲେ । ଅନ୍ତରରେ ସେମାନଙ୍କର ଶିଖ୍‌ମାନଙ୍କ ପ୍ରତି ଘୃଣା ଲିଭି ଯାଇ ନଥିଲା । ସେମାନେ ଗୁରୁ ଗୋବିନ୍ଦସିଂ ଓ ଶିଖମାନଂକ ପ୍ରତି ସମ୍ରାଟଙ୍କର ଏପରି ବନ୍ଧୁତ୍ୱପୂର୍ଣ୍ଣ ଭାବ ଆଦୌ ପସନ୍ଦ କରୁନଥିଲେ । ସେମାନେ ବେଳେ-ବେଳେ ଜାଣି ଜାଣି ଶିଖ୍‌ମାନଙ୍କୁ ବିରକ୍ତ କରାଉଥିଲେ, ଯେପରିକି ସେମାନେ ମାଡ଼ଗୋଳ ଆରମ୍ଭ କରିଦେବେ ଓ ମୋଗଲମାନେ ସେହି ଛଳନାରେ ସେମାନଙ୍କୁ ଉଚିତ ଶିକ୍ଷା ଦେବେ ।

ଥରେ କୌଣସି ସ୍ଥାନରେ ଏହିପରି ଭାବରେ ଏକ କଳହ ଦେଖା-ଦେଇଅନ୍ତେ, ଗୁରୁ ଶିଖ୍‌ମାନଙ୍କୁ ଶାନ୍ତ କରାଇବା ପାଇଁ ତାଙ୍କର ସଦା-ସାଥୀ ଓ କୁଶଳୀ ମାନ୍‌ସିଂଙ୍କୁ ପଠାଇଲେ । କିନ୍ତୁ ଏକ ମୂଢ଼ ମୋଗଲ, ମାନ୍‌ସିଂଙ୍କ

ଶାନ୍ତ-ଦୌତ୍ୟର ମୂଲ୍ୟ ବୁଝି ନ ପାରି, ତାଙ୍କୁ ସେହିଠାରେ ହତ୍ୟା କରିଦେଲା । ଚାଁଦୁଆଁରଠାରୁ ଏପର୍ଯ୍ୟନ୍ତ ମାନ୍‌ସିଂ ଗୁରୁଙ୍କର ସବୁ-ଅବସ୍ଥାର ସାଥୀ ଥିଲେ । ଗୁରୁ ତାଙ୍କର ମୃତ୍ୟୁରେ ମର୍ମାହତ ହେଲେ । ସମ୍ରାଟ ମଧ୍ୟ ଦୁଃଖିତ ହେଲେ ଏବଂ ଘାତକକୁ ବନ୍ଦୀକରି ଗୁରୁ ଗୋବିନ୍ଦ ସିଂଙ୍କ ପାଖକୁ ଉପଯୁକ୍ତ ଦଣ୍ଡ ପାଇଁ ପଠାଇ ଦେଲେ । ଗୁରୁ କିନ୍ତୁ ତାଙ୍କୁ କ୍ଷମା ଦେଇ ତାର ଶିବିରକୁ ପଠାଇ ଦେଲେ ।

ଗୁରୁ ଜୟପୁର, ଯୋଧପୁର, ଚିତୋର ପ୍ରଭୃତି ଐତିହାସିକ ରାଜ୍ୟମାନ ଦେଇ ଯାନ୍ତେ, ସେହି ସେହି ରାଜ୍ୟର ରାଜାମାନେ ଗୁରୁଂକ ସମ୍ମାନାର୍ଥେ ଦୂତ ପ୍ରେରଣ କଲେ । ୧୭୦୮ର ସେପ୍ଟେମ୍ବର ମାସରେ, ଦୁଇଟି ଯାକ ଦଳ, ନର୍ମଦା ପାର ହୋଇ ଗୋଦାବରୀ ତୀରସ୍ଥ ନାନ୍ଦେରରେ ପହଁଚିଲେ । କିନ୍ତୁ ଏ ଯାକରୁ ସମ୍ରାଟଂକ ସହିତ ଗୁରୁଂକ ଯୁକ୍ତିତର୍କ କୌଣସି ମୀମାଂସାରେ ଆସି ପହଁଚିପାରିଲା ନାହିଁ । ଗୁରୁ କ୍ରମେ ଦେଖିଲେ ଯେ ବାହାଦୂର ସାହା ।ଏକେଠୋକ ଭାବରେ କୌଣସି ବିଷୟରେ ହଁ ବା ନାହିଁ କହିବା ଲୋକ ନୁହନ୍ତି । ବିଶେଷ କରି କଥା ଯେତେବେଳେ ଆସି ପହଂଚୁଥିଲା ତାଂକ ପିତା କରି ଯାଇଥିବା ଧର୍ମ-ଅତ୍ୟାଚାର ଠାରେ, ତାଂକଠୁ କୌଣସି ପ୍ରକାର ଜବାବ ମିଳୁ ନଥିଲା । ସେ ମଧ୍ୟ ସିରହିନ୍ଦ୍‌ର ସୁବାଦାର ଓ୍ୟାଜିରଖାଁ । ଭଳି ଧର୍ମାନ୍ଧ ପ୍ରାନ୍ତୀୟ ଶାସକ ·ମାନଙ୍କ ବିରୁଦ୍ଧରେ କୌଣସି ପ୍ରକାର ବ୍ୟବସ୍ଥା ପାଇଁ ନିଜକୁ ଅସହାୟ ବୋଧ କରୁଥିଲେ । ଫଳରେ ଗୁରୁ ଦେଖିଲେ ଯେ କଥାବାର୍ତ୍ତା ଅଧିକ ଚଳାଇ ଲାଭ ନାହିଁ ।

ନାନ୍ଦେର ଠାରେ ମାଧୋ ଦାସ ନାମକ ଜଣେ ବୈରାଗୀ ସାଧୁ ବାସ କରୁଥିଲେ । ଅଲୌକିକ-ଶକ୍ତି-ସମ୍ପନ୍ନ ବୋଲି ତାଙ୍କର ଖ୍ୟାତି ଥିଲା । ଗୁରୁ ଗୋବିନ୍ଦ ସିଂ ସେହି ସାଧୁଙ୍କୁ ଭେଟିବା ପାଇଁ ତାଙ୍କ ଆଶ୍ରମକୁ ଗଲେ । କିନ୍ତୁ ତାଂକୁ ସେଠାରେ ଅନୁପସ୍ଥିତ ଦେଖି ତାଙ୍କର ଖଟରେ ଶୋଇ ରହିଲେ, ସାଧୁ ଫେରିବା ଯାଏଁ ଅପେକ୍ଷା କରି । ଇତିମଧ୍ୟରେ ଦିନ ଗଡ଼ି ଆସିଲା ଏବଂ ଗୁରୁଙ୍କ ଅନୁଚରମାନେ ରାତ୍ରି-ଭୋଜନ ପାଇଁ ଏକ ଛେଳି ହାଣିଲେ । ସାଧୁ ମାଧୋ ଦାସ ଫେରି ଏ କାଣ୍ଡ ଦେଖନ୍ତେ, ତାଙ୍କ ଆଶ୍ରମ ଅପବିତ୍ର କରିଥିବା ହେତୁ, ସେମାନଙ୍କୁ ରାଗରେ ଜାଳି ଦେବା ପରି ହେଲେ । କିନ୍ତୁ ସାଧୁ ଯେମିତି ଦେଖିଛନ୍ତି ଗୁରୁ ଗୋବିନ୍ଦ ସିଂଙ୍କୁ, କୁଆଡ଼େ ଉଭେଇ

ଗଲା ତାଙ୍କର କ୍ରୋଧ, କୁଆଡ଼େ ଉଭେଇ ଗଲା ମଧ୍ୟ ଅଲୌକିକ ଶକ୍ତି । ସେ ଗୁରୁଙ୍କ ପାଦତଳେ ପଡ଼ିଯାଇ ନିଜକୁ ଗୁରୁଙ୍କର ଦାସ ବୋଲି ଘୋଷଣା କଲେ । ଅହମଦ୍‌ସାହ ବାଟାଲିଆ, ତାଙ୍କ ପୂର୍ବପୁରୁଷଙ୍କର ରେକର୍ଡ଼ରୁ ଗୁରୁ ଓ ମାଧୋ ଦାସ ଭିତରେ ଘଟିଥିବା କଥୋପକଥନକୁ ଏହିପରି ଲିପିବଦ୍ଧ କରି ଯାଇଛନ୍ତି—

ମାଧୋ—କିଏ ତୁମେ ?

ଗୁରୁ—ଯାହାଙ୍କୁ ତୁମେ ଜାଣିଛ ।

ମାଧୋ—ମୁଁ କି ଜାଣେ ?

ଗୁରୁ—ମନରେ ପୁଣି ବିଚାର କର ।

ମାଧୋ—(କିଛିକ୍ଷଣ ମୌନରହି) ତେବେ, ଆପଣ ଗୁରୁ ଗୋବିନ୍ଦ ସିଂ ?

ଗୁରୁ—ହିଁ

ମାଧୋ—ଏଠିକି କାହିଁକି ଆସିଛ ?

ଗୁରୁ—ମୁଁ ଆସିଛି, ତୁମକୁ ମୋର ଶିଷ୍ୟ କରିବା ପାଇଁ ।

ମାଧୋ—ମୁଁ ଶରଣ ପଶୁଛି, ହେ ପ୍ରଭୁ, ମୁଁ ତୁମର ବାନ୍ଦା ମାତ୍ର !

ଅମୃତ-ମନ୍ତ୍ରରେ ଦୀକ୍ଷିତ ହେଲା ପରେ ମାଧୋ ଦାସର ଖାଲ୍‌ସା ନାମ ହେଲା ଗୁରୁ ବକସ୍ ସିଂ । କିନ୍ତୁ ବାନ୍ଦା ସିଂ ଭାବରେହିଁ ସେ ବିଶେଷ ପରିଚିତ । ଗୁରୁ ଗୋବିନ୍ଦ ସିଂ ତାଙ୍କୁ ନିଜ ତୂଣୀରରୁ ପାଞ୍ଚଟି ଶର ଉପହାର ଦେଇ, ଏବଂ କେତେକ ବିଶ୍ୱସ୍ତ ଶିଖ୍ ସାଥିରେ ଦେଇ ତାଙ୍କୁ ପଠାଇଲେ ପଞ୍ଜାବକୁ ସେଠାରେ ସ୍ଥାନୀୟ ଶାସକମାନଙ୍କର ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ ଠିଆ କରେଇବା ପାଇଁ । ଏହି ବାନ୍ଦା ସିଂ ପରେ ସିରହିନ୍ଦ ଲୁଣ୍ଠନ କରି ଓ୍ୟାଜିର ଖାଁକୁ ଉପଯୁକ୍ତ ଶାସ୍ତି ଦେଲା ଏବଂ ମୋଗଲ ସାମ୍ରାଜ୍ୟର ମୂଳଦୁଆକୁ ଦୋହଲାଇ ଦେଲା ପରେ, ୧୭୧୬ରେ ଦୁର୍ଭାଗ୍ୟକ୍ରମେ ଧରାପଡ଼ିବାରୁ, ଦିଲ୍ଲୀରେ ନିଷ୍ଠୁର ଭାବରେ ନିହତ ହେଲା ।

ଗୋବିନ୍ଦ ସିଂଙ୍କ ଆତ୍ମା ପ୍ରବହମାନ ଜଳ-ସ୍ରୋତର ମୃଦୁ କଳକଳ ଧ୍ୱନିରେ ସର୍ବଦା ମୁଗ୍ଧ ହୋଇ ଯାଉଥିଲା । ଏ ପର୍ଯ୍ୟନ୍ତ ସେ ବିଭିନ୍ନ ପ୍ରସିଦ୍ଧ ଜଳସ୍ରୋତମାନଙ୍କ ନିକଟରେହିଁ ରହି ଆସିଥିଲେ । ପାଟନାରେ ଗଙ୍ଗା,

ଆନନ୍ଦପୁରରେ ଶତଦ୍ରୁ ଏବଂ ପାଓନ୍ଟାରେ ଯମୁନାର ଜଳବେଣୀ ତାଙ୍କର ପ୍ରଧାନ ଚିତ୍ତବିନୋଦନ ଥିଲା । ନାନ୍ଦେରଠାରେ ବହି ଚାଲିଥିଲା ମନ୍ଥରଗାମିନୀ ଗୋଦାବରୀ । ଏହି ନଦୀ ଓ ନାନ୍ଦେରର ପ୍ରାକୃତିକ ପରିବେଶ ଗୁରୁଙ୍କ ଚିତ୍ତକୁ ଆକର୍ଷିତ କରି ରଖିଲା । ସେ ନାନ୍ଦେର ଛାଡି ଯାଇ ପାଇଲେ ନାହିଁ ଏବଂ ଠିକ୍ କଲେ ସେହିଠାରେ ଅବସ୍ଥାନ କରିବେ । କିନ୍ତୁ ସେ ଜାଣି ନ ଥିଲେ ଯେ, ତାଙ୍କର ପାର୍ଥିବ ବାସ ଆଉ ବେଶୀ ଦିନ ନାହିଁ ।

ନୂତନ ସମ୍ରାଟ ବାହାଦୁର ସାହାଙ୍କର ଗୁରୁ ଗୋବିନ୍ଦ ସିଂଙ୍କ ପ୍ରତି ବନ୍ଧୁଭାବ ସିରହିନ୍ଦର ସୁବାଦାର ଓ୍ୟାଜିର ଖାଁ ଦୂରରୁ ଲକ୍ଷ୍ୟ କରି ନିଜ ପ୍ରତିପତ୍ତି ପ୍ରତି ଆତଙ୍କିତ ହୋଇ ଉଠିଥିଲା । କଥା ବେଶୀଦୂର ଆଗେଇବା ପୂର୍ବରୁ, ଏକ ପକ୍କା ବନ୍ଦୋବସ୍ତର ସହପାତ ସେ କରିନେଲା । ଗତ୍ୟନ୍ତର ନ ଦେଖି, ସେ ବର୍ତ୍ତମାନ ଦୁଇଟି ବିଶ୍ୱସ୍ତ ପଠାଣଙ୍କୁ ଗୁପ୍ତଚର ଭାବରେ ନିଯୁକ୍ତ କଲା, ଯିଏ ସୁଯୋଗ ଦେଖି, ଗୁରୁ ଗୋବିନ୍ଦଙ୍କୁ ହତ୍ୟା କରିବେ । ଏହି ଆତତାୟୀ ଯୁଗଳ ଗୁରୁ ଓ ବାହାଦୁର ସାହଙ୍କ ପଛେ ପଛେ ଆସୁଥିଲେ ଏବଂ ନାନ୍ଦେରଠାରେ ଗୁରୁ ବିଚ୍ଛିନ୍ନ ହୋଇ ଯାନ୍ତେ, ସେଠାରେହିଁ ସେମାନଙ୍କର ସୁବର୍ଣ୍ଣ ସୁଯୋଗକୁ ଅପେକ୍ଷା କଲେ ଏବଂ ପ୍ରଥମ ସୋପାନ ରୂପେ ବାରମ୍ବାର ଗୁରୁଙ୍କ ଶିବିରକୁ ଆସି, ଗୁରୁ ଓ ଶିଖମାନଙ୍କ ସହିତ ଖୁବ୍ ମିଳାମିଶା କଲେ ।

ଦିନେ ଗୁରୁ ରହିରି ପ୍ରାର୍ଥନା ପରେ ନିଜ କକ୍ଷରେ ବିଶ୍ରାମ କରୁଛନ୍ତି ଏହି ସମୟରେ ଜଣେ ଆତତାୟୀ ହଠାତ୍ ତାଙ୍କ ଉପରକୁ ମାଡ଼ି ବସି ଶରୀରର ବାମ ପଟେ, ହୃତ୍ପିଣ୍ଡ ନିକଟରେ ଛୁରୀ ବସାଇ ଦେଲା । ଗୁରୁ ନିଜର ତରବାରୀ ଘାତରେ ତାକୁ ନିପାତିତ କରନ୍ତେ, ଅନ୍ୟ ଆତତାୟୀଟି ଦୌଡ଼ି ଆସିଲା । କିନ୍ତୁ ସେତେବେଳକୁ ଶିଖମାନେ ପଶି ଆସିଲେଣି । ସେମାନଙ୍କର ଖଣ୍ଡାରେ ଦ୍ୱିତୀୟ ପଠାଣ ମଧ୍ୟ ପ୍ରାଣ ହରାଇଲା ।

ଏ ସମ୍ବାଦ ବାହାଦୁର ସାହାଙ୍କ ନିକଟରେ ପହଞ୍ଚନ୍ତେ ସେ ତୁରନ୍ତ ଗୁରୁଙ୍କ ଚିକିତ୍ସା ପାଇଁ ଉତ୍ତମ ଶଲ୍ୟ-ଚିକିତ୍ସକ ପଠାଇଦେଲେ ଏବଂ ସେମାନଙ୍କ ଚିକିତ୍ସା ଫଳରେ ଗୁରୁଙ୍କ ଘା ଭଲ ହୋଇ ଆସିଲା । କିନ୍ତୁ ଅଳ୍ପ ଦିନ ପରେ ଗୁରୁ ଟିଗୋଟିଏ ଶକ୍ତିଶାଳୀ ଧନୁକୁ ଆମୂଳିତ କଲାବେଳେ,

ସେ ଘା'ଟି ପୁଣି ଫାଟିଗଲା ଏବଂ ପ୍ରଚୁର ରକ୍ତସ୍ରାବ ହେଲା ଯାହା ଆଉ ବନ୍ଦ ହେଲାନି । ଫଳରେ ଯେଉଁ ଦୃଢ଼ ଶରୀର ଏତେ ଝଡ଼ଝଞ୍ଜା ସହି ଆସିଥିଲା, ତାହା ଦୁର୍ବଳ ହୋଇ ଆସିଲା ।

ଗୁରୁ ବର୍ତ୍ତମାନ ଶିଖ୍‌ମାନଙ୍କୁ ଡକାଇ ସେମାନଙ୍କୁ କହିଲେ, ଜୀବନର ସକଳ ଅବସ୍ଥାରେ ଅକାଳଙ୍କର ଇଚ୍ଛାକୁ ସାଦରେ ଗ୍ରହଣ କରିବାକୁ ହେବ । ସେ କହିଲେ " ହି ସୃଷ୍ଟିର କାରକ ଓ ପାଳକ ଏକମାତ୍ର ପରମେଶ୍ୱରହିଁ ମୃତ୍ୟୁହୀନ । ସେହି ମୃତ୍ୟୁହୀନ ସଚ୍ଚିଦାନନ୍ଦ ତୁମ ପ୍ରତ୍ୟେକଙ୍କ ଅନ୍ତରରେ ପ୍ରଜ୍ଜ୍ୱଳିତ ରହିଛନ୍ତି । ସେହି କାରଣରୁ କେବେ ହେଲେ ଦୁଃଖରେ ମ୍ରିୟମାଣ ନହୋଇ ସର୍ବ ଅବସ୍ଥାରେ ପ୍ରଶାନ୍ତଚିତ୍ତ ରହ । ସତ୍ୟନାମ ଖାଲ୍‌ସାକୁ ସର୍ବଦା ସ୍ମରଣ କର । ମୁଁ ସେହି ମୃତ୍ୟୁଂହୀନ ପରମେଶ୍ୱରଙ୍କଠାରେ ତୁମ ସମସ୍ତଙ୍କୁ ନ୍ୟସ୍ତ କରି ଦେଇଛି ଏବଂ ଭରସା କରୁଛି ଯେ ସେ ତୁମକୁ ରକ୍ଷା କରିବେ । ଗ୍ରନ୍ଥ ସାହେବଙ୍କୁ ପଢ଼ିବ ବା ଶୁଣିବ । ତା'ହେଲେ ତୁମର ଚିତ୍ତ ସକଳ ଅବସ୍ଥାରେ ସାନ୍ତ୍ୱନା ପାଇବ ।"

ଶେଷରେ ଗୁରୁ ଗୋବିନ୍ଦସିଂ ତାଙ୍କର ପ୍ରିୟ ଶିଖ୍ (ଶିଷ୍ୟ)ମାନଙ୍କ ସହିତ ତାଙ୍କର ଶାଶ୍ୱତ ସମ୍ବନ୍ଧ ଉପରେ ଅନ୍ତିମ ସ୍ୱାକ୍ଷର ପ୍ରାୟ ସମବେତ ଭକ୍ତମାନଙ୍କୁ ଏହି ବାଣୀ ଶୁଣାଇ ଗଲେ — "ଯେଉଁଠି ପାଞ୍ଚଟି ମାତ୍ର ଶିଖ୍ ଉପସ୍ଥିତ ଥିବେ ଏବଂ ଗ୍ରନ୍ଥ ସାହେବରୁ ପ୍ରେରଣା ସଂଗ୍ରହ କରି ସେହି ଅନୁସାରେ ନିଜକୁ ପରିଚାଳିତ କରିବେ, ଜାଣିରଖ ଯେ, ମୁଁ ସେମାନଙ୍କ ଭିତରେ ଅବସ୍ଥାନ କରୁଥିବି । ଗୁରୁ ନାନକଙ୍କଠାରୁ ଆରମ୍ଭ କରି ସମସ୍ତ ଗୁରୁଙ୍କର ଇତିହାସ ଆଲୋଚନା କରିବ । ଆଜଠାରୁ ଗୁରୁହିଁ ଖାଲ୍‌ସା, ଖାଲ୍‌ସାହିଁ ଗୁରୁ । ମୁଁ ମୋର ଆତ୍ମାକୁ ଖାଲ୍‌ସା ସହିତ ଏକୀଭୂତ କରି ନେଇଛି । ମୋର କୌଣସି ଭିନ୍ନତା ନାହିଁ ।"

ଏହାପରେ ଗୁରୁ ସ୍ନାନକଲେ ଓ ନୂତନ ବସ୍ତ୍ର ପରିଧାନ କଲେ । ତା'ପରେ ଜପଜି ଓ ତା'ପରେ ଆର୍‌ଦାସ ପାରାୟଣ କଲେ । ତା'ପରେ ଆନୁଷ୍ଠାନିକ ଭାବରେ ଗ୍ରନ୍ଥସାହେବଙ୍କୁ ନିଜ ଉପସ୍ଥିତିକୁ ଅଣାଇ, ତାଙ୍କୁ ନିଜର ଉତ୍ତରାଧିକାରୀ ଗୁରୁ ଭାବରେ ପ୍ରଣାମ କଲେ । ସେ ସମବେତ ଶିଖ୍‌ମାନଙ୍କ ଆଗରେ ଘୋଷଣା କଲେ ଯେ, ଗ୍ରନ୍ଥସାହେବ ହିଁ ତାଙ୍କପରେ ଶିଖ୍‌ମାନଙ୍କର ଗୁରୁ ହେବେ । କେବଳ ତାଙ୍କର ନୁହେଁ, ଅନ୍ୟ ସବୁ ଗୁରୁଙ୍କ

ଆତ୍ମା ସେହି ଗ୍ରନ୍ଥସାହେବରେ ହିଁ ପ୍ରତିଫଳିତ ବୋଲି ସେମାନେ ସେପରି ଭାବିବେ ।

ଏହିପରି ଭାବରେ ଖାଲ୍‌ସା ଓ ଗ୍ରନ୍ଥସାହେବଙ୍କୁ ଗୁରୁ ଗୋବିନ୍ଦ ସିଂଙ୍କର ଶିଷ୍ୟତ୍ୱ ଅବତାରିତ ହେଲା ଏବଂ ସେମାନେ ହୋଇ ଉଠିଲେ ଗୁରୁଙ୍କର ପ୍ରତୀକ । ଗ୍ରନ୍ଥସାହେବର ଉପଦେଶଦ୍ୱାରା ପ୍ରଣୋଦିତ ପନ୍ଥ ବା ଶିଖ ଗୋଷ୍ଠୀର ସାମୂହିକ ମତ ହିଁ ବର୍ତ୍ତମାନ ଗୁରୁର ପ୍ରାମାଣିକତା ପାଇଲା । ଯେଉଁ ଖାଲ୍‌ସାର ନିଷ୍ଠା ଓ ସମ୍ମାନ ଦିନେ ଗୁରୁଙ୍କଠାରେ ନ୍ୟସ୍ତ ଥିଲା, ତାହା ବର୍ତ୍ତମାନ ଆସି ରହିଲା ଗ୍ରନ୍ଥ ଓ ପନ୍ଥ୍‌ରେ ।

ଯେଉଁ ଶିଖ୍‌ମାନେ ତାଙ୍କୁ ପ୍ରାଣରୁ ଅଧିକ ଭଲ ପାଉଥିଲେ, ଯେଉଁମାନେ ତାଙ୍କର ନେତୃତ୍ୱର ପ୍ରେରଣାରେ ଅସମ୍ଭବ ସିଦ୍ଧି ସବୁ ଲାଭ କରିପାରି ଥିଲେ, ପୁଣି ଯେଉଁମାନଙ୍କ ପାଇଁ କୌଣସି ହେଲେ ତ୍ୟାଗକୁ ସେ ଅତି ବେଶୀ ବୋଲି ମନେ କରୁ ନ ଥିଲେ, ସେହି ପ୍ରିୟ ଶିଖ୍‌ମାନଙ୍କୁ ଶେଷ ବିଦାୟବାଣୀ ରୂପେ ସେ ଉଚ୍ଚ କଣ୍ଠରେ ଉଚ୍ଚାରଣ କଲେ—

ଓ୍ୟାହି ଗୁରୁଜୀକା ଖାଲ୍‌ସା
ଓ୍ୟାହି ଗୁରୁଜୀକି ଫତେ ।

ତାର ଉତ୍ତରରେ ସମବେତ ଶିଖ୍‌ମାନେ ମିଳିତ ଭାବରେ

ଓ୍ୟାହି ଗୁରୁଜୀକା ଖାଲ୍‌ସା,
ଓ୍ୟାହି ଗୁରୁଜୀକି ଫତେ ।

ଉଚ୍ଚାରଣ କରୁ କରୁ ଗୁରୁ ଗୋବିନ୍ଦ ସିଂ (୧୭୦୮ ଖ୍ରୀ: ଅ:ର: ଅକ୍ଟୋବର ୭ ର ପ୍ରତ୍ୟୁଷରେ ଶେଷ ନିଶ୍ୱାସ ତ୍ୟାଗ କଲେ ।

ଏହିପରି ଭାବରେ ଇହଧାମରୁ ବିଦାୟ ନେଇ ଗଲେ ମାନବ ଜାତିର ଏକ ମହା ଗୁରୁ ଓ ମହାନ୍ ଜୀବନଦାୟକ, ଜନଗଣଙ୍କୁ ଈଶ୍ୱରଙ୍କ ପଥ ଓ ଇଚ୍ଛା ପ୍ରଦର୍ଶିତ କରାଇବା ପାଇଁ ସ୍ୱୟଂ ଈଶ୍ୱରଙ୍କ ଦ୍ୱାରା ନିର୍ବାଚିତ ଓ ପ୍ରେରିତ ମହାନ୍ ସ୍ୱର୍ଗୀୟ ଆତ୍ମା, ଯେ ନିଜର ବ୍ୟକ୍ତିଗତ ଜୀବନରେ ଦେଖାଇ ଗଲେ, ଶୌର୍ଯ୍ୟ, କରୁଣା ଓ ଜାତୀୟତା ଦିଗରେ ମାନବାତ୍ମାର ପରମତମ ସମ୍ଭାବନା ଏବଂ ଦେଖାଇ ମଧ୍ୟ ଦେଇଗଲେ ଯେ, କେବଳ ଦୁଃଖ ଦେଇ ଉପରେ ଆସିପାରେ ମନୁଷ୍ୟକୁ ଜଣାଥିବା ଉଚ୍ଚତମ ମୂଲ୍ୟବୋଧର ପରିପୂର୍ତ୍ତିତା ।

ଉପସ୍ଥିତ ଶିଖ୍‌ମାନେ ଅନ୍ତ୍ୟେଷ୍ଟି କ୍ରିୟାପାଇଁ ସଜ ହେଲେ । ଚନ୍ଦ୍ର-କାଠର ଆଉ୍‌ ଖ୍ୟା ଭିତରେ ଏକ ଚିତା ତିଆରି କରି ଗୁରୁଙ୍କ ଶବ ତା ଉପରେ ସ୍ଥାପିତ କରାଗଲା । ସମବେତ ଭଜନଗାନ ଭିତରେ ଚିତାରେ ଅଗ୍ନି ସଂଯୋଜିତ କରାଗଲା । ତାପରେ 'ସୋହ୍ଲା' ପରିପୂର୍ଣ କରାଯାଇ, କର୍ଣ-ପ୍ରସାଦ ବିତରିତ ହେଲା । ପଞ୍ଜାବରୁ ବହୁ ଦୂରରେ ଥାଇ, ପ୍ରିୟ ନେତାଙ୍କୁ ହରାଇବା ଦ୍ୱାରା, ଶିଖ୍‌ମାନେ ଆତ୍ମାରେ ଏପରି ଏକ ଶୂନ୍ୟତା ବୋଧ କଲେ, ଯାହା ସେମାନେ ଗୁରୁ ନାନକଙ୍କ ସମୟରୁ ଅନୁଭବ କରିନଥିଲେ । କିନ୍ତୁ ସେମାନେ ମଧ୍ୟ ଗୁରୁଙ୍କର ଶେଷ ବାଣୀ ସ୍ମରଣକଲେ, ଯାହା ଗୁରୁ ଓ ଖାଲ୍‌ସାକୁ ଏକୀଭୂତ କରାଇ ଦେଇ ଯାଇଥିଲା କେବଳ ନୁହେଁ, ଖାଲ୍‌ସାକୁହିଁ ଗୁରୁ ପଦରେ ପ୍ରତିଷ୍ଠିତ କରିଯାଇଥିଲା । ଗୁରୁଙ୍କ ସହିତ ସେମାନଙ୍କର ଏହି ଏକାତ୍ମବୋଧ ସେମାନଙ୍କର ବିଷର୍ଣ୍ଣ ଚିତ୍ତକୁ ନବଶକ୍ତି ଦାନ କଲା ଏବଂ ଆସ୍ତେ ଆସ୍ତେ ଗୁରୁ ଦେଇଯାଇଥିବା ଗୋଷ୍ଠୀ-ଚେତନା ସେମାନଙ୍କ ଅନ୍ତରରେ ପ୍ରବର୍ତ୍ତିତ ହୋଇ ସେମାନଙ୍କୁ ନୂତନ ଭାବରେ ଉଦ୍‌ବୁଦ୍ଧ କଲା । ଶିଖମାନଙ୍କର ଏହି ଜୀବନ୍ତ ବିଶ୍ୱାସ ସେମାନଙ୍କର ନିଜର ଇତିହାସକୁ ଗଢ଼ି ଆଣିଛି କେବଳ ନୁହେଁ, ଏହା ମାନବିକତା, ମର୍ଯ୍ୟାଦାବୋଧ ଏବଂ ସ୍ୱାଧୀନତାର ସମ୍ମାନ ରକ୍ଷା ଉଦ୍ଦେଶ୍ୟରେ ସମଗ୍ର ମାନବେତିହାସରେ ଏକ ଶ୍ରେଷ୍ଠ ଗୌରବାବହ ପ୍ରଚେଷ୍ଟାକୁ ସମ୍ଭବ କରି ପାରିଛି ।

---